ମାଧ୍ୟମିକ ଶିକ୍ଷାପରିଷଦଙ୍କଦ୍ୱାରା ଅନୁମୋଦିତ ଓ ତଦନୁଯାୟୀ ସଂଶୋଧିତ

# ଗଳ୍ପ-ଶ୍ରୀ

**HIGHER STANDARD ORIYA DETAILED READER**

***FOR***

HIGH SCHOOL CERTIFICATE EXAMINATION, 1971
& HIGHER SECONDARY SCHOOL CERTIFICATE
EXAMINATION, 1972.

ସଂଗ୍ରାହକଦ୍ୱୟ
ଶ୍ରୀ ସତ୍ୟସୁନ୍ଦର ମିଶ୍ର
ଶ୍ରୀ ରବିନାରାୟଣ ମହାପାତ୍ର

ପ୍ରଥମ ପ୍ରକାଶ ୧୯୭୧
ପୁନର୍ମୁଦ୍ରଣ ୧୯୭୯

—ପ୍ରକାଶକ—
ଆଲୋକ ସାହିତ୍ୟ ପ୍ରତିଷ୍ଠାନ
ଖଟବିନ୍ ସାହି, କଟକ-୧

ମୂଲ୍ୟ ଦୁଇ ଟଙ୍କା ଷାଠିଏ ପଇସା ମାତ୍ର

ଯେଉଁ ଲେଖକମାନଙ୍କର ଲେଖମାର ଦାନ 'ଗଳ୍ପ-ଶ୍ରୀ'ର ଶ୍ରୀ ବଢ଼ାଇଅଛୁ, ସଂଗ୍ରାହକଦ୍ୱୟ ସେମାନଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜଣାଉଛନ୍ତି ।

# ସୂଚୀ

# ଆଦ୍ୟ କଥନୀ

"........ହସି ହସି ଅସୁରୁଣୀ ବୁଢ଼ୀ କହିଲା, 'ମୁଁ କ'ଣ ସହଜରେ ମରିବ କଲୋ ଝିଅ ?' ରଜା ଝିଅ ହସି ହସି ଅସୁରୁଣୀ ବୁଢ଼ୀର ମୁଣ୍ଡରୁ ଉକୁଣୀ ବାଛୁଥାଏ—ମୁହରେ ତାର ଦରଦର ଛୁଇ। ହସି ହସି ଫାଟିଗଲା ବୁଢ଼ୀ ଅସୁରୁଣୀ। 'ସେଇ ଯୋଜ ଅଗନାଅଗନ ବନସ୍ତ—ତା' ଭିତରେ ଅଛି ବେଣ୍ଟ ପୋଖରୀ। ପୋଖରୀ ମଝିରେ ଘାପିବଣ୍ଡି ପାଖରେ ବନ୍ଧା ହୋଇଛି ମନପବନ ଡଙ୍ଗା—ସେଇ ଡଙ୍ଗାରେ ବସିପଡ଼ିବ ଯେମିତି, ପୋଖରୀର ପାଣି ଦ୍ୱ'ଫାଙ୍କ ହୋଇଯିବ। ତା ଭିତରକୁ ବାଟ ଖୋଲିଯିବ—ଡଙ୍ଗାରେ ବସି ବସି ଚାଲିଯିବ ଭିତରକୁ—ବହୁତ ଭିତରକୁ— ।' ଦୁଃଖ ଆଉ ଭୟରେ ରଜାଝିଅର ଦେହ ଶିହରି ଉଠୁଥାଏ।

"ପୁଣି ଆରମ୍ଭ କଲା ବୁଢ଼ୀ ଅସୁରୁଣୀ, 'ସେଇ ଅତଳ ପାଣିରେ କୋଉ କାଳର ପୁରୁଣା ଉଆସ— ଉଆସ ଭିତର ଗର୍ଭିର ଘର ଠଣା ଭିତରେ ଥୁଆ ହୋଇଚି ଫରୁଆଟିଏ—ସେଇ ଫରୁଆଟି ଭିତରେ ଗୋଟିଏ ଭଅଁର ଅଛି –ସେଇ ଭଅଁରଟିକୁ ଯଦି ମାରିଦେବ, ତେବେ ଯାଇ ଏ ବୁଢ଼ୀ ଅସୁରୁଣୀ ମରିବ' କହୁ କହୁ ହସି ହସି ଭୁଇଁରେ ଲୋଟିଗଲା ଅସୁରୁଣୀ ବୁଢ଼ୀ—'ଫରୁଆ ଖୋଲୁ ଖୋଲୁ ତ ଭଅଁରଟି ଉଡ଼ିଯିବ, ଆଉ ଭଅଁର ମରିବ ନା ମୁଁ ମରିବି—ହୋ ହୋ ହସି ହସି ଅସୁରୁଣୀ ବେଦମ୍ ହୋଇଗଲା—ଆଉ ପାକଲା ବାଳର ଉକୁଣୀମରା ବି ବନ୍ଦ ରହିଲା –ଲୁହ ଛଳଛଳ ଆଖିରେ ଚାହିଁ ରହିଥାଏ ରଜାଝିଅ·····"

"ସେଇଠୁ କ'ଣ ହେଲା ମା, କହୁନୁ !" ଗପ ଘୋଟିଆସିଲାଣି—ନିଦରେ ଆଖି ମାଡ଼ି ପଡ଼ିଲାଣି—ତେବେ ବି ଅଧିଆ—ନାତି-ନାତୁଣୀ ବୁଢ଼ୀ ମା'କୁ ଗୁଡ଼ୁନାହାନ୍ତି—ଅସରନ୍ତି କାହାଣୀର ଝିଅ-ଧର ବୁଢ଼ୀର ଆଖିରେ ହୁଏତ ନିଦ ଭରିଗଲାଣି—

ଏମିତି କେତେ କାହାଣୀ—ଅସୁମାରି । ବୁଢ଼ୀ ଅସୁରୁଣୀ କଥା, କଲୁରେଇ ବେଙ୍ଗ କଥା, ରଜାପୁଅ ରଜାଝିଅ କଥା, ଗଉଡ଼ପିଲାର ମନ୍ତ୍ରୀପିଠା ଖିଆ କଥା—ଏମିତି କେତେ କଣ ! କୋଉ କାଳରୁ ତୁଣ୍ଡରୁ ତୁଣ୍ଡ ହୋଇ ଗଢ଼ିଆସିଛି ଏଇ କାହାଣୀ ! ତାର ଆଜି ହିସାବ ନାହିଁ ।

ହିସାବ ଖୋଜୁ ଖୋଜୁ ଶେଷରେ ଯାଇ ସେଇଠି ପହଞ୍ଚିବାକୁ ହୁଏ—ଏମିତି କୋଉ ଅନାଦିକାଳରୁ ସମୟର ସୁଅରେ ଗଢ଼ି ଆସିଛି କା'ହାଣୀର ଧାରା । କଥା କହିବା ଆଉ କଥା ଶୁଣିବା ସଂଗେ ଯେମିତି ମଣିଷର ସହଜାତ ପ୍ରବୃତ୍ତି—ପିଲାଦିନେ ଭୂତ, ପ୍ରେତ, ଡାହାଣୀ, ଚିରଗୁଣୀର କାହାଣୀ ଶୁଣିବା ପାଇଁ ଶିଶୁ ଯେମିତି ଆବେଗଭରା ଆଖିରେ ଚାହିଁ ରହେ, ବଡ଼ ଲା ମଣିଷ ବି ଠିକ୍ ସେଇ ଗପ ନ ହେଲେ ମଧ୍ୟ କଥା ଶୁଣିବାକୁ ଯେ ଆଗ୍ରହ ପ୍ରକାଶ କରେ, ଏଥିରେ ସନ୍ଦେହ ନାହିଁ । ଉପନ୍ୟାସ ବା ଗଳ୍ପ ପଢ଼ିବା ଭିତରେ ଯେମିତି 'କଥା'ର ସୁଅକୁ ଧରି ଗତି କରିବା ପାଇଁ ମଣିଷର ମନରେ କୌତୂହଳ ଜନ୍ମେ—ନାଟକ ଦେଖି ଉପଭୋଗ କଲାବେଳେ ନାଟକ କଥାର ଗନ୍ତାଘର ସେମିତି ଆନନ୍ଦ ଦିଏ ଦର୍ଶକକୁ । ଏ'ତ ନିତିଦିନର ଅଙ୍ଗେ ନିଭେଇବା କଥା ।

ଆଜିର ପ୍ରବୃତ୍ତି ସେ ନୁହେଁ—ଭୂମିକମ୍ପର ଆକସ୍ମିକତା ଫଳରେ ବା ଆଗ୍ନେୟଗିରିର ଅଗ୍ନିନିକ ସଞ୍ଚାରରେ କାହାଣୀ ଶୁଣିବାର ପ୍ରବୃତ୍ତି ମଣିଷ ମନରେ ଦେଖାଦେଇ ନାହିଁ । ସେଇ

ଆଦିମ ଯୁଗର ମଣିଷ—ଜାଣିନି କେତେ ଯୁଗ ତଳର ଆମର ସେଇ ପୂର୍ବ ପୁରୁଷ—ଯେତେବେଳେ ପାହାଡ଼ ତଳେ ପଶୁ ପରି ପଡ଼ି-ରହୁଥିଲା । ସେ—ଅନ୍ଧାରେ ଅନ୍ଧାରେ ବୁଲି ବୁଲି ଜୀବନ ବିତାଇ-ଦେଉଥିଲା । ଆଜିଅଙ୍କୁ ବାହାର ମଣିଷ ବୋଲି କହି ବୋଲିବାକୁ ଗର୍ବ ନ ଥିଲା ତା'ର—ସେତେବେଳେ ବି ଏଲି କାହାଣୀ ଶୁଣିବା-ଲାଗି ମନରେ ତା'ର କେତେ ଆବେଗ, କେତେ ଆନନ୍ଦ, ଆଉ କେତେ ଉତ୍ସାହ ଭରିଉଠୁଥିଲା କିଏ କହିବ ! ଦିନର ଶେଷରେ ଉଦରର ପରିପୋଷଣ ଲାଗି ବ୍ୟବସ୍ଥା କରି ସେ ଫେରିଆସୁଥିଲା ଯେତେ-ବେଳେ, ସେତେବେଳେ ସେ ସାଙ୍ଗସାଥି ଗହଣରେ ନାଚିକୁଦି ବେଳ ବିତାଇ ଦେଉଥିଲା ଆଉ ଏ ନାଚକୁଦ ଭିତରେ ପ୍ରକାଶ ପାଉଥିଲା ଯେଉଁ ସମବେତ ସଙ୍ଗୀତ—ସେଇ ସଙ୍ଗୀତର ଛନ୍ଦେ ଛନ୍ଦେ ଜୀବନ୍ତ ହୋଇଉଠୁଥିଲା କେତେ କେତେ ଅନୁଭୂତିର କାହାଣୀ । ଏବେ ବି ଏଇ ଉଦାହରଣର ଅଭାବ ନାହିଁ । ଆଦିବାସୀର ଲୋକନୃତ୍ୟ ଆଉ ଲୋକ-ସଙ୍ଗୀତ ମଧ୍ୟରେ ସେଇ ଆଦିମ ମାନବର କଥା ବା କାହାଣୀ ଶୁଣିବାର ପ୍ରବୃତ୍ତି ସେମିତି ସଞ୍ଜୀବିତ ରହିଛି ।

ଆମ ଓଡ଼ିଆ ସାହିତ୍ୟରେ ଏଇ କଥା କାହାଣୀର ଇତିହାସ ଖୋଜି ବସିଲାବେଳେ ସେହିପରି ବହୁତ ପଛକୁ ଫେରିଯିବାକୁ ହୁଏ । ଏବର କଥାକାରର ପୂର୍ବ ପୁରୁଷମାନେ ଯେ ଏଇ ପୁରୁଣା କାହାଣୀ—ଅଗଣିତ ବ୍ରତକଥା, ଓଷାକଥା ଭିତରେ ଦେଖା ନେଇଥିଲେ, ଏଥିରେ ସନ୍ଦେହ ନାହିଁ । ଆମର 'ଶାରଳା ମହାଭାରତ', ଯାହାକୁ ନେଇ ଆମେ ସେଦିନର ଓଡ଼ିଆ-ସାହିତ୍ୟ ସମୃଦ୍ଧ ବୋଲି ଗର୍ବକରୁ, ସେ ପଦ୍ୟ ସତ ହେଲେ ମଧ୍ୟ ସେ ପଦ୍ୟର ପଦେ ପଦେ କାହାଣୀ ପ୍ରକାଶ କରିବାର ନିଶା କବିଙ୍କୁ ଯେପରି ଆତ୍ମହରା କରିଛି; ଆଉ କବି ସେଥିଲାଗି 'ମହାଭାରତ' ପରି ବିରାଟ

ସଂସ୍କୃତ ଗ୍ରନ୍ଥର ଓଡ଼ିଆ ରୂପାୟନ କଲାବେଳେ ବି ସୁବିଧା ସୁଯୋଗ ଦେଖି ଓଡ଼ିଶାର ନାନା ପ୍ରଚଳିତ ଲୋକକଥା ଆଉ କାହାଣୀମାନ ତା' ଭିତରେ ଦେଇଅଛନ୍ତି । 'ଶାରଳା ମହାଭାରତ'ର ଭିତରକୁ ଯାଇ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ପଡ଼େ ତହିଁ ମଧ୍ୟରେ ଓଡ଼ିଆ ଘରର ବହୁ ପ୍ରଚଳିତ କଥା କାହାଣୀ ଲୁଚି ରହିଛି । ଏହି ମହାଭାରତକୁ ଅବଶ୍ୟ ଗଳ୍ପ ସାହିତ୍ୟର ଆଦିପୁରୁଷ ବୋଲି କହି ହେବ ନାହିଁ —ତେବେ ଏହି ରଚନାରେ ଯେ ସେଇ ଗଳ୍ପ କଥନର ଆଦିମ ପ୍ରବୃତ୍ତି କବିଙ୍କୁ ପ୍ରଭାବିତ କରିଛି, ଏହା ଗ୍ରହଣ କରିବା ଅସମୀଚୀନ ହେବ ନାହିଁ ।

ଆହୁରି ଅତୀତକୁ ଯାଇ ଅନୁଧ୍ୟାନ କଲେ ବି ସାହିତ୍ୟରେ ଏକ କଥା କାହାଣୀର ରୂପ ଦେଖିବାକୁ ମିଳିବ । 'ବେଦ'ର ଆଖ୍ୟାୟିକାରେ ଏଇ ଗଳ୍ପ କଥନର ପ୍ରବୃତ୍ତି ନିହିତ ରହିଛି । 'ଉପନିଷଦ' ଗ୍ରନ୍ଥ, ସଂସ୍କୃତ ସାହିତ୍ୟର 'ହିତୋପଦେଶ', 'ପଞ୍ଚତନ୍ତ୍ର' ପରି ରଚନା ଭିତରେ, ପାଲି ଭାଷାରେ ଜାତକ କଥା ମଧ୍ୟରେ, ଏହି ଗଳ୍ପକଥନର ମନୋବୃତ୍ତି ପ୍ରଚ୍ଛନ୍ନ ଭାବରେ ଜଡ଼ିତ ।

ଏଇସବୁ ମଧ୍ୟରୁ ଉପାଦାନ, ଆଉ ଆମ ପ୍ରଚଳିତ ଲୋକକଥା କାହାଣୀ ମଧ୍ୟରୁ ଉପାଦାନ ନେଇ ଆମ ସାହିତ୍ୟରେ କାହାଣୀ ଏକ ସ୍ୱତନ୍ତ୍ର ରୂପରେଖା ନେଇଛି । ଆମ ପୁରୁଣା ସାହିତ୍ୟରେ ଏଇ କାହାଣୀର ରୂପ ଖୋଜିଲାବେଳେ ବ୍ରତକଥା ଆଉ ଓଷାକଥା ଆଦି ଆମ ଆଖି ଆଗରେ ପଡ଼େ । 'ସୋମନାଥ ବ୍ରତ କଥା' ସେହିପରି ଏକ ବ୍ରତ କଥା, ଯେଉଁଥିରେ କାହାଣୀ ପ୍ରସଙ୍ଗରେ ସୋମନାଥ ବ୍ରତ-ପୂଜାର ମହାତ୍ମ୍ୟ ବର୍ଣ୍ଣନା କରାଯାଇଛି । ଜଣାପଡ଼େ, ଶିବଦାସ ଏହି ଗଳ୍ପର ଲେଖକ । ତେବେ ସେ କେଉଁ ମସିହାର ଲେଖକ, ଆଉ କେବେ ଏ ରୂପ ଗଳ୍ପମାଳାର ପ୍ରଥମ ପ୍ରକାଶ ହୋଇଥିଲା, ଏହା

ସଠିକ ନିରୂପଣ କରିବା ଏପର୍ଯ୍ୟନ୍ତ ସମ୍ଭବ ହୋଇ ନାହିଁ । ଆମର ପ୍ରାଚୀନ ସାହିତ୍ୟ ଏବେ ମଧ୍ୟ ଗବେଷଣାର ବସ୍ତୁ ହୋଇ ରହିଛି । ତେବେ ଭାଷା ଆଉ ରଚନାଶୈଳୀରୁ ସ୍ପଷ୍ଟ ମନେ ହୁଏ ଯେ 'ସୋମନାଥ ବ୍ରତ କଥା' ସପ୍ତଦଶ ଶତାବ୍ଦୀରେ ସୃଷ୍ଟି ହୋଇଥିବ । ସମସ୍ତ ମତଦ୍ୱୈଧ ଭିତରେ ସ୍ୱୀକାର କରିବାକୁ ହେବ ଯେ 'ସୋମ-ନାଥ ବ୍ରତ କଥା'ରେ ସେଇ ପ୍ରାଚୀନ କାହାଣୀର ପରମ୍ପରା ରହିଛି । ଘଟଣାର ଅଦ୍ଭୁତ ବିବର୍ତ୍ତନ, ଚରିତ୍ରଚିତ୍ରଣ ବା ମନସ୍ତାତ୍ତ୍ୱିକ ବିଶ୍ଳେଷଣ ପ୍ରତି ଲେଖକଙ୍କର ବିଶେଷ ଦୃଷ୍ଟି ନାହିଁ । କଳ୍ପକଥନର ମାଧ୍ୟମରେ ଲେଖକ ବ୍ରତପୂଜାର ପ୍ରାଧାନ୍ୟ ଦେଖାଇଛନ୍ତି । ଧର୍ମ-ମତର ସ୍ରୋତର ପ୍ରବାହ ଏରୂପେ ଗଳ୍ପ ଭିତରେ ଓତପ୍ରୋତ ଭାବରେ ଜଡ଼ିତ ରହିଅଛି । ଏହା ଗୋଟିଏ ଉଦାହରଣ ନୁହେଁ, ଖୋଜି ବସିଲେ ଏମିତି କେତେ ବ୍ରତକଥା କେତେ ଓଷାକଥା ଦେଖିବାକୁ ମିଳିବ । ଏ ମଧ୍ୟରୁ ଅନେକ ଏପର୍ଯ୍ୟନ୍ତ ସେଇ ତାଳପତ୍ର ପୋଥି ଭିତରେ ଲୁଚି ରହିଛନ୍ତି ।

ଅତି ପ୍ରାଚୀନ ଯୁଗରୁ ଏଇପରି କଥାକାହାଣୀ ଡେଇଁ ଆସିଲେ ଆମ ଆଖି ଆଗରେ ପଡ଼େ ବ୍ରଜନାଥ ବଡ଼ଜେନାଙ୍କର 'ଚତୁର ବିନୋଦ'—ପ୍ରାୟ ଦୁଇ ଶହ ବର୍ଷ ତଳର କଥା—ଗୁଚ୍ଛିଏ କଥାକୁ ନେଇ 'ଚତୁର ବିନୋଦ' ରୂପ ପାଇଛି—ସଂସ୍କୃତସାହିତ୍ୟର ଗଳ୍ପରଚନା-ଶୈଳୀ ଭିତ୍ତିରେ ଚତୁର ବିନୋଦର ସୃଷ୍ଟି । କେତେକ ପ୍ରାଚୀନ ଛନ୍ଦର ପ୍ରଚଳନ ରହିଛି । ସମସ୍ତ ବୃତ୍ତାନ୍ତ ମଧ୍ୟରେ 'ଚତୁର ବିନୋଦ'ରେ ସେହି ଗଳ୍ପ ଅଂଶର ପ୍ରାଧାନ୍ୟ ହିଁ ଲକ୍ଷ୍ୟ କରିବାର କଥା—ଗଳ୍ପ ମଧ୍ୟରେ କାହାଣୀ କହିବା ଆଉ ପାଠକକୁ ଆନନ୍ଦ ଦେବା ଅପେକ୍ଷା ଶିକ୍ଷା ଦେବା ଅଧିକ ବିଧେୟ ବୋଲି ସେକାଳର ଲେଖକ ସ ତ ଯେପରି ଧରି ନେଇଥିଲେ । ଆଉ ସେହିହେତୁ ଏ ଦୁଇଟି ଧାରା ସେଯୁଗର ଗଳ୍ପ-ସାହିତ୍ୟରେ ଅକ୍ଷୁଣ୍ଣ ରହିଛି ।

କଥାକାହାଣୀରେ ଅଳ୍ପ ସାମଗ୍ରୀକୁ ଅକ୍ଷୁଣ୍ଣ ରଖି ବଳିଷ୍ଠ ଚରିତ୍ର ଚିତ୍ରଣ କରିବା, ପାଠକକୁ ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଆନନ୍ଦ ଦେବାର ଲକ୍ଷ୍ୟ ନେଇ ଯେପରି ଫକୀରମୋହନ ଲେଖନୀ ଧରିଛନ୍ତି ! ତାଙ୍କର ରେବତୀ, ଡାକମୁନ୍‌ସି, ପେଟେଣ୍ଟ ମେଡ଼ିସିନ୍, ପ୍ରତ୍ୟେକଟି ଗଳ୍ପରେ ଏହି ଧାରା ଏକାବେଳେ ଜୀବନ୍ତ ରହିଛି । ଏବାର ଓଡ଼ିଆ କଥାକାହାଣୀ ସୃଷ୍ଟି ଲାଗି ଫକୀରମୋହନଙ୍କ କଥା କାହାଣୀ ଯେ ଯଥେଷ୍ଟ ଉପାଦାନ ଯୋଗାଇଛି, ଏଥିରେ ସନ୍ଦେହ ନାହିଁ । ଅନେକ ସମୟରେ ଏ ଯୁଗର ଗଳ୍ପ-ସାହିତ୍ୟକୁ ଦେଖି ମନେହୁଏ, ସେଇ ଫକୀରମୋହନଙ୍କର ପରମ୍ପରା ଯେପରି ପ୍ରଚ୍ଛନ୍ନ ଭାବରେ ଓଡ଼ିଆ କଥା-ସାହିତ୍ୟର ଅନ୍ତରାଳରେ ବୁଡ଼ି ରହିଛି । ଏହି ଗଳ୍ପ ରଚନାର ଶୈଳୀ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ବାଙ୍କନିଧି ପଟ୍ଟନାୟକ ପ୍ରଭୃତିଙ୍କୁ ବହୁଭାବରେ ପ୍ରଭାବିତ କରିପାରିଛି ବୋଲି ମନେହୁଏ ।

ଆଧୁନିକ ଯୁଗରେ ଆମ ସାହିତ୍ୟରେ ବହୁ ଗଳ୍ପ-ଲେଖକ ଦେଖା ଦେଇଛନ୍ତି । ପତ୍ରପତ୍ରିକାର ବହୁଳ ପ୍ରସାର ଏରୂପ ଗଳ୍ପ ରଚନା ଲାଗି ଉପଯୁକ୍ତ ସୁଯୋଗ ଓ ସୁବିଧା ସୃଷ୍ଟି କରିଅଛି । କାଳନ୍ଦୀଚରଣ ପାଣିଗ୍ରାହୀ, ଗୋପୀନାଥ ମହାନ୍ତି, କାହ୍ନୁଚରଣ ମହାନ୍ତି, ନିତ୍ୟାନନ୍ଦ ମହାପାତ୍ର, ଗୋଦାବରୀଶ ମହାପାତ୍ର, ରାଜକିଶୋର ରାୟ, ରାଜକିଶୋର ପଟ୍ଟନାୟକ, ଅନନ୍ତ ପ୍ରସାଦ ପଣ୍ଡା, ପ୍ରାଣବନ୍ଧୁ କର—ଏ ପ୍ରତ୍ୟେକଙ୍କ ରଚନାରେ ଯେମିତି ପ୍ରତ୍ୟେକଙ୍କର ସ୍ୱାତନ୍ତ୍ର୍ୟ ବଜାୟ ରହିଛି । ଏଇ କେତେଜଣ ଲେଖକଙ୍କ ମଧ୍ୟରେ ଯେ ଆମ ଆଧୁନିକ ଗଳ୍ପ ସାହିତ୍ୟ କ୍ଷେତ୍ରର ପରିସର ଆବଦ୍ଧ, ତା ନୁହେଁ । ଆମ ସାହିତ୍ୟରେ ଏତେ ଗଳ୍ପଲେଖକ ବାହାରିଲେଣି, ଆଜି ଏତେ ନଆ ନୂଆ ପ୍ରକାର କଥା ଓ କାହାଣୀ ପ୍ରକାଶିତ ହେଲଣି ଯେ

ସେ ସମସ୍ତର ଏକ ଧାରାବାହିକ ଇତିହାସ ପ୍ରସ୍ତୁତ କରିବା ନିଶ୍ଚୟ ସାଧନାସାପେକ୍ଷ । ତେବେ ଏ କ୍ଷେତ୍ରରେ ପରିସରର ସଂକୀର୍ଣ୍ଣତା ଦୃଷ୍ଟିରୁ ଏତିକ କହିଲେ ଯଥେଷ୍ଟ ହେବ ଯେ ୧୨ଟିର ଗଳ୍ପରେ ନୂତନତା ଓ ସ୍ୱାତନ୍ତ୍ର୍ୟ ଦୁଇଟି ଲକ୍ଷ୍ୟ କରିବାର କଥା । କେଉଁଥିରେ ଗଳ୍ପସାମଗ୍ରୀ, କେଉଁଥିରେ ଚରିତ୍ର, କେଉଁଥିରେ ବା ଚରିତ୍ରର ମନୋଭାବ, ପୁଣି କେଉଁଥିରେ ବା ଚମତ୍କାର ଘଟଣା ଓ ଶୃଙ୍ଖଳିକର ଅନୁଭୂତି ପ୍ରକାଶ ପାଉଛି । କେବଳ ଗୋଟିଏ ସୁନ୍ଦର କାହାଣୀ ଦେଲେ ବା ବଳିଷ୍ଠ ଚରିତ୍ର ଚିତ୍ରଣ ଦେଲେ ଯେ 'କଥା'ର ସୃଷ୍ଟି ହେବ, ଏ ଧାରଣା ଏ ଯୁଗର କଥାକାର ଯେପରି ଏକ ନିହାତି ପୁରୁଣା ଧାରଣା ବୋଲି ପ୍ରମାଣ କରିଦେଇଛି । ଗୋଟିଏ ସାମାନ୍ୟ ମୁହୂର୍ତ୍ତର ଅନୁଭୂତି, ଗୋଟିଏ ଦୈବୀ ସଂପାତ—ଏ ବି ଗଳ୍ପ-ରଚନାର ମୂଳପିଣ୍ଡ ହୋଇପାରେ, ଏହା କେବଳ ଧାରଣା ହୋଇ ରହି ନାହିଁ, ରଚନା ମାଧ୍ୟମରେ ଏହାର ପ୍ରକୃଷ୍ଟ ପରିଚୟ ମଧ୍ୟ ଏ ଯୁଗର ଓଡ଼ିଆ କଥାକାର ଦେଇପାରିଛି । ଦିନକୁ ଦିନ ଜୀବନରେ ଯେପରି ନୂଆ ନୂଆ ତଥ୍ୟ ଉପସ୍ଥାପିତ କରିବାକୁ ଏ ଯୁଗର ବୈଜ୍ଞାନିକ ଆଗେଇ ଚାଲିଛି, ସେହିପରି ନୂଆ ନୂଆ ସମାବେଶ ସାହିତ୍ୟର ବିଭିନ୍ନ ବିଭାଗରେ ଦେଲା ଭଳି ଏ ଯୁଗର ଗଳ୍ପ-ସାହିତ୍ୟରେ ମଧ୍ୟ ସାହିତ୍ୟିକ ତା' ବାଟରେ ଆଗେଇ ଯିବାକୁ ଭୁଲି ନାହିଁ । 'ଗଳ୍ପ-ଶ୍ରୀ'ରେ ଆଧୁନିକ ଓଡ଼ିଆ ସାହିତ୍ୟ ସୁନ୍ଦର ଆଉ ସୌଷ୍ଠବମୟ ଆକୃତି ଗ୍ରହଣ କରିବାକୁ ଏକ କ୍ରମିକ ବିକାଶର ପଥରେ ଆଗକୁ-ଆଗକୁ ଗତି କରିଚାଲିଛି, ଏଥିରେ ସନ୍ଦେହ ନାହିଁ ।

———

# ବତ୍ରିଶ ସିଂହାସନ

## [ ୬ ଶିବ ଦାସ ]

[ ପୁରାତନ-ଓଡ଼ିଆ ସାହିତ୍ୟରେ ବହୁ କାବ୍ୟ କବିତା ଥିଲେ ମଧ୍ୟ ଗଦ୍ୟ ବା ଗଳ୍ପ ଯେ ନ ଥିଲା, ତାହା ନୁହେଁ । ଏଠାରେ ଶିବ ଦାସଙ୍କ ରଚିତ ବତିଶ ସିଂହାସନ ଗଳ୍ପରୁ ଗୋଟିଏ ଗଳ୍ପ ପ୍ରଦତ୍ତ ହେଲା । ଏଥିରୁ ପୁରାତନ ଓଡ଼ିଆ ଗଦ୍ୟ ସାହିତ୍ୟର ଭାବ, ଭଙ୍ଗୀ ଓ ଶୈଳୀ ସମ୍ବନ୍ଧରେ ସମ୍ୟକ୍ ଧାରଣା କରିହେବ ।

ବତିଶ ସିଂହାସନ ଗଳ୍ପ ପ୍ରଥମେ ସଂସ୍କୃତରେ ବିରଚିତ ହୋଇଥିଲା । ଏହି ଗଳ୍ପରେ ମୁଖ୍ୟତଃ ସମ୍ରାଟ ବିକ୍ରମାଦିତ୍ୟଙ୍କ ଗୁଣାବଳି ବର୍ଣ୍ଣିତ ହୋଇଅଛି । ସମ୍ରାଟ ବିକ୍ରମାଦିତ୍ୟ ବେତାଳସାଧକ ଥିବା ଯୋଗୁ ଅନାୟାସରେ ବହୁ ଦୁଃସାଧ୍ୟ କାର୍ଯ୍ୟ ସାଧନ କରିପାରୁଥିଲେ । ତାଛଡ଼ା ସେ ତାଙ୍କର ନ୍ୟାୟପରତା ଯୋଗୁ ତ୍ରିଭୁବନରେ ଖ୍ୟାତିଲାଭ କରିଥିଲେ । ସେ ଏପରି ନ୍ୟାୟବନ୍ତ ଥିଲେ ଯେ ଥରେ ସ୍ୱର୍ଗରେ ରମ୍ଭା ଓ ଉର୍ବଶୀଙ୍କ ମଧ୍ୟରେ କିଏ ନୃତ୍ୟ-ନିପୁଣା, ତାହା ନିଷ୍ପତ୍ତି କରିଦେବା ପାଇଁ ଦେବରାଜ ଇନ୍ଦ୍ର ବିକ୍ରମାଦିତ୍ୟଙ୍କୁ ନିମନ୍ତ୍ରଣ କରିଥିଲେ ।

ବିକ୍ରମାଦିତ୍ୟ ଇନ୍ଦ୍ରଙ୍କର ନିମନ୍ତ୍ରଣ ରକ୍ଷାକରି ସ୍ୱର୍ଗକୁ ଗଲେ ଓ ସେଠାରେ ଉଭୟ ନୃତ୍ୟଶିଳ୍ପୀଙ୍କ ନୃତ୍ୟ ଦର୍ଶନ କରି ଉର୍ବଶୀ ଶ୍ରେଷ୍ଠ ନର୍ତ୍ତକୀ ବୋଲି ମତ ଦେଇଥିଲେ । ବିକ୍ରମାଦିତ୍ୟଙ୍କ ନିଷ୍ପତ୍ତି ସନ୍ତୋଷଜନକ ହୋଇଥିବାରୁ ଇନ୍ଦ୍ର ତାହାଙ୍କୁ ବିବିଧ ରତ୍ନଖଚିତ ଗୋଟିଏ ଅମୂଲ୍ୟ ସିଂହାସନ ପୁରସ୍କାର ଦେଇଥିଲେ । ଏହି ସିଂହାସନରେ ବତିଶ ଗୋଟି ପୁତ୍ତଳିକା ଖଚିତ ହୋଇଥିଲେ । ସେହି ସିଂହାସନଟିକୁ ବିକ୍ରମାଦିତ୍ୟ ଉଜ୍ଜୟିନୀକୁ ନେଇ ଆସିଥିଲେ ଓ ତାହା ଉପରେ

ବସି ରାଜକାର୍ଯ୍ୟ ପରିଚାଳନା କରୁଥିଲେ । ଏହି ସିଂହାସନ ପ୍ରାପ୍ତିରେ ବିକ୍ରମାଦିତ୍ୟଙ୍କ ଖ୍ୟାତି ପରିବ୍ୟାପ୍ତ ହୋଇଥିଲା ।

ବିକ୍ରମାଦିତ୍ୟଙ୍କ ପରେ ଉପଯୁକ୍ତ ଦାୟାଦଙ୍କ ଅଭାବରୁ ଉକ୍ତ ସିଂହାସନଟିକୁ ପାରିଷଦଗଣ ଗୋଟିଏ ପ୍ରାନ୍ତରରେ ପୋତିପକାଇଥିଲେ । ବହୁକାଳ ପରେ ଭୋଜରାଜ ଉଜ୍ଜୟିନୀର ରାଜସିଂହାସନରେ ଅଧିରୂଢ଼ ହେଲେ ଏବଂ ଆକସ୍ମିକ ଭାବରେ ଏହି ସିଂହାସନକୁ ଭୂଗର୍ଭରୁ ଉଦ୍ଧାର କରିଥିଲେ । ପୂର୍ବପୁରୁଷଙ୍କ ସିଂହାସନ ପ୍ରାପ୍ତି ପରେ ଭୋଜରାଜ ଉକ୍ତ ସିଂହାସନରେ ବସିବାକୁ ଉଦ୍ୟତ ହୁଅନ୍ତେ ଗୋଟିଏ ପୁତ୍ତଳିକା ତାଙ୍କୁ ସେପରି କରିବାକୁ ବାରଣ କଲା ଏବଂ ବିକ୍ରମାଦିତ୍ୟଙ୍କ ଗୁଣାବଳି ବର୍ଣ୍ଣନ କରି କେବଳ ସେହିପରି ଗୁଣୀ ଲୋକ ହିଁ ସେ ସିଂହାସନରେ ଆରୋହଣ କରିବାପାଇଁ ଉପଯୁକ୍ତ ବୋଲି କହିଲା । ଏହା କହିବା ସଙ୍ଗେ ସଙ୍ଗେ ପୁତ୍ତଳିକା ପ୍ରାଣତ୍ୟାଗ ମଧ୍ୟ କରିଥିଲା । ଏହିପରି ପ୍ରତ୍ୟହ ଗୋଟିଏ ଗୋଟିଏ ପୁତ୍ତଳିକା ବିକ୍ରମାଦିତ୍ୟଙ୍କ ଗୁଣବର୍ଣ୍ଣିତ ଏକ ଏକ ବିଷୟ କହିଥିଲେ ଓ ତାହା ହିଁ ବତିଶ ସିଂହାସନ ଗଳ୍ପରୂପେ ପ୍ରସିଦ୍ଧ । ]

ଯେମନ୍ତ ସମୟେ ରାତି ପାଇଲା ଉତ୍ତାରୁ ଭୋଜରାଜା ନିତ୍ୟ-କର୍ମ ସାରି, ରାଜା ହସ୍ତରେ ଫୁଲମଣ୍ଡା ଗୋଟିଏ ଘେନି ସିଂହାସନକୁ ବିଜେ କରନ୍ତେ, ପ୍ରଥମ ପିତୁଳୀ ହସିଉଠିଲା । ସେ ପିତୁଳୀ ହସିବା ଦେଖି ତାକୁ ରାଜା ପଚାରିଲେ ତୁ କାହିଁପାଇଁ ହସିଲୁ କହ । ସେ ପିତୁଳୀ ବୋଇଲା, ହେ ରାଜନ, ଯେଉଁ ସିଂହାସନେ ବିକ୍ରମ ରାଜା ସେ ଭାଜିର୍ନ । ଏମନ୍ତ ଶୁଣି ରାଜା ବୋଇଲେ, ତାହାଙ୍କର କି ଗୁଣ ? ରାଜାର ଏମନ୍ତ ବଚନ ଶୁଣି ପିତୁଳୀ ବୋଇଲା, ତାହାଙ୍କର ମୁଁ କିକ କହି ପାରଇ । ତାହାଙ୍କର କଥା ଦେବଙ୍କୁ ଦୁର୍ଲଭ । ମୁଁ ତାହାଙ୍କର କଥା କିସ କହିବି ? ଧ୍ୟାନ ପରିଗୁଣେ ତୁମ୍ଭେ ଶୁଣ । ଏମନ୍ତ ଶୁଣି ଭୋଜରାଜା ବୋଇଲେ, ସେ ଆମ୍ଭଠାରୁ ବଡ଼ ଦାନୀ ? ଆମ୍ଭେ ଯାହା ଚାହିଁବାର ନିତ୍ୟ ଲକ୍ଷେ ସୁନାଆ ଦାନ ଦେଇପାରୁଁ । ରାଜାର ଯେଉଁ

ବଚନ ଶୁଣି ସେ ପିତୁଳୀ ବୋଇଲା, ହେ ରାଜନ, ଏଥୁତକ ଜାଣିଲୁଇଁ ତୁମ୍ଭେ ବଡ଼ କୃପଣ । ଯେତେବେଳକୁ ଆପଣା ଗୁଣ କହିଲ ତେତେବେଳକୁ ଜାଣିଲୁଣି । ପୂର୍ବେ ଶୁଣିଅଛୁ ଆପଣା ପୁରୁଷାର୍ଥ ଆପଣ କହିଲେ ସେ ନଷ୍ଟ । ଏମନ୍ତେ ଋଷିବାକ୍ୟ ମନେ ଅଛୁ । ଯେତେ ଗୁଣବନ୍ତ ହେଲେ ଆପଣା ପୁରୁଷାର୍ଥ ନ କହିବ ଏହିରୂପେ ଶୁଣିଥାଇଁ ଆପଣା ଗୁଣ ଯେବେ ପରକୁ କହଇ ତେବେ ସେ ବିକର୍ମ ଗୁଣରେ ଲେଖା । ତେଣୁକରି ଆପଣାର ଗୁଣ ପରକୁ ନ କହିବ । ଏମାନ ଉତ୍ତମ ଜନମାନଙ୍କର । କହିଲେ ତେଜେ ମାତ୍ରା ହିଁ । ଏଥୁ ପିତୁଳୀ ଏମନ୍ତ ରାଜାଙ୍କୁ କହିଲେ । ଏଥୁ ପିତୁଳୀ ବଚନ ଶୁଣି ବୋଇଲେ ସେ ଆମ୍ଭଠାରୁ ବଡ଼ ଦାମ । ସେ ବିକ୍ରମାଦିତ୍ୟଙ୍କ କେମନ୍ତ ଗୁଣ ତାହା କହ ଶୁଣିବା । ରାଜାର ଏ ବଚନ ଶୁଣି ପିତୁଳୀ ବୋଇଲା, ସେ ବିକ୍ରମ ରାଜାଙ୍କ ଛାମୁରେ ସାମନ୍ତ ପାତ୍ର ରାଉତ ନିଯୋଗୀ ଭେଟନ୍ତି । ତାହାଙ୍କୁ ରାଜା ଅନାଇଲେ ସେ ରାଜା ଲୋକଙ୍କୁ ସହସ୍ରେ ସୁନାଆ ଦିଅନ୍ତି । ଯାହାକୁ ଗୃହାନ୍ତି ତାହାକୁ ଖଣ୍ଡ ବଚନ କହନ୍ତି । କୋଟିଏ ସୁବର୍ଣ୍ଣ ଦିଅନ୍ତି । ସେ ଦେଲେ ଯେବେ ସେ ଖଣ୍ଡ କରନ୍ତି ତେବେ ରାଜା ବୋଲଣା କରନ୍ତି । ଏଣୁକରି ଭଣ୍ଡାର ଅଧିକାରୀ [illegible] ରାଜାଙ୍କୁ ଜଣାଇ ସୁବର୍ଣ୍ଣ ଧରି ବସିଥାନ୍ତି । ଏହିରୂପେ ରାଜାଙ୍କୁ ପ୍ରଥମ ପିତୁଳୀ କହିଲା । ବୋଇଲା ହେ ରାଜ, ଏମନ୍ତେ ମହାତ୍ମା ଗୁଣ ଯେବେ ତୁମ୍ଭଠାରେ ଅଛି ତେବେ ସିଂହାସନେ ବସ ।

ଇତି ଶ୍ରୀ ଶିବ ଦାସ ବିରଚିତ ଦ୍ୱିତୀୟ କଥା ସମାପ୍ତ ।

———

# ଚତୁରବିନୋଦ କଥା

## [ ୰ ବ୍ରଜନାଥ ବଡ଼ଜେନା ]

କ୍ଷେତ୍ରପାଳ ନାମେ ଏକ ଭୂମିଜ ଥିଲା । ସେ ଅତ୍ୟନ୍ତ ବଳବନ୍ତ ଅଟଇ । ତା ଧନୁରେ ଗୁଣ ଦେଇ ଆମଞ୍ଜନ କରିବାକୁ ସଂସାରେ କେହି ନ ଥିଲେ । ସେ ଶର ବିନ୍ଧିଲେ ମତ୍ତହସ୍ତୀ ପ୍ରାଣ ହରଇ । ସେ କ୍ଷେତ୍ରପାଳ ଅହିପୁର ନାମେ ପର୍ବତରେ ଘର କରିଥାଏ । ସେ ବାଟରେ ଯିବା ଆସିବା ମହାଜନ-ମାନଙ୍କଠାରୁ ଧନରତ୍ନ ଲୁଟି କରି ନେଇ ରାଜା ସମାନ ସମ୍ପଦ କରିଥାଇ । ପାଞ୍ଚଶ ଲୋକ ଯାଉଥିଲେ ମୃଗ ପଲରେ ସିଂହ ପଶି ମନ୍ଥିଲା ପ୍ରାୟେ ଲୁଟି କରଇ । ଏରୂପେ ଅନ୍ୟାୟ କରିବାରୁ ସେ ପଥ ନ ଚଳିଲା । ବାଣିଜ୍ୟ ବନ୍ଦ ହେବାରୁ ମହାଜନମାନେ ବଡ଼ ଦୁଃଖ ପାଇଲେ । କଣ୍ଟି ଜିନିଷି ନ ମିଳିବା ଯୋଗୁଁ ପ୍ରାଣୀ-ମାନଙ୍କର କାର୍ଯ୍ୟ ଅଚଳ ହେଲା । ସେ ତ ମଧ୍ୟସ୍ଥାନ । ଯେଉଁ ଢଗରୁ ଅଇଲେ ସେଇ ବାଟରେ ମିଳିବ । ଆନ ଢଗରେ ଆତଯାତ ହେବାକୁ ସଜ ନୁହଇ । କେମନ୍ତ ସେ ବାଟେ ଗତାଗତ ହେବା ମହାଜନମାନେ ବସି ବିଚାର କଲେ, ଗୁଲ; କ୍ଷେତ୍ରପାଳ ସଙ୍ଗେ ଆମ୍ଭେ ପ୍ରୀତି କରିବା, ନୋହିଲେ ଚଳିପାରିବା ନାହିଁ । ଏମନ୍ତେ ଦଶବିଂଶ ମହାଜନ ସଙ୍ଗ ହୋଇ ତାଠାକୁ ଯାଇ କହିଲେ, ହେ କ୍ଷେତ୍ରପାଳ ! ଆମ୍ଭେ ତୁମ୍ଭଠାରେ ମିଳିଲୁ , ତୁମ୍ଭେ ଯେଉଁରୂପେ ବୋଲିବ, ସେ ରୂପେ ଧନ ଦେବୁ, ଆଉ ବାଟରେ ଆମ୍ଭ ଧନ

ଲୁଟ କରିବ ନାହିଁ । ଏରୂପେ ନାନା ଉପହାର ଦ୍ରବ୍ୟମାନ ଦେଇ କ୍ଷେତ୍ରପାଳ ସଙ୍ଗେ ପ୍ରୀତି କଲେ । ସେ ଯେଉଁରୂପେ କହଇ, ସେହି-ରୂପେ ଧନ ସାରଣା କରି ବାଣିଜ୍ୟ ଅଛନ୍ତି । ସେହିଦିନୁଁ ସେ ବାଟରେ ନିର୍ଭୟରେ ଜଣେ ଦୁଇ ଜଣ ଆତଯାତ ହୋଇ କାରବାର କଲେ । କ୍ଷେତ୍ରପାଳଠାରେ ବେଳୁବେଳ ଅଧିକ ପ୍ରୀତି କରି ଅପୂର୍ବ ପଦାର୍ଥ ମିଳିଲେ ଆଗ ତାକୁ ଦେଇ ପଛେ ଖାଆନ୍ତି । ଭୟରେ ଇଷ୍ଟବନ୍ଧୁ ପ୍ରାୟେ ତା'ଠାରେ ଭାବନା ରଖିଥାନ୍ତି । (ଏହାକୁ ଦୁଷ୍ଟପ୍ରୀତି କହି । କଲେ ଅକାର୍ଯ୍ୟ ହୁଅଇ, ନ କଲେ ଚଳି ନ ପାରଇ, ଏ ଯେଣେ ଦୁଷ୍ଟ ଲୋକ ଥିବାଠାରେ ବାସ ନ କରିବ) । ଯେବେ ଅନ୍ତର ହୋଇ ନ ପାରିବ, ତେବେ ଉପର ମନରେ ପ୍ରୀତି ରଖିଥିବ; ଏ ଦୁଷ୍ଟପ୍ରୀତି ଅଟଇ ।

ଏବେ ମିତ୍ରପ୍ରୀତି ଯେରୂପେ ତାହା ଶୁଣ । ଚନ୍ଦ୍ରଜ୍ୟୋତି ନାମେ ଏକ ରାଜହଂସ ଥିଲା ଯେ, ସେ ଏକ ଦିନକରେ ମାନସ ସରୋବରରେ ଗଙ୍ଗାକୁ ଆସୁଥିଲା । ବାଟରେ ଆସନ୍ତେ ଠାଏ ଦେଖିଲା ଏକ ଦିବ୍ୟ ପୁଷ୍କରିଣୀ ଅଛି । ବିଚାରିଲା ଏଠାରେ ମୃଣାଳ ଖାଇବି । ଏମନ୍ତେ ସେ ଜଳରେ ପଶି ମୃଣାଳମାନ ଆହରଣ କରନ୍ତେ କୃଶପାଦ* ନାମେ ଏକ ବକ ସେ ହଂସକୁ ଦେଖି ବିଚାର କରୁଛି, ଏହା ଦେହ ଏଡ଼େ ସ୍ଥୂଳ କାହିଁକି ହେଲା, ମୁଁ କାହିଁକି ଏଡ଼େ ଦୁର୍ବଳ ହେଲି । ବର୍ଣ୍ଣରେ ତ ମୁଁ ଏହାଠାରୁ ଉଜ୍ଜ୍ୱଳ; ଚକ୍ଷୁ ହିଁ ତ ମୋହର ସୁନ୍ଦର, ପକ୍ଷମାନେ ଅତି ଉତ୍ତମ, କେବଳ ଅଣ୍ଟ ବେକ ପାଦ ଏମାନେ ଟିକିଏ ଟିକିଏ ସରୁ ସରୁ ବୋଲି ଚାଲିବା ବେଳକୁ ମାନୁ ନ ଥିବ । ମୋର ଯେବେ ଏହାପରି ଦେହ ମୋଟ

* ତୃଣପାଦ—ପାଠାନ୍ତର

ହେବ, ତେବେ ଏହାଠାରୁ ଅତି ସୁନ୍ଦର ହେବୁ, ବକମାନଙ୍କ ଉପରେ ରଜା ପ୍ରାୟୁ ହଣିବ । ଏବେ ଏହା ସାଙ୍ଗେ ପ୍ରୀତି କରି ଏ ଯାହା ଖାଉଛୁ, ମୁଁ ତାହା ଖାଇବି । ଏମନ୍ତ ବିଚାରି ଡାକିଲା, ଆହେ ମରାଳବର, ତୁମ୍ଭେ ଏ ହ୍ରଦେ ଆସି ଜଳକେଳି କର; ତେଣେ ବ୍ୟାଧମାନେ ଫାଶ ବସାଇଥାନ୍ତି, ପକ୍ଷୀମାନଙ୍କୁ ଧରି ପ୍ରାଣ ନିଅନ୍ତି, ଏବେ ସତ୍ୱର ହୋଇ ଏଣିକି ଆସ । ଏହା ଶୁଣି ଚନ୍ଦ୍ର-ଜ୍ୟାତି ହଂସ କାତର ହେଲା । ବିଚାରିଲା ଏ ବକ ବଡ଼ ଦୟାଳୁ, ପ୍ରାଣୀଉପକାରୀ, ବଡ଼ ସଙ୍କଟରୁ ରକ୍ଷା କଲେ, ଏବେ ମୁଁ ଏହାଙ୍କ ସଙ୍ଗେ ପ୍ରୀତି କରିବି । ଏମନ୍ତ ବିଚାରି କୃଶପାଦ ବକ ନିକଟକୁ ଆସି କହିଲା, ହେ ମହାତ୍ମା ବକରାଜ, ତୁମ୍ଭେ ବଡ଼ ଦୟାଳୁ, ମୋହର ପ୍ରାଣଦାନ ଦେଲ, ଏ ସକାଶୁଁ ତୁମ୍ଭ ମୋ ପ୍ରୀତିପଣ ହେଲା, ଏଥିରେ ଅନ୍ୟ ନାହିଁ । ବକ କହିଲା, ଏ ତ ମୋର ଭାଗ୍ୟ କଥା, ମାତ୍ର ମୁଁ ଯାହା ପଚାରିବି ତାହା ନିର୍ମଳ କରି କହିବ । ଏହା ଶୁଣି ହଂସ ବୋଇଲା, ପଚାରିବା ହେଉ । ବକ କହିଲା, ଆପଣ କି ଦ୍ରବ୍ୟ ଖାଅ, ମୋତେ ତାହା କହ ମୁଁ ଖାଇବି । ହଂସ କହିଲା, ଆମ୍ଭେ ଯାହା ଖାଉଁ ଏଠାରେ ସେ ପଦାର୍ଥମାନ କାହୁଁ ମିଳିବ ? କେବଳ ସୁରଗଙ୍ଗାରେ ସେ ଥାଏ । ଯେବେ ତୁମେ ଖାଇବାକୁ ଇଚ୍ଛା କଲ, ତେବେ ମୁଁ ଆଣିଦେବି । ଏମନ୍ତେ ବକ ସଙ୍ଗେ ପ୍ରୀତି କରି ହଂସ ମେଲାଣି ହୋଇ ସେଠାରୁ ଚଳିଲା । ଗଙ୍ଗାରେ ପ୍ରବେଶ ହୋଇ କଚ୍ଛହନ ବିହାର (*) କରି ଭକ୍ଷ୍ୟ ପଦାର୍ଥମାନ ଥଣ୍ଟରେ ଧରି କୃଶପାଦ ବକଠାକୁ ଆଇଲା । ଦେଖିଲା, ସେହି ପୁଷ୍କରିଣୀରେ ବକ ମୀନ ଜଗିଛି, ହଂସ ଯାଇଁ ତା ପାଖେ ପ୍ରବେଶ ହୋଇ ମାନ୍ୟ କଲା ।

---

* ବେହାର—ପାଠାନ୍ତର

କହିଲା ତୁମ୍ଭପାଇଁ ଭକ୍ଷ୍ୟ ପଦାର୍ଥମାନ ଆଣିଛୁ । ଏହା ପାନ କର । ଏମନ୍ତ ଚଞ୍ଚୁରୁ କାଢ଼ି ତଳେ ଥୋଇ ଚହ୍ନାଇ ଦେଲା--

ଏ ମୃଣାଳ ରସ ଏ ପୁଷ୍କର ରସ,
ଏ କୁମୁଦ କନ୍ଦ ଏ କୋମଳ ମକରନ୍ଦ,
ଏ କନକ ପଙ୍କ ଏ ମୋତି ରଜକ ।

ଏ ନାମମାନ ହଂସଠାରୁ ଶୁଣି ମହା ଆନନ୍ଦ ହେଲା କୃଶପାଦ ନାମେ ବକ ।

ଏ ନିମନ୍ତେ ହରଷ ହୋଇ ସେ ରସମାନ ଖାଇଲା, ବିଚାରିଲା, ଏଥର ମୁଁ ଅତି ସ୍ଥୂଳ ହେବ । ଏ ରୂପ ହଂସ ପାଞ୍ଚ ସାତ ଥର ଆହାର ଆଣି ଦେଲା, ବକ ଔଷଧ ଖାଇଲା ପ୍ରାୟେ ଖାଉଥାଏ । ଦିନକୁ ଦିନ ଦେହକୁ ଚାହିଁ ବିଚାରୁଥାଏ, ମୁଁ ତ ମୋଟ ହେଲି ନାହିଁ । ହେ ଜନମାନେ ! ବିଚାର କର, ବକ କି ହଂସ ପ୍ରାୟେ ହୁଅନ୍ତା ! ଯହୁଁ ଦେହ ନ ବଢ଼ିଲା, ଚିନ୍ତିଲା, ଏ ହଂସ ପ୍ରୀତିରୁ ମୋର କି କାର୍ଯ୍ୟ ଅଛି ! କେବଳ ପଙ୍କ, ପଥର, ଧୂଳିଗୁଣ୍ଡାଏ ମାତ୍ର ଖାଇଲି । ଏତିକି ହେଲା ଯେ, ହଂସ ଅଇଁଠା ଖାଇଲି, ଖୁଣ୍ଟା ରହିଲା । ବକମାନେ ଶୁଣିଲେ ନିନ୍ଦା କରିବେ, ଅଜାତି କରି ରଖିବେ, ଏବେ ହଂସକୁ ମୁଁ ଅଇଁଠା ଖୁଆଇଲେ ସିନା ହେବ । ଏମନ୍ତେ ହଂସ ଏକ ଦିନକରେ ପ୍ରବେଶ ହୋଇ ଅଣ୍ଟରୁ ଆହାର ତଳେ ରଖି ବକକୁ କୋଳ କଲା । ବକ କହିଲା, ହେ ମରାଳବର, ତୁମ୍ଭ ଦ୍ରବ୍ୟ ତ ମୁଁ ବହୁତ ଖାଇଲଣି । ତୁମ୍ଭକୁ କିଛି ନ ଖୁଆଇ ପାରିଲି । ଏ ବଡ଼ ଅସୁନ୍ଦର ହୋଇଛି । ପ୍ରୀତି ଦୁଇଆଡ଼ୁ ହେଲେ ସିନା ସୁନ୍ଦର, ମୁଁ ଯାହା ଦେବି ତୁମ୍ଭେ ତାହା ପାନ କରିବ । ହଂସ ବୋଇଲା କାହିଁକି ନ ଖାଇବି, ତେବେ ଦିଅ । ବକ କହିଲା, ମୁଁ ଯାଇ ଆଣେ, ତୁମ୍ଭେ ଦଣ୍ଡେମାତ୍ର ବସ । ଏହା କହି ଯାଇ ଟାଙ୍ଗିଆଟାକେ ପଶି ଗେଣ୍ଡା, ଶାମୁକା, ଭେକ,

ଜୋକ, ମୀନ ଏରୂପେ ମାରି ତାହୁଁ ଖଣ୍ଡେ ଖଣ୍ଡେ ଖାଇ ଆଉ ଖଣ୍ଡମାନ ଥଣ୍ଟରେ ଧରି ହଂସ ପାଶେ ପ୍ରବେଶ ହେଲା । ଥଣ୍ଟରୁ କାଢ଼ି ତଳେ ଥୋଇ କହିଲା, ଏହା ତେବେ ପାନ କର । ହଂସ ସେ ଦୁର୍ଗନ୍ଧରୁ କହିଲା, ଏହା ପାନ କରି ନ ପାରିବି ପରି ! ବକ କହିଲା ଏ ତ ଉତ୍ତମ ଦ୍ରବ୍ୟ, ମୋଠାରେ ଯେବେ ସୁଖ ଥିବ, ତେବେ ଭୋଜନ କରିବ । ହଂସ ତ ମହା ସୁଜନ, ବକ କଥାରେ ବିଶ୍ୱାସ କରି ତାହୁଁ ଖଣ୍ଡେ ଖଣ୍ଡେ ଗିଳି ଦିଅନ୍ତେ ପେଟରେ ପଡ଼ି ଦେହ ମୂର୍ଚ୍ଛି ହେଲା । ହଂସ ବଡ଼ ବିକଳ ହୋଇ ବାନ୍ତି କରି ପକାଇଲା । ମୀନ ଦୁର୍ଗନ୍ଧରେ ଅନ୍ତ ଘାଣ୍ଟି ହେଉଛି; ବକକୁ ବୋଇଲା ମୋ ପ୍ରାଣ ଗଲା, ଏ ବିକଳ କହି ନୋହିବ । ସେଠାରୁ ବକ କହିଲା, ମୁଁ ତୁମ୍ଭ ଅଇଁଠା ଖାଇଲି, ଏ ବକ କୁଳକୁ ବଡ଼ ଅସୁନ୍ଦର ହେଲା, ତୁମ୍ଭେ ମୋ ଅଇଁଠା ନ ଖାଇଲେ କି ରୂପେ ଯାଆନ୍ତ ? ଏବେ ତୁମ୍ଭ ପ୍ରୀତିରୁ ମୋର କିଛି ଫଳ ନାହିଁ । ବକ ଅଇଁଠା କେଡ଼େ ସୁଆଦ ଏହା ତ ଜାଣିଲୁ ! ବକମାନେ ଅଇଲେ ଖୁମ୍ପି ପକାଇବେଟି, ଏଠାରୁ ବେଗେ ପଳା । ଏହା ଶୁଣି ହଂସ କାତର ହୋଇ ପ୍ରାଣଭୟରେ ସେଠାରୁ ପଳାଇଲା ।

ଏରୂପେ ନୀଚ ଲୋକ ସଙ୍ଗେ ପ୍ରୀତି କଲେ ଉତ୍ତମ ଲୋକ ବିପଦରେ ପଡ଼ଇ (*) । ଏ ନିକାଶୁଁ ନୀଚ ଲୋକ ସଙ୍ଗେ ପ୍ରୀତି ନ କରିବ । ଏହାକୁ ନୀଚପ୍ରୀତି କହି ।

---

( ଚତୁର ବିନୋଦରୁ ଗୃହୀତ )

---

(*) ନୀଚ ହୋଇଯାଇ —ପାଠାନ୍ତର

# ଭରତ

## [ ୬ ପଣ୍ଡିତ ପୁରୁଷୋତ୍ତମ ତର୍କରତ୍ନ ]

ରାମାୟଣ ପ୍ରାଚୀନ ଭାରତର ଏକ ଅନବଦ୍ୟ ସାହିତ୍ୟ ସୃଷ୍ଟି । ରଘୁକୁଳତିଳକ ଲୋକାଭିରାମ ରାମଚନ୍ଦ୍ରଙ୍କ ସମ୍ପର୍କରେ କବିଗୁରୁ ବାଲ୍ମୀକି କାବ୍ୟ ରଚନା କରି ବିଶ୍ୱ-ସାହିତ୍ୟକୁ ଋଦ୍ଧିମନ୍ତ କରି-ଯାଇଛନ୍ତି । ବିଶ୍ୱବାସୀ ବାଲ୍ମୀକିଙ୍କର ଏହି ରାମାୟଣ କାବ୍ୟର ପ୍ରଭାବରେ ଅନେକାଂଶରେ ପ୍ରଭାବିତ । ଏହି କାବ୍ୟ ଗ୍ରନ୍ଥରେ ପ୍ରତ୍ୟେକ ପ୍ରକାର ଚରିତ୍ରର ଚିତ୍ରଣ କରାଯାଇଛି । ରାମାୟଣ ରଚୟିତା ଲକ୍ଷ୍ମଣଙ୍କ ପରିଣୀତା ଊର୍ମିଳାଙ୍କୁ ରାମାୟଣ ଗ୍ରନ୍ଥରେ ସର୍ବୋଚ୍ଚ ସ୍ଥାନ ଦେଇ ଭରତଙ୍କ ପ୍ରତି ବାସ୍ତବିକ ଅବିଚାର କରି-ଛନ୍ତି । ପୁଣି ବିଶ୍ୱକବି ରବୀନ୍ଦ୍ରନାଥ ଓ ହିନ୍ଦୀ ସାହିତ୍ୟର କବିସମ୍ରାଟ ଶ୍ରୀଯୁକ୍ତ ମୈଥିଳୀଶରଣ ଗୁପ୍ତ ଊର୍ମିଳାଙ୍କୁ ସର୍ବୋଚ୍ଚ ସ୍ଥାନ ଦେଇ ଭରତଙ୍କ ଆଦର୍ଶ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିନାହାନ୍ତି । ରାଜସିଂହାସନ ଅଧିକାର ପାଇଁ ନିଷ୍କଣ୍ଟକ ସୁଯୋଗ ପାଇ ମଧ୍ୟ 'ଜ୍ୟେଷ୍ଠଭ୍ରାତଃ ପିତୃସମ' ଆଦର୍ଶରେ ପରିଚାଳିତ ହୋଇ ଭ୍ରାତୃଭକ୍ତ ଭରତ ଯେ ଅପୂର୍ବ ସ୍ୱାର୍ଥତ୍ୟାଗର ପରମ୍ପରା ପ୍ରତିଷ୍ଠା କରିଯାଇଛନ୍ତି, ବିଶ୍ୱ-ସାହିତ୍ୟରେ ଅନୁରୂପ ଚରିତ୍ର ବିରଳ ।

ରାମାୟଣ କାବ୍ୟରେ ଏକମାତ୍ର ନିର୍ଦ୍ଦୋଷ ନିଷ୍କଳଙ୍କ ଭରତଙ୍କ ଭାଗ୍ୟରେ ଯେଉଁ ବିଡ଼ମ୍ବନା ଘଟିଥିଲା ସେ ସମ୍ପର୍କରେ ରାମାୟଣରେ ସବିଶେଷ ବର୍ଣ୍ଣନା ନ ଥିବାରୁ ସମାଲୋଚକମାନଙ୍କୁ ଦୁଃଖିତ ହେବାକୁ ପଡ଼େ । ରାମ ବନବାସ ଆୟୋଜନରେ ଅଯୋଧ୍ୟାର ରାଜଭବନରେ ଭରତଙ୍କୁ କେନ୍ଦ୍ରକରି ଯେଉଁ ତୁମୁଳ ବାଦାନୁବାଦ

ଉପସ୍ଥିତ ହୋଇଥିଲା ତାହା ବାସ୍ତବିକ ଦୁଃଖଦ । ରାମଚନ୍ଦ୍ର ବନବାସୀ ହେବା ସମୟରେ "ଭରତେ ସନ୍ନିବଦ୍ଧାଃ ସ୍ମାଗୌନକେ ପଶବେ" ଅର୍ଥାତ୍ ଆମେ ଘାତକ ସନ୍ନିକଟରେ ପଶୁ ପରି ଭରତଙ୍କ ନିକଟରେ ନିବଦ୍ଧ ହେଉଛୁ ପ୍ରଜାମାନେ ଏହିପରି ଆର୍ତ୍ତିବାଦ କଲେ, ଆହୁରି ମଧ୍ୟ ଏହି ସାଧୁ ବ୍ୟକ୍ତି ଆତ୍ମୀୟସ୍ୱଜନଙ୍କ ନିକଟରୁ ଅନ୍ୟାୟ ଲାଞ୍ଛନାପ୍ରାପ୍ତି ହୋଇଥିଲେ । ରାମଚନ୍ଦ୍ର ଭରତଙ୍କୁ ଏତେ ଭଲ ପାଉଥିଲେ ଯେ "ମମ ପ୍ରାଣୈଃ ପ୍ରିୟତମ" ବୋଲି ବାରମ୍ବାର ଭରତଙ୍କୁ ସମ୍ଭାଷଣ କରିଛନ୍ତି । ବିଦାୟ କାଳରେ କୌଶଲ୍ୟାଙ୍କୁ ରାମଚନ୍ଦ୍ର କହିଥିଲେ, "ଧର୍ମପ୍ରାଣ ଭରତ ଉପରେ ବିଶ୍ୱାସ ରଖି ତୁମକୁ ଅଯୋଧ୍ୟାରେ ଛାଡ଼ିବାକୁ ମୋର ଚିନ୍ତାର କୌଣସି କାରଣ ନାହିଁ ।" ଅଥଚ ସେଇ ରାମଚନ୍ଦ୍ର ଭରତଙ୍କ ପ୍ରତି ଯେ ସ୍ଥଳବିଶେଷରେ ସନ୍ଦେହବାଣ ନିକ୍ଷେପ କରି ନାହାନ୍ତି ଏପରି ନୁହେଁ । ସେ ସୀତାଙ୍କ ନିକଟରେ କହିଛନ୍ତି, ଭରତଙ୍କ ନିକଟରେ ମୋର ପ୍ରଶଂସା କରିବ ନାହିଁ— ଲୋଭବ୍ୟାଧିଯୁକ୍ତ ପୁରୁଷମାନେ ପରର ପ୍ରଶଂସା ଶୁଣିବାକୁ ଇଚ୍ଛା କରନ୍ତି ନାହିଁ ।"

ପିତା ଦଶରଥ ରାମାଭିଷେକର ଉଦ୍‌ଯୋଗ ପର୍ବ ସମୟରେ ଭରତଙ୍କୁ ସନ୍ଦେହଚକ୍ଷୁରେ ଦେଖି ରାମଚନ୍ଦ୍ରଙ୍କୁ କହିଥିଲେ, "ଭରତ ମାତୁଳାଳୟରେ ଥାଉ ଥାଉ ତୋର ଅଭିଷେକ ସମ୍ପନ୍ନ ହେଉ ବୋଲି ମୋର ଇଚ୍ଛା । କାରଣ ଯଦିଓ ଭରତ ଧାର୍ମିକ ଓ ତୋର ଅନୁଗତ, ତଥାପି ମନୁଷ୍ୟ ମନ ବିଚଳିତ ହେବାକୁ କେତେ କ୍ଷଣ ?" ଇକ୍ଷ୍ୱାକୁ ବଂଶର ଚିରାଗତ ପ୍ରଥାନୁସାରେ ରାଜସିଂହାସନ ଜ୍ୟେଷ୍ଠ ଭ୍ରାତାର ପ୍ରାପ୍ୟ; ଏପରି ଅବସ୍ଥାରେ ଧାର୍ମିକାଗ୍ରଗଣ୍ୟ ଭରତଙ୍କ ପ୍ରତି ଏହି ସନ୍ଦେହର ମାର୍ଜନା ନାହିଁ । ରାମ ଭରତଙ୍କର ଚରିତ୍ର-ମାହାତ୍ମ୍ୟ ଏତେ ବୁଝି ମଧ୍ୟ ବନବାସାନ୍ତେ ଭରଦ୍ୱାଜାଶ୍ରମଠାରୁ ହନୁମାନଙ୍କୁ

ଭରତଙ୍କ ନିକଟକୁ ପଠାଇ କହିଥିଲେ, "ମୋର ପ୍ରତ୍ୟାଗମନ ସମ୍ବାଦ ଶୁଣି ଭରତର ମୁଖମଣ୍ଡଳରେ କୌଣସି ପ୍ରକାର ବିରକ୍ତିର ସଙ୍କେତ ପରିଲକ୍ଷିତ ହେଉଛି କି ନାହିଁ ଲକ୍ଷ୍ୟ କରିବ।" ରାମଚନ୍ଦ୍ରଙ୍କ ପରି ନରରୂପୀ ନାରାୟଣଙ୍କର ଏହିପ୍ରକାର ସନ୍ଦେହୋକ୍ତି ଏକାନ୍ତ ଅଶୋଭନୀୟ, ଅମାର୍ଜନୀୟ। ଜଗତରେ ନିରପରାଧ ଅନେକ ଥର ଦଣ୍ଡ ଭୋଗ କରିବାର ଦୃଷ୍ଟାନ୍ତ ରହିଛି; ଭରତଙ୍କ ପରି ଆଦର୍ଶ ଧାର୍ମିକ ପୁରୁଷଙ୍କ ପ୍ରତି ଏପରି ଦଣ୍ଡାଦେଶର ଦୃଷ୍ଟାନ୍ତ ବିରଳ।

ଭରତଙ୍କ ପ୍ରତି କୌଶଲ୍ୟାଙ୍କର କଟୁ ବାକ୍ୟଗୁଡ଼ିକ ବ୍ରଣରେ ସୂଚିବିଦ୍ଧ ହେଲା ପରି ବେଦନା ଭରତଙ୍କୁ ପ୍ରଦାନ କରିଥିଲା। ଦେବଚରିତରେ ଗଢ଼ି ଦେବତୁଲ୍ୟଚରିତ ବିଶ୍ୱର ସକଳ ସନ୍ଦେହଭାଜନ ହୋଇ ଲାଞ୍ଛିତ ହୋଇଥିଲେ। ସେ ରାମଚନ୍ଦ୍ରଙ୍କୁ ଫେରାଇ ଆଣିବାପାଇଁ ବିପୁଳ ବାହିନୀସମନ୍ୱିତ ଯେତେବେଳେ ଅଗ୍ରସର ହେଲେ ନିଷାଦ ଅଧିପତି ଗୁହକ ସେତେବେଳେ ଭରତ ରାମଚନ୍ଦ୍ରଙ୍କ ଅନିଷ୍ଟପାଇଁ ଧାବିତ ମନେକରି ଲଗୁଡ଼ ହସ୍ତରେ ଦଣ୍ଡାୟମାନ ହୋଇଥିଲା। ଏପରିକି ଭରଦ୍ୱାଜ ଋଷିପର୍ଯ୍ୟନ୍ତ ତାଙ୍କୁ ଭୟ ଚକ୍ଷୁରେ ଦେଖି ଜିଜ୍ଞାସା କରିଥିଲେ, "ଆପଣ ସେହି ନିଷ୍ପାପ ରାଜପୁତ୍ରଙ୍କ ପ୍ରତି କୌଣସି ପାପ ଅଭିପ୍ରାୟ ବହନ କରି ଯାତ୍ରା କରୁନାହାନ୍ତି ତ !" ପ୍ରତ୍ୟେକଙ୍କ ନିକଟରେ କୈଫିୟତ ଦେଇ ଭରତଙ୍କ ପ୍ରାଣ କଣ୍ଠାଗତ।

ସର୍ବପ୍ରଥମେ କିନ୍ତୁ ଭରତଙ୍କ ଆଦର୍ଶ ଲୋକଲୋଚନକୁ ଆଣିବାପାଇଁ ଚେଷ୍ଟା କରିଛନ୍ତି କବିଗୁରୁ ରବୀନ୍ଦ୍ରନାଥ – ସେ ମାତୁଳ ଗୃହରେ ଦୁଃସ୍ୱପ୍ନ ଦେଖି ପ୍ରାତଃକାଳରେ ଶଯ୍ୟାତ୍ୟାଗ କରୁଛନ୍ତି। ରାଜନର୍ତ୍ତକୀଗଣ ତାଙ୍କ ପ୍ରମୋଦ ବିଧାନପାଇଁ ନୃତ୍ୟ କରିଛନ୍ତି। ବନ୍ଧୁମାନେ କୁଶଳ ପ୍ରଶ୍ନ କରୁଛନ୍ତି। ଭରତଙ୍କ ଚିତ୍ତ କିନ୍ତୁ ଭାରାକ୍ରାନ୍ତ; ମୁଖମଣ୍ଡଳ ଶ୍ରୀହୀନ। ଅଯୋଧ୍ୟାର ବିଷମ ବିପଦର ପୂର୍ବାଭାସ ଯେପରି

ତାଙ୍କର ମନ ଅଧିକାର କରିଛି । ସେ କୌଣସି ପ୍ରକାରେ ସ୍ୱସ୍ତି ଅନୁଭବ କରି ପାରୁନାହାନ୍ତି । ଏପରି ସମୟରେ ଅଯୋଧ୍ୟାରୁ ଦୂତ ଆସିଛି । ବ୍ୟଗ୍ର କଣ୍ଠରେ ଭରତ ଦୂତଙ୍କୁ ଅଯୋଧ୍ୟାର ପ୍ରତ୍ୟେକଙ୍କର କୁଶଳ ସମାଚାର ଜିଜ୍ଞାସା କରିଛନ୍ତି । ଦୂତଗଣ ଦ୍ୱୈର୍ଥ-ବ୍ୟଞ୍ଜକ ଉତ୍ତର ଦେଲେ 'କୁଶଳାସ୍ତେ ମହାବାହୋ ଯେଷା' କୁଶଳ-ମିଚ୍ଛସି' । କିନ୍ତୁ ଗତ ରାତ୍ରିର ଦୁଃସ୍ୱପ୍ନ ଓ ଦୂତମାନଙ୍କର ବ୍ୟଗ୍ରତା ତାଙ୍କ ନିକଟରେ ଏକ ସମସ୍ୟା ପରି ବୋଧ ହେଲା । ଏହି ଦୁଇ ଘଟଣାକୁ ସେ ଦୁଶ୍ଚିନ୍ତାର ସୂତ୍ରରେ ଗ୍ରନ୍ଥି ବିମର୍ଷ ହେଲେ ।

ବହୁ ଦେଶ, ନଦ, ନଦୀ ଓ କାନ୍ତାର ଅତିକ୍ରମ କରି ଭରତ ଦୂରରୁ ଅଯୋଧ୍ୟାର ଶ୍ୟାମଳ ତରୁରାଜି ଅବଲୋକନ କଲେ । ଆତଙ୍କିତ କଣ୍ଠରେ ସେ ସାରଥିଙ୍କୁ ପ୍ରଶ୍ନ କଲେ, "ଏ ତ ଅଯୋଧ୍ୟା ପରି ମନେ ହେଉନାହିଁ । ନଗରୀର ଚିରପ୍ରଚଳିତ ତୁମୁଳ ଶବ୍ଦ-ଝଙ୍କାର କାହିଁ ? ବେଦପାଠ-ନିରତ ବ୍ରାହ୍ମଣମାନଙ୍କର କଣ୍ଠଧ୍ୱନି, କାର୍ଯ୍ୟ-ସ୍ରୋତରେ ପ୍ରବାହିତ ନରନାରୀର ବିପୁଳ ଶବ୍ଦ ସମ୍ଭାର ଏକାନ୍ତଭାବେ ନିସ୍ତବ୍ଧ । ଯେଉଁ ପ୍ରମୋଦ ଉଦ୍ୟାନ ସମୂହରେ ନରନାରୀମାନେ ଏକତ୍ର ବିଚରଣ କରନ୍ତି ସେ କଣ ଆଜି ପରିତ୍ୟକ୍ତ ? ରାଜପଥ ଚନ୍ଦନ ଓ ଜଳ ସିଞ୍ଚନରେ ପବିତ୍ର ହୋଇ ନାହିଁ ! ରଥ, ଅଶ୍ୱ, ହସ୍ତୀ ରାଜପଥରେ ଦିଶୁ ନାହାଁନ୍ତି । ଅସଂଯତ କବାଟ ଓ ଶ୍ରୀହୀନ ରାଜପୁରୀ ବ୍ୟଙ୍ଗ କରୁଛି । ଏ ତ ଅଯୋଧ୍ୟା ନୁହେଁ, ବୋଧହୁଏ ଅଯୋଧ୍ୟାର ଅରଣ୍ୟାନୀ ।"

ପ୍ରକୃତରେ ଅଯୋଧ୍ୟାର ଶ୍ରୀ ଅନ୍ତର୍ହିତା । ପୂର୍ଣ୍ଣିମାର ଜ୍ୟୋତ୍ସ୍ନାଲୋକ ମଳିନ ପଡ଼ିଯାଇଛି । ତ୍ରିଲୋକବିଶ୍ରୁତ କୀର୍ତ୍ତି ମହାରାଜ ଦଶରଥ ପୁତ୍ରଶୋକରେ ପ୍ରାଣତ୍ୟାଗ କରିଛନ୍ତି । ଅଭିଷେକ ମଞ୍ଚକୁ ପାଦୋ-ତ୍ତୋଳନୋଦ୍ୟତ ଜ୍ୟେଷ୍ଠ ରାଜକୁମାର ବିଧିଅଭିଶାପରେ ଅଭିଶପ୍ତ

ହୋଇ ସନ୍ନ୍ୟାସୀ ବେଶରେ ବନବାସ କରୁଛନ୍ତି; ବଳୟ, କଙ୍କଣ, କେୟୂର, ସଖୀମାନଙ୍କୁ ବିତରଣ କରି ଅଯୋଧ୍ୟାର ରାଜବଧୂ ସନ୍ନ୍ୟାସିନୀ ବେଶରେ ସ୍ୱାମୀ-ସଙ୍ଗିନୀ ହୋଇଛନ୍ତି। କନିଷ୍ଠ ଲକ୍ଷ୍ମଣ ମଧ୍ୟ ଭ୍ରାତା ଓ ଭ୍ରାତୃଜାୟାର ପଦାଙ୍କ ଅନୁସରଣ କରିଛନ୍ତି। ଅଯୋଧ୍ୟା ନଗରୀର ଗୃହେ ଗୃହେ ଏହି ତିନି ଦେବତାଙ୍କ ଉଦ୍ଦେଶ୍ୟରେ କରୁଣ କ୍ରନ୍ଦନର ଉତ୍ସ ପ୍ରବାହିତ ହେଉଛି। ବିପଣୀ ବନ୍ଦ, ରାଜପଥ ପରିତ୍ୟକ୍ତ। ସୁମନ୍ତ ସତ୍ୟ ପ୍ରକାଶ କରି କହିଥିଲେ ଯେ ଅଯୋଧ୍ୟାନଗରୀ ପୁତ୍ରହୀନ କୌଶଲ୍ୟାଙ୍କ ଦଶା ପ୍ରାପ୍ତ ହୋଇଛି।

ସଦ୍ୟ ବିଧବା କୈକେୟୀ ଆନନ୍ଦରେ ଉତ୍‌ଫୁଲ୍ଲା ପତିଘାତିନୀ ପୁତ୍ରର ଭାବୀ ଅଭିଷେକ ବ୍ୟାପାରରେ ଆନନ୍ଦର ଚିତ୍ର ମନେ ମନେ ଆଙ୍କି ସୁଖୀ ହେଉଥିଲେ। ଭରତଙ୍କ ପ୍ରତ୍ୟାବର୍ତ୍ତନରେ ସେ ଅତ୍ୟନ୍ତ ହୃଷ୍ଟା ହୋଇଥିଲେ। ଭରତ ପିତାଙ୍କ ସମ୍ପର୍କରେ ଜିଜ୍ଞାସା କରିବାରୁ ସେ କହିଲେ—'ଯା ଗତି ସର୍ବ ଭୂତାନାଂ ତା ଗତିଂ ତେ ପିତା ଗତଃ।' "ସର୍ବ ଜୀବନର ଯେଉଁ ଗତି, ତୋ ପିତାଙ୍କର ସେଇ ଗତି ହୋଇଅଛି।" ଏହି ସମ୍ବାଦରେ ପରଶୁଛିନ୍ନ ବନ୍ୟ ବୃକ୍ଷ ପରି ଭରତ ଭୂଲୁଣ୍ଠିତ ହେଲେ।

'କ୍ୱ ନୁ ସଃ ପାଣିଃ ସ୍ପର୍ଶଂ ସ୍ୱର୍ଗସ୍ଥାତସ୍ୟାକ୍ଲିଷ୍ଟକର୍ମଣଃ।' "ଅକ୍ଲିଷ୍ଟକର୍ମା ପିତୃହସ୍ତର ସୁଖସ୍ପର୍ଶ କେଉଁଠୁ ପାଇବି ?" ବୋଲି କହି ଭରତ କ୍ରନ୍ଦନ କଲେ। ରାଜହୀନ ରାଜପ୍ରାସାଦ ତାଙ୍କୁ ଚନ୍ଦ୍ରହୀନ ଆକାଶ ପରି ପ୍ରତୀୟମାନ ହେଲା। ସେ କୈକେୟୀଙ୍କୁ କହିଲେ, "ରାମ କାହାନ୍ତି ? ପିତାଙ୍କ ଅବର୍ତ୍ତମାନରେ ସେ ବର୍ତ୍ତମାନ ମୋର ପିତା, ବନ୍ଧୁ; ମୁଁ ତାଙ୍କର ଦାସ। ସେହି ରାମଚନ୍ଦ୍ରଙ୍କୁ ଦେଖିବା ପାଇଁ ମୋ ପ୍ରାଣ ଆକୁଳ।" ରାମ, ଲକ୍ଷ୍ମଣ, ସୀତା ନିର୍ବାସିତ ହୋଇଛନ୍ତି ଶୁଣି ଭରତ କ୍ଷଣକାଳ ସ୍ତମ୍ଭୀଭୂତ ହୋଇଗଲେ। ପରିଶେଷରେ ଭରତଙ୍କ

ଉନ୍ନତି ଓ ରାଜ୍ୟଶ୍ରୀ କାମନାରେ ଯେ ସକଳ କାର୍ଯ୍ୟ କରିଛନ୍ତି, ତାହା ବର୍ଣ୍ଣନା କରି ପୁତ୍ରର ପ୍ରୀତି ଉତ୍ପାଦନ ପ୍ରତ୍ୟାଶାରେ କୈକେୟୀ ତାଙ୍କର ମୁଖମଣ୍ଡଳ ନିରୀକ୍ଷଣ କଲେ ।

ନିବିଡ଼ ମେଘମଣ୍ଡଳ ଆକାଶକୁ ଯେପରି ଆଚ୍ଛନ୍ନ କରେ ଧର୍ମପ୍ରାଣ ବିଶ୍ୱସ୍ତ ଭ୍ରାତା ଏହି ଦୁଃସହ ସମ୍ବାଦର ମର୍ମ କ୍ଷଣକାଳ ଗ୍ରହଣ କରିବାକୁ ସମର୍ଥ ହେଲେ ନାହିଁ । ସେ ମାତାଙ୍କୁ ଯେପରି ଭର୍ତ୍ସନା କଲେ, ତାହା ମାତୃହୃଦୟରେ ଚରମ ଦୁର୍ଗତିର ଝଡ଼ ସୃଷ୍ଟି କରିଥିଲା । "ତୁମେ ଧାର୍ମିକପ୍ରବର ଅଶ୍ୱପତିଙ୍କର କନ୍ୟା ନୁହଁ । ସେ ବଂଶରେ ଜାତ ଏକ ରାକ୍ଷସୀ । ତୁମେ ମୋର ଧର୍ମବତ୍ସଳ ପିତାଙ୍କର ବିନାଶର ହେତୁ । ଦେବସମ ଭ୍ରାତାଦ୍ୱୟଙ୍କୁ ମୋର ପଥର ଭିକାରୀ କରିଛ । ତୁମର ନରକ ବାସ ହେଉ ।"

କାତର କଣ୍ଠରେ ଭରତ ଏହିପରି କହୁଥିଲାବେଳେ ଅପର ପ୍ରକୋଷ୍ଠରୁ ତାଙ୍କ କଣ୍ଠସ୍ୱର ଶୁଣି କୌଶଲ୍ୟା ସୁମିତ୍ରାଙ୍କୁ କହିଲେ, "ଭରତର କଣ୍ଠସ୍ୱର ଶୁଭୁଛି, ସେ ଆସିଲାଣି । ତାକୁ ମୋ ନିକଟକୁ ଡାକିଆଣ ।" କୃଶାଙ୍ଗୀ ସୁମିତ୍ରା ଭରତଙ୍କୁ ଡାକି ଆଣନ୍ତେ କୌଶଲ୍ୟା କହିଲେ, "ତମ ମାତା ତମ ସହିତ ନିଷ୍କଣ୍ଟକ ରାଜ୍ୟ ଭୋଗ କରନ୍ତୁ । ତମେ ମତେ ରାମଙ୍କ ନିକଟକୁ ପଠାଇଦିଅ ।" ଏହି କଟୂକ୍ତିରେ ମର୍ମାହତ ଭରତ କୌଶଲ୍ୟାଙ୍କ ନିକଟରେ ଅନେକ ଶପଥ କଲେ । ସେ ଏହି ବ୍ୟାପାରରେ କୌଣସି ପ୍ରକାରେ ସମ୍ପୃକ୍ତ ନୁହନ୍ତି, ଏହି ଅଶୋଭନୀୟ କାର୍ଯ୍ୟ ତାଙ୍କର ଅଜ୍ଞାତରେ ଘଟିଛି—ଏହି କଥା କୌଶଲ୍ୟାଙ୍କର ହୃଦ୍‌ବୋଧ କରିବାର ଚେଷ୍ଟାକରି ନିଦାରୁଣ ଶୋକ ଓ ଲଜ୍ଜାରେ ଅଭିଭୂତ ଭରତ ନିଜ ଅଜସ୍ର ଅଶ୍ରୁସମ୍ପାତ ବୃଷ୍ଟି କରିବାକୁ ଲାଗିଲେ । କହୁ କହୁ ଶୋକରେ ମୂହ୍ୟମାନ ହୋଇ ଭରତ ଅଜ୍ଞାନ ହୋଇପଡ଼ିଲେ । କରୁଣାମୟୀ ଅମ୍ବା କୌଶଲ୍ୟା

ଧର୍ମଷିରୁ କୁମାର-ମନର ଅବସ୍ଥା ବୁଝିପାରିଲେ । ତାଙ୍କୁ କୋଳରେ ବସାଇ କ୍ରନ୍ଦନ କଲେ । ଭରତଙ୍କ ଶୋକ ଓ ଔଦାସୀନ୍ୟ କ୍ରମେ ବଢ଼ିବାକୁ ଲାଗିଲା । ଶ୍ମଶାନ ଘାଟରେ ମୃତ ପିତାଙ୍କର ଶବ ଆଲିଙ୍ଗନ କରି ସେ କାନ୍ଦି କାନ୍ଦି କହିଲେ, "ପିତଃ, ଆପଣ ପ୍ରିୟପୁତ୍ର-ଦ୍ୱୟଙ୍କୁ ଅରଣ୍ୟାନୀ ପ୍ରେରଣ କରି ନିଜେ କେଉଁଆଡ଼େ ଚାଲିଗଲେ ?" ଅଶ୍ରୁପୂର୍ଣ୍ଣ କାତରଦୃଷ୍ଟି ରାଜକୁମାରଙ୍କୁ ତାଡନା କରି ବ୍ରହ୍ମର୍ଷି ବଶିଷ୍ଠ ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନପାଇଁ ନିର୍ଦ୍ଦେଶ ଦେଲେ । ପୁନଶ୍ଚ ଶୋକବିହ୍ୱଳ ହୋଇ ଭରତ ଚେତାଶୂନ୍ୟ ହୋଇପଡ଼ିଲେ ।

ପ୍ରତ୍ୟୁଷରେ ବନ୍ଦୀଗଣ ଭରତଙ୍କର ଜୟଗାନ ଆରମ୍ଭ କଲେ । ପାଗଳଙ୍କ ପରି ତାଙ୍କ ନିକଟକୁ ଯାଇ ସେ ନିଷେଧ ଆଦେଶ ଦେଇ କହିଲେ, "ଇକ୍ଷ୍ୱାକୁ ବଂଶର ପ୍ରଥାନୁଯାୟୀ ସିଂହାସନ ଜ୍ୟେଷ୍ଠ ରାଜ-କୁମାରଙ୍କର ପ୍ରାପ୍ୟ । ତୁମେ କାହାର ବନ୍ଦନା ଗୀତ ଗାଉଛ ?" ରାଜମୃତ୍ୟୁର ଚତୁର୍ଦ୍ଦଶ ଦିବସରେ ପ୍ରମୁଖ ସଚିବବୃନ୍ଦ ଭରତଙ୍କୁ ରାଜ୍ୟଭାର ଗ୍ରହଣ ନିମିତ୍ତ ଅନୁରୋଧ କଲେ । ଭରତ କହିଲେ, "ରାମଚନ୍ଦ୍ର ରାଜା ହେଲେ ଅଯୋଧ୍ୟାର ସମସ୍ତ ପ୍ରଜାମଣ୍ଡଳୀଙ୍କ ସହିତ ମୁଁ ତାଙ୍କ ଚରଣ ବନ୍ଦନା କରି ଫେରାଇ ଆଣିବି । ନଚେତ୍ ଚତୁର୍ଦ୍ଦଶ ବର୍ଷ ପାଇଁ ମୁଁ ମଧ୍ୟ ବନବାସୀ ହେବି ।"

ଶତ୍ରୁଘ୍ନ ମନ୍ଥରାକୁ ମାରିବାକୁ ଗଲେ ଏବଂ କୈକେୟୀଙ୍କୁ ବର୍ଜନ କରି ଅନୁସରଣ କରିବାକୁ ଉଦ୍ୟତ ହେଲେ । କ୍ଷମାର ଅ[illegible]ାର ଭରତ ତାଙ୍କୁ ନିଷେଧ କରି କହିଲେ, "ଦୋଷୀମାନଙ୍କୁ [illegible]ଦିଅ । ଅନୁତାପରେ ସେମାନେ ନିଜର ତ୍ରୁଟି ସଂଶୋଧନ କରି[illegible] ।"

ଅଯୋଧ୍ୟାବାସୀ ରାମଚନ୍ଦ୍ରଙ୍କୁ ଫେରାଇ ଆଣିବାକୁ ଛୁଟି ଚାଲିଲେ । ଶୃଙ୍ଗବେର ପୁରରେ ଗୁହକ ସହିତ ଭରତଙ୍କର ସାକ୍ଷାତ ହେଲା । ତାଙ୍କପ୍ରତି ପ୍ରଥମେ ଗୁହକ ସନ୍ଦେହ ପ୍ରକାଶ କରିଥିଲେ,

କିନ୍ତୁ ଭରତଙ୍କ ମୁଖଶ୍ରୀରୁ ମନଗଢ଼ନର ଭଷା ଓ ସ୍ୱଚ୍ଛତା ଦେଖି ସେ ନିଜର ଭ୍ରମ ସଂଶୋଧନ କଲେ । ଇଙ୍ଗୁଦୀ ମୂଳେ ତୃଣଶଯ୍ୟାରେ ରାମ ସାମାନ୍ୟ ଜଳପାନାନ୍ତେ ରାତ୍ରିଯାପନ କରୁଥିଲେ । ସେହି ତୃଣଶଯ୍ୟା ତାଙ୍କ ବିଶାଳ ବାହୁ ପୀଡ଼ନରେ ନିଷ୍ପେଷିତ ହେଉଥିଲା । ସୀତାଙ୍କ ଉତ୍ତରୀୟରୁ ପ୍ରକ୍ଷିପ୍ତ ସ୍ୱର୍ଣ୍ଣବିନ୍ଦୁ ତୃଣ ଉପରେ ଦୃଷ୍ଟ । ଏହି ଦୃଶ୍ୟ ଦେଖି ଦେଖି ଭରତ ମୌନ ହୋଇ ଦଣ୍ଡାୟମାନ ରହିଲେ । ଗୁହକ କଥା କହୁଛନ୍ତି । ଭରତ ଶୁଣିପାରୁ ନାହାନ୍ତି । ଭରତଙ୍କୁ ସଂଜ୍ଞାଶୂନ୍ୟ ଦେଖି ଶତ୍ରୁଘ୍ନ ତାଙ୍କୁ ଆଲିଙ୍ଗନ କରି କ୍ରନ୍ଦନ କଲେ । ରାଣୀଗଣ ଓ ସଚୀବବୃନ୍ଦ ଶୋକଉଚ୍ଛ୍ୱସିତ ହୋଇଉଠିଲେ । ବହୁ ସମୟ ପରେ ଭରତ ଜ୍ଞାନ ଲଭକରି ସାଶ୍ରୁଲୋଚନରେ କହିଲେ, "ଏହି କିଣ ତାଙ୍କ ଶଯ୍ୟା ! ଯେ ଚିରଦିନ ଗଗନଚୁମ୍ବୀ ରାଜ-ପ୍ରାସାଦରେ ବାସ କରିବାରେ ଅଭ୍ୟସ୍ତ, ଯାହାର ଗୃହ ପୁଷ୍ପମାଲ୍ୟଚନ୍ଦନ-ଚନ୍ଦନରେ ଚିରକୁଳୁଞ୍ଜିତ, ଯାହାର ଗୃହଶିଖର ନୃତ୍ୟଶୀଳ ଶୁକ, ମୟୁରର ବିହାର ଭୂମି ଓ ଗୀତ ବାଦ୍ୟ ଶବ୍ଦରେ ଚିର ମୁଖରିତ ଓ ଯାହାର କାଞ୍ଚନ ଭିତ୍ତିସମୂହ କାରୁକାର୍ଯ୍ୟର ଆଦର୍ଶ, ସେଇ ଗୃହପତି ଧୂଳିଲୁଣ୍ଠିତ ହୋଇ ଇଙ୍ଗୁଦୀ ମୂଳରେ ପଡ଼ିଛନ୍ତି ! ଏକଥା ସ୍ୱପ୍ନପରି ବୋଧ ହେଉଚି । ଏହା ଅବିଶ୍ୱାସ କରି ମୁଁ କେଉଁ ମୁହଁରେ ରାଜପରିଚ୍ଛଦ ପରିଧାନ କରିବି ? ଭୋଗବିଳାସ ପଦାର୍ଥରେ ମୋ: ଉ କାର୍ଯ୍ୟ ନାହିଁ । ଅଦ୍ୟାବଧି ମୁଁ ଜଟାବଲ୍କଳ ପରିଧାନ କରି ରେ ଶୟନ କରି ଓ ଫଳମୂଳାହାରରେ ଜୀବନ ଯାପନ କ ।"

ଏଥର ଜଟା ବଳ୍କଳପରିହିତ ଶୋକବିମୂଢ଼ ରାଜକୁମାର ଭରଦ୍ୱାଜ ମୁନିଙ୍କ ଆଶ୍ରମରେ ରାମଚନ୍ଦ୍ରଙ୍କ ଅନୁସନ୍ଧାନ କଲେ । ଏହି ସର୍ବଜ୍ଞ ଋଷି ମଧ୍ୟ ପ୍ରଥମତଃ ସନ୍ଦେହ କରି ଭରତଙ୍କୁ ମନଃପୀଡ଼ା

ପ୍ରଦାନ କରିଥିଲେ । ଏକ ରାତ୍ରି ଭରଦ୍ୱାଜଙ୍କ ଆଶ୍ରମରେ ଆତିଥ୍ୟ ଗ୍ରହଣ କରି ମୁନିଙ୍କ ନିର୍ଦ୍ଦେଶାନୁଯାୟୀ ରାଜକୁମାର ଚିତ୍ରକୂଟ ଅଭି-ମୁଖରେ ଯାତ୍ରା କଲେ । ଭରଦ୍ୱାଜ ଭରତଙ୍କ ଶିବିରରେ ପ୍ରବେଶ କରି ରାଣୀମାନଙ୍କ ସହିତ ପରିଚିତ ହେବାକୁ ଇଚ୍ଛା କଲେ । ଭରତ ମାତାମାନଙ୍କର ଏହିପରି ପରିଚୟ ଦେଲେ—ଶୋକ, ଅନଶନରେ କ୍ଷୀଣଦେହ ଦେଖାଯାନ୍ତି ସୌମ୍ୟମୂର୍ତ୍ତି ଏଇ ମୋର ଅଗ୍ରଜ ରାମଚନ୍ଦ୍ରଙ୍କ ମାତା । ତାଙ୍କ ବାମ ବାହୁ ଆଶ୍ରୟ କରି ବିମନା ଅବସ୍ଥାରେ ଯେ ଦଣ୍ଡାୟମାନା, ବନାନ୍ତରରେ ଶୁଷ୍କପୁଷ୍ପ କର୍ଣ୍ଣିକାର ତରୁ ନ୍ୟାୟ କ୍ଷୀଣାଙ୍ଗ, ଏଇ ଲକ୍ଷ୍ମଣ ଶତ୍ରୁଘ୍ନଙ୍କ ଜନନୀ ସୁମିତ୍ରା । ଆଉ ତାଙ୍କ ପାର୍ଶ୍ୱରେ ଯେ ଉପସ୍ଥିତ ସେ ଅଯୋଧ୍ୟାର ରାଜଲକ୍ଷ୍ମୀଙ୍କୁ ବିଦାୟକରି ଆସିଛନ୍ତି, ସେ ପତିଘାତିନୀ ଓ ସମସ୍ତ ଅନର୍ଥର ମୂଳ । ସେହି ବୃଥା ପ୍ରତିଜ୍ଞାମାନିନୀ ଓ ରାଜ୍ୟକାମୁକା ଏହି ଦୁର୍ଭାଗାର ମାତା । ଏହିପରି ମାତାମାନଙ୍କର ବର୍ଣ୍ଣନା କରି ଭରତଙ୍କ ଚକ୍ଷୁଦ୍ୱୟ ଅଶ୍ରୁ-ପୂର୍ଣ୍ଣ ହୋଇଆସିଲା ଏବଂ କ୍ରୁଦ୍ଧ ସର୍ପ ପରି ସେ ଥରେ ଲୋତକପୂର୍ଣ୍ଣ ଚକ୍ଷୁରେ ମାତା କୈକେୟୀଙ୍କ ପ୍ରତି ଦୃଷ୍ଟିପାତ କଲେ ।

ଚିତ୍ରକୂଟରେ ପହଞ୍ଚି ଭରତ, ଜନନୀବୃନ୍ଦ ଓ ସଚିବ-ସମୂହ ପରିବୃତ ହୋଇ ରଥ ତ୍ୟାଗକରି ପଦବ୍ରଜରେ ଅଗ୍ରସର ହେଲେ । ଅନଶନ ଓ ଶୋକର ଜୀବନ୍ତ ମୂର୍ତ୍ତି ଦେବୋପମ ଭରତ ରାମଙ୍କୁ ତୃଣ ଆସନରେ ଉପବିଷ୍ଟ ଦେଖି ବାଳକ ପରି ଉଚ୍ଚକଣ୍ଠରେ କ୍ରନ୍ଦନ କଲେ, "ହେମଛତ୍ର ଯାହାର ମସ୍ତକୋପରି ଶୋଭା ପାଉଥାନ୍ତା ତାଙ୍କ ରାଜଶ୍ରୀଉଜ୍ଜ୍ୱଳ ଶିରୋଦେଶରେ ଆଜି ଜଟା-ଭାର କାହିଁକି ? ଅଗ୍ରଜଙ୍କ ଯେଉଁ ଦେହ ଚନ୍ଦନ ଓ ଅଗୁରୁଦ୍ୱାରା ମାର୍ଜିତ ହୁଏ, ଆଜି ସେଇ ଅଙ୍ଗରାଜି ବିରହିତକାନ୍ତି ଧୂଳିଧୂସର । ଯେ ସମସ୍ତ ବିଶ୍ୱର ପ୍ରକୃତିପୁଞ୍ଜର ଆରାଧନାର ବସ୍ତୁ, ସେ ବନେ ବନେ ଭିକ୍ଷୁକର ପରି-

ଛନ୍ଦରେ ଗମନାଗମନ କରୁଛନ୍ତି । ମୋ ନିମିତ୍ତ ଆପଣ ଏହି ସକଳ କଷ୍ଟ ବହନ କରିଛନ୍ତି । ମୋର ଏହି ଲୋକଗର୍ହିତ ନୃଶଂସ ଜୀବନ ଧିକ୍''—କହି ଭରତ ରାମଚନ୍ଦ୍ରଙ୍କ ଚରଣ-ପଙ୍କଜରେ ନିପତିତ ହେଲେ । ଏହି ଦୁଇ ତ୍ୟାଗୀ ମହାପୁରୁଷଙ୍କ ମିଳନ-ଦୃଶ୍ୟ ବଡ଼ କରୁଣ । ଭରତଙ୍କ ମୁଖ ଦୁଃଖାଚ୍ଛନ୍ନ ।

ଭରତ ପୁନରାୟ ଜ୍ୟେଷ୍ଠଭ୍ରାତାଙ୍କର କର ଧରିବାପାଇଁ ଭୂତଳ-ସ୍ପର୍ଶୀ ହୋଇ କହିଲେ, ''ମୋ ଜନ୍ମଦାୟିନୀର ନରକ ପତନ ଅବଶ୍ୟମ୍ଭାବୀ; ଆପଣ ତାଙ୍କୁ କ୍ଷମା କରନ୍ତୁ । ମୁଁ ଆପଣଙ୍କର ଭାଇ, ଶିଷ୍ୟ, ଦାସାନୁଦାସ, ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ଏବଂ ଅଯୋଧାକୁ ପ୍ରତ୍ୟାବର୍ତ୍ତନ କରନ୍ତୁ; ନଚେତ୍ ମୁଁ ଚତୁର୍ଦ୍ଦଶ ବର୍ଷ ବନବାସୀ ହେବି, ଏ ପ୍ରତିଶ୍ରୁତି ପାଳନ ମୋର କର୍ତ୍ତବ୍ୟ ।'' କୌଣସି ପ୍ରକାର ରାମଚନ୍ଦ୍ରଙ୍କୁ ଫେରାଇ ଆଣି ନ ପାରି, ଭରତ ଅନଶନ ବ୍ରତ ପାଳନ କରି କୁଟୀରର ଦ୍ୱାରଦେଶରେ ଭୂଲୁଣ୍ଠିତ ହେଲେ । ରାମଚନ୍ଦ୍ର ଏହି ଅବସ୍ଥାରେ ଅନୁଜଙ୍କୁ ସାଦରେ ଉଠାଇ ସ୍ୱ-ପାଦୁକା ପ୍ରଦାନ କଲେ । ଜଟାଜୁଟ ଶୋଭାନ୍ୱିତ କରି, ଭ୍ରାତୃ ପଦରଜରେ ବିଭୂଷିତ ପାଦୁକା ତାଙ୍କର ରାଜମୁକୁଟ ସ୍ଥାନୀୟ ହେଲା । ସହସ୍ର ଭୂଷଣ ଯେଉଁ ଶୋଭା ପ୍ରଦାନରେ ଅସମର୍ଥ, ଏହି ପାଦୁକା ଭରତଙ୍କୁ ସେହି ଅପୂର୍ବ ରାଜଶ୍ରୀ ପ୍ରଦାନ କଲା । ବିଦାୟକାଳରେ ଭରତ କହିଲେ, ''ରାଜ୍ୟଭାର ଏହି ପାଦୁକା ନିକଟରେ ନିବେଦନ କରି ଚତୁର୍ଦ୍ଦଶ ବର୍ଷ ଆପଣଙ୍କ ପ୍ରତୀକ୍ଷାରେ ରହିବି । ସେହି ସମୟାନ୍ତେ ଆପଣ ନ ଫେରିଲେ, ମୁଁ ଅଗ୍ନିରେ ଜୀବନ ବିସର୍ଜନ କରିବି ।'' ଅଯୋଧା-ସନ୍ନିକଟ ହୋଇ ଭରତ କହିଲେ, ଅଯୋଧା ଆଉ ଅଯୋଧା-ହୋଇ ନାହିଁ । ମୁଁ ସିଂହାସନ-ଗୁହାରେ ପ୍ରବେଶ କରିପାରିବି ନାହିଁ ।'' ତେଣୁ ନନ୍ଦୀଗ୍ରାମରେ ରାଜଧାନୀ ପ୍ରତିଷ୍ଠା ହେଲା; କିନ୍ତୁ ତାହା

ରାଜଧାନୀ ନୁହେଁ--ଋଷିଆଶ୍ରମ । ସଚିବବୃନ୍ଦ ଜଟା ବଲ୍‌କଲ ପରିହିତ ଫଳମୂଳାହାରୀ ରାଜାଙ୍କ ପାର୍ଶ୍ୱ ଦେଶରେ କେଉଁ ବଳରେ ମହାର୍ଘ ପରିଚ୍ଛେଦ ବ୍ୟବହାର କରିବେ ? ସୁତରାଂ ସମସ୍ତେ କଷାୟ ବସ୍ତ୍ରପରିଧାନ ଆରମ୍ଭ କଲେ । ସେହି କଷାୟ ବସ୍ତ୍ର ପରିହିତ ସଚିବବୃନ୍ଦ ପରିବୃତ୍ତ ଅନଶନ ବ୍ରତରେ କୃଶାଙ୍ଗ, ତ୍ୟାଗୀ ରାଜକୁମାର ପାଦୁକା ଉପରେ ରାଜଛତ୍ର ଧାରଣ କରି ଚତୁର୍ଦ୍ଦଶ ବର୍ଷ ରାଜ୍ୟ ପାଳନ କରିଥିଲେ ।

ରାମଚନ୍ଦ୍ର ଗୃହକୁ ପ୍ରତ୍ୟାଗତ ହେବାରୁ ଭରତ ସ୍ୱୟଂ ତାଙ୍କର ପଦଯୁଗଳରେ ପାଦୁକା ପିନ୍ଧାଇ କୃତାର୍ଥ ହେଲେ ଏବଂ ରାମ ପଦତଳେ ପ୍ରଣାମ କରି କହିଲେ, "ଦେବ, ଆପଣ ଏହି ଅଯୋଗ୍ୟ ହସ୍ତରେ ଯେଉଁ ରାଜ୍ୟଭାର ନ୍ୟସ୍ତକରି ଯାଇଥିଲେ, ତାହା ଗ୍ରହଣ କରନ୍ତୁ । ଚତୁର୍ଦ୍ଦଶ ବର୍ଷ ମଧ୍ୟରେ ରାଜକୋଷରେ ସଞ୍ଚିତ ଅର୍ଥ ଦଶ ଗୁଣ ବୃଦ୍ଧି ପାଇଛି ।"

ରାମାୟଣରେ ଯଦି କୌଣସି ଚରିତ୍ରକୁ ପୂର୍ଣ୍ଣ ଆଦର୍ଶ ରୂପେ ଗ୍ରହଣ କରାଯାଏ, ତାହା ହେଉଛି ଏକମାତ୍ର ଭରତ ଚରିତ୍ର । ସୀତା ଲକ୍ଷ୍ମଣ ପ୍ରତି ଯେଉଁ କଟୂକ୍ତି ପ୍ରୟୋଗ କରିଥିଲେ, ତାହା କ୍ଷମାର୍ହ ନୁହେଁ । ରାମଚନ୍ଦ୍ରଙ୍କର ବାଳିବଧ ଇତ୍ୟାଦି ଅନେକ କାର୍ଯ୍ୟ ସମର୍ଥନ କରାଯାଇ ନ ପାରେ । ଲକ୍ଷ୍ମଣ ଅନେକ ସମୟରେ ଅତି ରୁକ୍ଷ ଓ ଦୁର୍ବିନୀତ ହୋଇଛନ୍ତି । କୌଶଲ୍ୟା ଦଶରଥଙ୍କୁ କହିଛନ୍ତି, "କୌଣସି ଜଳଜନ୍ତୁ ଯେପରି ସ୍ୱୀୟ ସନ୍ତାନ ଭକ୍ଷଣ କରେ ତମେ ସେପରି କରିଛ ପ୍ରିୟତମ ।" କିନ୍ତୁ ଭରତ ଚରିତ୍ରରେ କୌଣସି ତ୍ରୁଟି ନାହିଁ । ପାଦୁକାର ଊର୍ଦ୍ଧ୍ୱ ଦେଶରେ ହେମଛତ୍ରଧର ଜଟା-ବଲ୍‌କଲଧାରୀ ଏହି ରାଜର୍ଷିର ଚରିତ୍ର ରାମାୟଣକୁ ଅଦ୍ୱିତୀୟ ସୌନ୍ଦର୍ଯ୍ୟପାତ କରିଛି । ଏପରି ସୁପୁତ୍ର ଯୋଗୁଁ ହିଁ ଗର୍ଭଧାରିଣୀ କୈକେୟୀଙ୍କୁ ଆମେ ସମସ୍ତ କ୍ଷମାର୍ହ ବୋଲି ମନେକରୁ ।

# ଦୁଇ ସଙ୍ଗାତ

## ✓ ଗୋପାଳଚନ୍ଦ୍ର ପ୍ରହରାଜ

ଏକ ଦେଶରେ ରଜାପୁଅ ମନ୍ତ୍ରିପୁଅ ଦ'ସଙ୍ଗାତ ଥାଆନ୍ତି । ଦ'ସଙ୍ଗାତ ଦିନେ ବିଚାରିଲେ ବିଦେଶ ଯିବା । ଘୋଡ଼ାଶାଳରୁ ଗୋଟିଏ ଗୋଟିଏ ପକ୍ଷିରାଜ ଘୋଡ଼ା ବାଛି ପାଗ ପଟୁକା ଗୁଡ଼ିର ହତିଆର ବାନ୍ଧି ବାହାରିଲେ । ଯାଉଁ ଯାଉଁ ବାଟରେ ଗୋଟାଏ ଘୋର ବଣ ପଡ଼ିଲା । ରଜାପୁଅକୁ ଶୋଷ କଲା, ଶୋଷରେ ଟୋଟି ଶୁଖିଯାଉଥାଏ; ଏକେ ସୁକୁମାର ଜୀବନ, ତା ଉପରେ ଉଦୁଉଦିଆ ଖରା; ରଜାପୁଅର ଆଉ ଖୋଜେ ଆଗକୁ ଯିବାକୁ ସାମର୍ଥ୍ୟ ନାହିଁ । ପାଖରେ ଆଖରେ କେଉଁଠି ପାଣି ନାହିଁ । ମନ୍ତ୍ରିପୁଅ ଗୋଟାଏ ଡେଙ୍ଗା ଗଛ ଉପରେ ଚଢ଼ି ଚାରିଆଡ଼କୁ ଅନେଷା କଲା । ଦେଖିଲା, ବହୁତ ଦୂରରେ ଜଳ ବଗ ଉଡ଼ୁଛନ୍ତି । ଦିଗ ବାରି ବାରି ପକ୍ଷିରାଜ ଘୋଡ଼ାରେ ଚଢ଼ିଲା; ରଜାପୁଅକୁ କହିଗଲା, 'ତମେ ଥାଅ, ମୁଁ ଏହିକ୍ଷଣି ପାଣି ଆଣିଦେବି ।' ଚାହୁଁ ଚାହୁଁ ମୁହୂର୍ତ୍ତିକେ ଘୋଡ଼ା ଯାଇଁ ଗୋଟିଏ ପୋଖରୀ କୂଳରେ ପହଞ୍ଚିଲା । ଉତ୍ତମ ସୁନ୍ଦର ପୋଖରୀଟିଏ, ପୋଖରୀରେ ଗୋଟିଏ ତୁଠ, ଶଙ୍ଖମଲମଲ ପାହାଚ, ସେଠେଇଁ ଜନପ୍ରାଣୀର ଚିହ୍ନ ନାହିଁ । ମନ୍ତ୍ରିପୁଅ ପୋଖରୀରୁ ପେଟେ ପାଣି ପିଇଲା, ପାଣି ଦୁଧ ପରି ସୁଆଦ ଲାଗିଲା । ପୋଖରୀ ପାହାଚ ଉପରେ ଗୋଟିଏ ଦିବ୍ୟ ସୁନ୍ଦର ସ୍ତ୍ରୀ-ରୂପଟିଏ ପଥରରେ ଲେଖା ହୋଇଛି । ମନ୍ତ୍ରିପୁଅ ମନେ ମନେ ବିଚାରିଲା,କାଲେ ସଙ୍ଗାତ କହିବେ ଏ ସୁଆଦିଆ ପାଣି ଯେଉଁ ପୋଖରୀରୁ ଆଣିଲ, ସେ ପୋଖରୀ ମୁଁ

ଦେଖିବ । ଶୁଆ କହ୍ନି ଯେବେ ଏ ପୋଖରୀ କୂଳକୁ ଆସନ୍ତି, ଏରୂପକୁ ଦେଖି କାଳେ କହିବେ ଯେ, ଏ ସ୍ତିରୀକୁ ମୁଁ ବଭା ହେଲେ ଯିବ । ତା'ହେଲେ ବଡ଼ ବ୍ୟସ୍ତ କଥା । ହେବ ଶୁଆ ବଚନର ସେ ପଥର ରୂପଟରେ ଆଚ୍ଛାକର ମେଞ୍ଚାଏ ପଙ୍କ ବୋଳିଦେଲା । ଯେଉଁ ପାଣି ମନ୍ଦାକ ନେଇଥିଲା, ସେଥିରେ ପଙ୍କ ଗୋଳି ରଜାପୁଅ ପାଖକୁ ନେଇଗଲା । ରାଜାପୁଅ ପାଣି ମନ୍ଦାକ ପିଇଲା, ଭାରି ସୁଆଦିଆ ଲାଗିଲା । ସଙ୍ଗାତକୁ କହିଲା, ଚାଲ ଏ ପୋଖରୀକୂଳକୁ ଯିବା । ସଙ୍ଗାତ କେତେ ବାହାନା ଫାନ୍ଦ ରାଜାପୁଅ କଥାକୁ ଭାଙ୍ଗିଲା, କିନ୍ତୁ ରାଜାପୁଅ ଏକା ଜିଦ୍ ଧରିଲା । ପଛକୁ ଦିହିଙ୍କି ଦିହେଁ ଘୋଡ଼ା ଚଢ଼ି ସେ ପୋଖରୀକୂଳକୁ ଗଲେ । ପୋଖରୀକୂଳ କଦମ୍ବଗଛମୂଳେ ଘୋଡ଼ା ଦିହିଙ୍କି ବାନ୍ଧିଲେ । ରାଜାପୁଅ ପୋଖରୀତୁଠରୁ ପେଟେ ପାଣି ପିଇଲା, ପିଇସାରି ପାହାଚ ଉପରକୁ ଚାହିଁଲାବେଳକୁ ମେଞ୍ଚାଏ କାଦୁଅ ପଡ଼ିଛି । ମନ୍ତ୍ରିପୁଅକୁ ପଚାରିଲା, 'ଏ କଣ ?' ମନ୍ତ୍ରିପୁଅ କହିଲା, 'ତୁଠରେ ମାଇପେ ଗାଧୋଇ ସାରି ଦୁତିଆଓଷା ପୂଜା କରିଛନ୍ତି ।' ରଜାପୁଅର ଏକା ଜିଗର, ଚାରି ଆଞ୍ଜୁଳା ପାଣି ଫୋପାଡ଼ି ଧୋଇଲାବେଳକୁ ଉତ୍ତମ ସୁନ୍ଦର ସ୍ତିରୀ ରୂପଟିଏ ଦିଶିଲା । ରାଜାପୁଅ ସେ ରୂପକୁ ଦେଖି କହିଲା, "ଏ ସ୍ତିରୀକୁ ଆଣି ମୋତେ ବଭାଦେଲେ ମୁଁ ଏଠୁଁ ଯିବ ।" ମନ୍ତ୍ରିପୁଅକୁ ବଡ଼ ଭାଲେଣି ପଡ଼ିଲା । ସନ୍ଧ୍ୟା ବୁଡ଼ିଲାରୁ ଦି' ଘୋଡ଼ାଙ୍କୁ ସେ କଦମ୍ବଗଛ-ମୂଳେ ବାନ୍ଧି ଦି'ସଙ୍ଗାତଯାକ ଗଛରେ ଚଢ଼ିଲେ । ନିର୍ଜନଥାନ, ନିଶା ଗରଜିଲାବେଳକୁ ସେ ପୋଖରୀରୁ ଏକ ଅହିରାଜ ସାପ ବାହାରିଲା । ମୁଣ୍ଡରେ ଗୋଟିଏ ମଣି ଜଳୁଛି, ଆଡ଼ ଦୀର୍ଘରେ କୋଶେ ବାଟ ଆଲୁଅ ହେଉଛି । ସାପ ସେ ମଣିଟିକି ପୋଖରୀତୁଠରେ ରଖିଦେଇ ଚରିବାକୁ ଗଲା । ରଜାପୁଅଟି ମନ୍ତ୍ରିପୁଅକୁ କହିଲା, 'ସଙ୍ଗାତ ! ମୁଁ ଯାଉଛି, ସେ ମଣିକି ଆଣିବ । ମଣିଟିକି ଧରିଲାଣି ସାପ ପେଟେ-

ବେଳେ ମୋତେ ଖାଇବାକୁ ଗୋଡ଼ାଇବ, ତୁମେ ସେତିକବେଳେ ଖଣ୍ଡାରେ ସେ ସାପକୁ ହାଣିଦେବ ।' ଅହିରାଜ ସାପ ଆସି ଆଗକରି ଘୋଡ଼ା ଦୁହିଁଙ୍କୁ ଗିଳିଲା । ଚରୁ ଚରୁ ଖଣ୍ଡେ ଦୂରକୁ ବାହାରିଗଲା । ରଜାପୁଅ ମନ୍ତ୍ରିପୁଅ ଦୁହେଁ ଗଛରୁ ଓହ୍ଲାଇଲେ । ରଜାପୁଅ ସେ ମଣିଟିକି ଆପଣା ପାଗ ଭିତରେ ଗୁଡ଼େଇଲାବେଳକୁ ସାପ କୁଆଡ଼େ ଥିଲା, ରଜାପୁଅ ଉପରକୁ ଚମକି ଆସିଲା । ସେତିକିବେଳକୁ ମନ୍ତ୍ରିପୁଅ ଖୋଳରୁ ଖଣ୍ଡା ବାହାରକରି ଠିକ୍ କରି ରଖିଥିଲା, ସାପ ବେକରେ ଚେଟେ ପକାଇଲା । ସାପ ମଲା । ରଜାପୁଅ ମନ୍ତ୍ରିପୁଅ ସେ ମଣିକି ଧରି ପାଣିରେ ପଶିଲେ । ଯଉଁ ପାଣିରେ ପଶୁଥାଆନ୍ତି, ପାଣି ଆଡ଼େଇ ହୋଇଯାଉଥାଏ । ପୋଖରୀ ଭିତରେ ଦେଖିଲାବେଳକୁ ଉତ୍ତମ ସୁନ୍ଦର ନଅର ହୋଇଛି, ପଦାରେ କେହି ନାହିଁ । ନଅର ଭିତରେ ଗୋଟିଏ ଦିବ୍ୟ ସୁନ୍ଦର ସ୍ତ୍ରୀ ପଲଙ୍କରେ ଶୋଇଛି । ସେ ଦି' ସଙ୍ଗାତଙ୍କୁ ଦେଖିଲାକ୍ଷଣି କହିଲା, 'ଆହା, କାହିଁକି ଅଇଲ ? ଏହିକ୍ଷଣି ନାଗରାଜା ଅଇଲେ ଗିଳି ପକେଇବ ।' ମନ୍ତ୍ରିପୁଅ ସବୁ କଥା କହିଲାରୁ ଆପଣା କଥାଯାକ ତାଙ୍କ ଆଗରେ କହିଲା । କହିଲା, 'ଏ ମୁଲକ ନାଗରାଜାଙ୍କର ମୁଲକ । ମୁଁ ନାଗରାଜା ଝିଅ । ନିତି ନାଗରାଜା ଯାହା ଆଣିଦିଏ, ମୁଁ ଖାଏଁ । ଆଉ ପଦାକୁ ବାହାରେ ନାହିଁ । ଏକା ଗାଧୋଇବାବେଳକୁ ମନପବନ ଡଙ୍ଗାରେ ପୋଖରୀ କୂଳକୁ ଯାଏ । ଗାଧୋଇସାଧୋଇ ସେହି ଡଙ୍ଗାରେ ନଅରକୁ ଫେରି-ଆସେ । ମୁଁ ସେ ରୂପକୁ ତୁଠ ପଥର ଉପରେ ଲେଖିଥିଲି । ସତ୍ୟ କରିଥିଲି, 'ଯେ ଏ ରୂପକୁ ଦେଖି ମୋ ପାଖକୁ ଆସିବ, ମୁଁ ତାକୁ ବାହାହେବି ।' ରଜାପୁଅ ମନ୍ତ୍ରିପୁଅକୁ କହିଲା, 'ସଙ୍ଗାତ ଏ ସ୍ତ୍ରୀଟିକୁ ଦୁହେଁଯାକ ପାଇଲେ, ଯାହାକୁ ଦୁହେଁଯାକ ବାହା ହେବା ।' ମନ୍ତ୍ରିପୁଅ ହରସ୍ତାପ ନାହିଁ କଲା । ରଜାପୁଅ ବାହା ହେବାର ଠିକ୍ ହେଲା ।

ମନ୍ତ୍ରିପୁଅ କହିଲା, 'ସଙ୍ଗାତ ତୁମେ ଏଠେଇଁ ଥାଅ । ମୁଁ ଆମ ମୁଲକକୁ ଯାଇ ତୁମ ବାପା ରଜାଙ୍କୁ ଜଣା କରି ଯାନ, ବାହାନ, ଚତୁରଙ୍ଗବଳ ସାଙ୍ଗରେ ଘେନ ଆସିବି, ବଭାଘର ହେବ ।' ମନ୍ତ୍ରିପୁଅ ହାତରେ ମଣିଟିକ ଧରଲା ପାଣିରେ ବାଟ ଫିଟିଲା । ଏଣୁ ଉପରକୁ ଆସି ଆପଣା ମୁଲକକୁ ଗଲା । ମନ୍ତ୍ରିପୁଅ ସଙ୍ଗରେ ମଣିଟି ଥାଏ ।

ଏଣେ ନିତ୍ତ ସେ କନ୍ୟାଟି ମନପବନ ଡଙ୍ଗାରେ ଚଢି ପୋଖରୀ ତୁଠକୁ ଆସେ, ଗାଧୋଇସାରି ଫେରେ ପୋଖରୀ ଭିତରକୁ ଯାଏ । ସେ ଦେଶର ରଜା ଆସିଥିଲେ ପାରଧିକି । ଦିନେ ସେ କନ୍ୟାକୁ ପୋଖରୀ ତୁଠରେ ଦେଖିଲେ । ପାଖକୁ ଗଲାବେଳକୁ କନ୍ୟା ମନପବନ ଡଙ୍ଗାରେ ଚଢି ପଳେଇଲା, ଇମିତି ନିତ୍ତ ଯାନ୍ତି, ନିତ୍ତ ସେ କନ୍ୟା ପଳାଏ । ରଜା ତାଙ୍କ ମୁଲକର ୧,୨୦୦ ବଢ଼େଇଙ୍କୁ ଡକାଇଲେ । କହିଲେ, 'ଯେବେ କାଲି ସକାଳକୁ ମନପବନ ଡଙ୍ଗା ତିଆରି କରି ଆଣିଦେବ, ତେବେ ତୁମ ମୁଣ୍ଡ ରହିବ, ନଇଲେ କାଲି ସକାଳୁ ସବଂଶ ମୁଣ୍ଡକାଟ ହେବ ।' ଗୋଟିଏ ବୁଢ଼ା ବଢ଼େଇ ଅତି ବ୍ୟସ୍ତ ହୋଇ ଗୋଟିଏ କଦମ୍ବଗଛ ମୂଳରେ ଶୋଇଲା । ରାତିଯାକ ନିଦ ମାଡ଼ିବାକୁ ନାହିଁ । ସେ ଗଛରେ ଫୂଲଶାଗୁଣାଟିଏ ବସା କରିଥାଏ । ରାତିରେ ବସାକୁ ଫେରି ଆସିଲାବେଳକୁ ଛୁଆଯାକ କେଁ କଟର ହେଲେ ଖାଇବେ ବୋଲି । ଫୂଲଶାଗୁଣା ପିଲାଙ୍କୁ ବୋଧଦେଇ କହିଲା, 'ଆଜ ଯାହା ଆଣିଛି ଖାଇ ଶୁଅ, କାଲିଠୁ ୧୨୦୦ ବଢ଼େଇ ସବଂଶେ ହାଣ ହେବେ, କାଲି ଯେତେ ଇଚ୍ଛା ମନବୋଧ କରି ଖାଇବ । ସତେ କଣ ବଢ଼େଇ ମନପବନ ଡଙ୍ଗା ତିଆରି କରିବେ ଯେ ହାଣରୁ ବର୍ତ୍ତିବେ ?' ଶାଗୁଣାଛୁଆ କଗର କରି କରି ମା'କୁ ପଚାରିଲେ, 'କେଉଁ ଗଛରେ ଭଲା ସେ ଡଙ୍ଗା ତିଆରି ହେବ ?' ମା କହିଲା, 'ଆମେ ଯେଉଁ ଗଛରେ ଅଛୁଁ ସେଇ ଗଛରେ ମନପବନ

ଡଙ୍ଗା ତିଆରି କରିଅନ୍ତା ।' ବୁଢ଼ା ବଢ଼େଇ ଏହା ଶୁଣି ଭାରି ଖୁସି ହେଲା । ଆଉ ବଢ଼େଇଯାକଙ୍କୁ ଉଠାଇଲା । ସକାଳେ ସେ ଗଛକୁ ହାଣି ମନପବନ ଡଙ୍ଗା ତିଆରିକରି ରାଜାଙ୍କୁ ଭେଟି ଦେଲେ । ରାଜା ସେ ଡଙ୍ଗାରେ ଚଢ଼ି କହିଲେ, 'ମନପବନ ଡଙ୍ଗା ରେ ! ସେ କନ୍ୟା ଯେଉଁଠି ଥିବ ମତେ ନବୁ ।' ମନପବନ ଡଙ୍ଗା ଗଲା-ବେଳକୁ କନ୍ୟା ପୋଖରୀକୂଳରେ ଗାଧୋଉଥିଲା । ରାଜା ସେ କନ୍ୟାକୁ ନେଇ ଆସିଲେ । ମନ୍ତ୍ରିପୁଅ ତ ଆଗରୁ ମଣି ନେଇଯାଇଛି ଫେରି ନାହିଁ । କନ୍ୟା ତ ମନପବନ ଡଙ୍ଗାରେ ବସି ଗାଧୋଇବାକୁ ଯାଇଛି । ସେ ରହିଲା ସେଇଆଡ଼େ । ରଜାପୁଅ ପୋଖରୀ ଭିତରେ ନଅରରେ ଏକୁଟିଆ ବସିଛି । ମଣି ଥିଲେ ସିନା ପଦାକୁ ଯାଆନ୍ତା ! ନଅରରେ ବଡ଼ ଭାବନାରେ ଥାଏ । ଦିନାକେତେ ଗଲାରୁ ମନ୍ତ୍ରିପୁଅ ଯାନବାହାନନେଇ ପୋଖରୀ କୂଳରେ ଆସି ପହଞ୍ଚିଲା । ପୋଖରୀ କୂଳରେ ମଣିଷଯାକ ରଖି ମଣିକି ଧରି ପାଣିରେ ପଶିଲା । ନଅର ଭିତରେ ଦେଖିଲାବେଳକୁ ରଜାପୁଅ ଏକୁଟିଆ ଅଛି, କନ୍ୟାଟି ନାହିଁ । କନ୍ୟାକୁ ଖୋଜିବାକୁ ଆସିଲା । ରଜାପୁଅକୁ କହିଲା, 'ସଙ୍ଗାତ ! ତୁମେ ଥାଅ, ମୁଁ କନ୍ୟାକୁ ନେଇଆସିବି, ତୁମେ ଭାବନା କରିବ ନାହିଁ । ମୁଁ ନିଶ୍ଚୟ ଫେରି ଆସିବି ।' ଏହା କହି ରଜାପୁଅକୁ ନଅରରେ ଛାଡ଼ି କନ୍ୟାର ଅନେଷାରେ ଗଲା । ପୋଖରୀ କୂଳରେ ଯେତେକ ମଣିଷ ଥିଲେ, ତାଙ୍କୁ ଆପଣା ମୂଲକକୁ ବିଦା କରି-ଦେଲା । ସବୁ ଦେଶରେ ବୁଝୁଥାଏ, କେଉଁ ରାଜା ନୂଆ ବାହା ହେଇଛି । ପଛକୁ ଏ କନ୍ୟାକୁ ଯେଉଁ ରଜା ନେଇଥିଲେ, ସେ ଦେଶରେ ଏକ ମାଲୁଣୀ ଘରେ ପହଞ୍ଚିଲା । ମାଲୁଣୀ କହିଲା, "ଆମ ଦେଶ ରଜା ଏକ ପୋଖରୀର କନ୍ୟାଟିଏ ଆଣିଛନ୍ତି, ସେ କନ୍ୟାର ବାର ବରଷ ତପସ୍ୟା ସରିଲେ ତାଙ୍କୁ ବାହା ହେବେ । ତପସ୍ୟା

ପୂରିବାପାକେ କନ୍ୟା ରଖିବାକୁ ଅଲଗା ନଅର ତୋଳାଦେଇଛନ୍ତି, କନ୍ୟା ସେଠେଇ ଅଛି । ମନ୍ତ୍ରୀପୁଅ ୟା ଶୁଣି ରାଜାଙ୍କ ପାଖରେ କହିଲା, 'ମୁଁ ଚାକିରି କରିବାକୁ ଆସିଛି ।' ରାଜା ପଚାରିଲେ, 'କି ଚାକିରି କରିବୁ ?' ମନ୍ତ୍ରିପୁଅ କହିଲା, 'ମଣିମାଙ୍କ ନଅର ରାତିରେ ପହରା କରିବି, ରାତିସାରା ମୋର ପଲକ ପଡ଼ିବ ନାହିଁ ।' ରାଜା ହୁକୁମ ଦେଲେ, ମନ୍ତ୍ରିପୁଅ ଯାଇ ନୂଆ ନଅରରେ ପହରା ଦେଲା । ଅଧରାତି ହେଲା. ଯାଇ କନ୍ୟା ପାଖରେ ପହଞ୍ଚିଲା । କନ୍ୟା ମନ୍ତ୍ରିପୁଅକୁ ଚିହ୍ନିଲା । କିମିତି ଏଠଉଁ ପଳେଇବେ. ଦୁହେଁଯାକ ଏଇ ବିଚାର କଲେ ।

ରଜା ତାଙ୍କ ମନପବନ ଡଙ୍ଗାକୁ ଯେଉଁଠି ରଖିଥିଲେ, ମନ୍ତ୍ରିପୁଅ ତାକୁ ସୁହକର ଖଞ୍ଜରେ ଆଣି କନ୍ୟାକୁ ସେଥିରେ ବସେଇ ଆସି ପୋଖରୀ କୂଳରେ ପହଞ୍ଚିଲା । ମନ୍ତ୍ରିପୁଅ ପାଖରେ ତ ମଣିଟି ଥାଏ । ମଣିଟି ଧରି ଦୁହେଁଯାକ ରଜାପୁଅ ପାଖରେ ପହଞ୍ଚିଲେ । ସେ ନଅର ଭିତରେ ଯେଉଁଠି ଯାହା ଧନ ଦରବ ଥିଲା. ସବୁ ଲୁଣ୍ଠେଇ ପୁଣ୍ଠେଇ ନେଇ ଆପଣା ଦେଶକୁ ବାହାରିଲେ । ବାଟରେ ଯାଉ ଯାଉ ଗୋଟିଏ ମଠ ପଡ଼ିଗଲା । ସେ ମଠ ମହନ୍ତ ମରିଯାଇଛନ୍ତି । ତାଙ୍କର ଦୁ' ଚେଲା । ଚେଲାଙ୍କ ଭିତରେ କଜିଆ ଲାଗିଛି । ମହନ୍ତଙ୍କ କଠଉ, ଝୁଲି. ବେତ —ୟାକୁ କିଏ ନେବ ? ଦୁ' ଚେଲାଯାକ ରଜାପୁଅ ମନ୍ତ୍ରିପୁଅକୁ ଭଲଲୋକ ମାନିଲେ । ଏ ପଚାରିଲେ 'ଏଥିପାଇଁ କିଆଁ ଏତେ କଜିଆ ଲାଗିଛି ?' ଚେଲାଏ କହିଲେ. 'ଏ କଠଉକୁ ମାଡ଼ିଲେ ବ୍ରହ୍ମାଣ୍ଡଯାକ ଦଣ୍ଡକେ ବୁଲି ଆସିବ, ଏ ଝୁଲିମୁଣିକି ଝାଡ଼ିଦେଲେ ଲକ୍ଷେ ଲୋକଙ୍କର ଖାଇବା ସାମଗ୍ରୀ ଗଳିପଡ଼ିବ, ଏ ବେତର ଚାରିପଟକୁ ଧୋଇ ରଖିଦେଲେ ଏଥିରେ ୩୬ ପାଠକ ଦଣ୍ଡକେ ଜନ୍ମ ହୋଇପାରିବେ । ୟା ଶୁଣି

ମନ୍ତ୍ରିପୁଅ କହିଲା, 'ତୁମେ ଦିହେଁଯାକ ଦୌଡ଼, ଯେଉଁ ଜଣକ ଆଗେ କୋଶେ ବାଟ ଦଉଡ଼ିଯିବ, ସେ ଯାକୁ ସବୁ ନବ ।' ଦୁହେଁଯାକ ପାରୁପର୍ଯ୍ୟନ୍ତ ଦଉଡ଼ିଲେ । ଏଣେ ରଜାପୁଅ ମନ୍ତ୍ରିପୁଅ ସେ କଠଉ, ଝୁଲି, ବେତ ନେଇ ଉଆଁ ମାରିଦେଲେ । ଏ କଠଉ ମହରିକା ନେଇ ରଜାପୁଅ ବାଟରେ ମନ୍ତ୍ରିପୁଅକୁ କହିଲା, 'ସଙ୍ଗାତ ! ଆମର ତ ସଙ୍ଗରେ ସବୁ ଅଛି, ଏଇଠି ବିଭାହୋଇ ଘରକୁ ଯିବା ।' ବେତର ପବନୁ ଧୋଇ ରଖି ଦେଲାରୁ ସେଥିରୁ ୩୬ ପାଟକ ଜନ୍ମ ହେଲେ । ଝୁଲିମୁଣିକ ଝାଡ଼ିଦେଲାରୁ ୩୬ ପାଟକ ଖାଇକରି ବୋଧ ହେଲେ ।

ସେଠଉଁ ଯାଇଁ ଖଣ୍ଡେ ଦୂରରେ ଗୋଟିଏ ପୋଖରୀ ଦେଖିଲେ, ତା କୂଳରେ ଦେଉଳଟାଏ ଅଛି, ସେଠେଇଁ ବେଳ ବୁଡ଼ିଗଲା, ସେଠେଇଁ ରହିଲେ । ଦୈବଯୋଗକୁ ସେଦିନ ସେହି ପୋଖରୀରେ ବାରଣୀ ଯୋଗ ପଡ଼ିଥାଏ । ରାତିରେ ବହୁତ ଲୋକ ସ୍ନାନ କରିବାକୁ ଆସିଲେ । ରଜାପୁଅ, କନ୍ୟା ଦୁହେଁଯାକ ଶୋଇପଡ଼ିଲେ । ମନ୍ତ୍ରିପୁଅ ବଡ଼ ଚତୁର । ରାତିଯାକ ଚେଇଁଥାଏ, କଡ଼ ମାଡ଼ି ପଡ଼ିଥାଏ, ଯେ ଯାହା ପୋଖରୀତୁଠରେ କଥାବାର୍ତ୍ତା ହେଉଥାନ୍ତି, ଶୁଣୁଥାଏ । ପହିଲେ ଦେବଲୋକମାନେ ସେ ପୋଖରୀରେ ବୁଡ଼ ପକେଇବାକୁ ଆସିଲେ । ଗାଧୋଇସାରି ଗଲାବେଳେ ଜଣେ କହିଲା, 'ଦେଖିଲଣି ଏଠେଇଁ କି ସୁନ୍ଦର ବରକନ୍ୟା ଯୋଡ଼ାଏ ଶୋଇଛନ୍ତି ।' ଆଉ ଜଣେ କହିଲା, 'ହେଲେ କଣ ହେବ, ଏ ରଜାପୁଅ ନଅରକୁ ଗଲାବେଳେ ତା ଉପରେ ମେଘନାଦ ପାଚେରୀ ଭାଙ୍ଗି ପଡ଼ିବ, ଏ ମରିଯିବ ।' ପହିଲୁ ଜଣକ କହିଲା, 'ଭଲ ଏଥିକୁ କିଛି ଉପାୟ ନାହିଁ ?' ଆଉଜଣକ କହିଲା, 'ଯେବେ କେହି ଲୋକ ଆଗରୁ ସେ ପାଚେରୀକି ଭଙ୍ଗେଇ ଦେବ, ତେବେ ଏ ରଜାପୁଅ ବଞ୍ଚିବ । ଏ କଥାକୁ ଯେବେ କିଏ ପ୍ରକଟ କରିବ, ତେବେ ସେ ପଥର ପାଲଟିଯିବ ।' ଫେର

ଘଣ୍ଟାକ ବାଦ ପିତୃଲୋକ ସେ ଘାଟକୁ ଗାଧୋଇ ଆସିଲେ । ଗଲାବେଳେ କଥାବାର୍ତ୍ତା ହୋଇଗଲେ, 'ରଜାପୁଅ ପକ୍ଷିରାଜ ଘୋଡ଼ା ଉପରେ ନଅରକୁ ବାଜେ କଲାବେଳେ ପକ୍ଷିରାଜ ଘୋଡ଼ା ତାକୁ ନେଇ ସମୁଦ୍ରରେ ମାଡ଼ିଦେବ । ଯେବେ କିଏ ଆଗରୁ ସେ ଘୋଡ଼ାକୁ ହାଣେଇ ଦେବ, ତେବେ ରଜାପୁଅ ବଞ୍ଚିବ । ଏ କଥାକୁ କିଏ ଯେବେ ପ୍ରଘଟ କରିବ, ତେବେ ପଥର ପାଲଟିଯିବ ।' ଆର ପ୍ରହରକୁ ନାଗଲୋକେ ସେଠିକି ଆସିଲେ । ଗଲାବେଳେ କଥାବାର୍ତ୍ତା ହେଲେ, 'ରଜାପୁଅ ଘରେ ପହଞ୍ଚିଲାରୁ ସାବତ ମା ପଠାଇଲେ ସୁନାଥାଳରେ ଯେଉଁ ଭାତ ଆଣିବ, ସେଥିରେ ବିଷ ଗୋଳାଥିବ । ରଜାପୁଅ ତାକୁ ଖାଇ ମରିବ । ଯେବେ କିଏ ସେ ଭାତ ଥାଳକୁ ପୋତେଇ ପକାଇବ, ତେବେ ରଜାପୁଅ ବଞ୍ଚିବ । ଏକଥାକୁ ଯିଏ ପ୍ରଘଟ କରିବ ସେ ପଥର ପାଲଟିଯିବ ।' ରାତି ଶେଷ ପ୍ରହରକୁ ନରଲୋକେ ଗାଧୋଇବାକୁ ଆସିଲେ । ଗଲାବେଳେ କଥାବାର୍ତ୍ତା ହେଲେ, 'ମଧୁଶଯ୍ୟାଦିନ ରାତିରେ ଏ ଦୁହେଁ ପଲଙ୍କରେ ଶୋଇଥିବେ, ଖଟଖୁରାରୁ ଏକ ନାଗସାପ ବାହାରି ରଜାପୁଅକୁ ଦଂଶିବ । ଯେବେ କିଏ ରାତିସାରା ଖଟ ପାଖରେ ପହରା ଦେଇ ସେ ସାପ ବାହାରିବାବେଳେ ସାପକୁ ହାଣିଦବ, ତେବେ ରଜାପୁଅ ବଞ୍ଚିବ । ଏ କଥାକୁ ଯେ ପ୍ରଘଟ କରିବ, ସେ ପଥର ପାଲଟିଯିବ ।' ମନ୍ତ୍ରିପୁଅ ଏ କଥା ସବୁ ଶୁଣୁଥାଏ । ସକାଳୁ ଉଠି ରଜାପୁଅକୁ କହିଲା, 'ସଙ୍ଗାତ, ମୁଁ ଆଗରୁ ଯାଇ ରାଜାଙ୍କୁ ତୁମ ଆସିବା କଥା ଜଣା କରିବି ।' ସ୍ଵା କହି ଆଗରେ ରଜାଙ୍କ ଛାମୁରେ ଆସି ପହଞ୍ଚିଲା । କହିଲା, 'ମଣିମା ! ତୁମ ପୁଅ ବାହା ହୋଇ ଯାନବାହାନ ଦେନ ଆସୁଛନ୍ତି । ତୁମକୁ ଖବର ଦେଇଛନ୍ତି, ମେଘ-ନାଦ ପାଚେରି ଭଙ୍ଗାଯିବ, ପକ୍ଷିରାଜ ଘୋଡ଼ାର ମୁଣ୍ଡ କାଟ ହେବ ।' ରଜା ବାହାଘର କଥା ଶୁଣି ଭାରି ଖୁସି ହେଲେ । ରଜାଙ୍କ ହୁକୁମରେ

ଦଣ୍ଡକଭିତରେ ମେଘନାଦ ପାଟେଶ୍ୱ ଭଙ୍ଗାହେଲା, ପକ୍ଷିରାଜ ଘୋଡାର ମୁଣ୍ଡ କଟା ହେଲା । ରଜାପୁଅ ଆସି ଘରେ ପହଞ୍ଚିଲାବେଳକୁ ମା ସୁନାଥାଳୀରେ ଭାତ ନେଇ ଆସି ପହଞ୍ଚିଲେ । ମନ୍ତ୍ରିପୁଅ ଜାଗତ ଥାଇ ଥାଏ । ରଜାପୁଅକୁ କହିଲା, 'ସଙ୍ଗାତ, ମୁଁ ତୁମର ଏତେ କାମ କରିଛି, ମୋର ଗୋଟିଏ କଥା ଆଜି ମାନିବ । ତୁମ ସାବତ ମା ଯେଉଁ ଭାତ ଥାଳିକ ଆଣି ତୁମକୁ ଭେଟିବେ, ସେ ଭାତ ଥାଳିକ ତୁମେ ଖାଇବ ନାହିଁ, ପୋତେଇ ପକେଇବ । ମା ପଛକେ ଆଉ ଥାଳିଏ ଭାତ ଆଣି ଦିଅନ୍ତୁ, ତାକୁ ଖାଇବ ।' ରଜାପୁଅ ଏ କଥାରେ ସମ୍ମତ ହେଲାରୁ ଭାତ ଥାଳିକ ପୋତାହେଲା । ରାତିରେ ଖିଆପିଆ ସରିଲା, ରାଜାପୁଅ ମଧୁଶଯ୍ୟାକୁ ବାହାରିଲା । ରଜାପୁଅ କହିଲା, 'ସଙ୍ଗାତ, ଏଥର ତୁମେ ଘରକୁ ଯାଅ ।' ମନ୍ତ୍ରିପୁଅ କହିଲା, 'ସଙ୍ଗାତ, ମୁଁ ତୁମ ଦୁହିଁଙ୍କପାଇଁ ଏତେ ଦୁଃଖ ସହିଅଛି । ଆଜି ରାତିରେ ତୁମେ ବର-କନ୍ୟା ମଧୁଶଯ୍ୟାରେ ଶୋଇବ, ମୁଁ ଆଜି ରାତିକ ଠିଆ ପହରା ଦେବି । ସକାଳେ ମୋ ସୁଖେ ମୁଁ ଘରକୁ ଯିବି ।' ମନ୍ତ୍ରିପୁଅ କେତେ ଉପକାର କରିଛି, ତା କଥା ଭାଙ୍ଗିଦେଲେ ଚଳିବ ନାହିଁ । ରଜାପୁଅ କହିଲା ହଉ । ବରକନ୍ୟା ଶୋଇଲେ, ମନ୍ତ୍ରିପୁଅ ଗୃହ ହାତିଆର ବାନ୍ଧି ସେ ପଲଙ୍କ ପାଖରେ ପହରା ଦେଲା । ବରକନ୍ୟା ଶୋଇ ପଡ଼ିଲେ, ଘୁଙ୍ଗୁଡ଼ିମାଇଲେ । ଖଟ ଖୁରାରୁ ଏକ ନାଗସାପ ବାହାରିଲା । ଯେତେବେଳେ ସାପ ଖଟ ବାଡ଼ି ଉପରକୁ ଉଠିଲା ସେତିକବେଳେ ମନ୍ତ୍ରିପୁଅ ଖୋଳରୁ ଖଣ୍ଡା ବାହାର କରି ଏକା ଚୋଟକେ ସାପକୁ ଦି'ଗଡ଼ କରିଦେଲା । ହାଣିଦେଲା ବେଳେ ସାପ ଦେହରୁ ଟୋପାଏ ରକତ ଛିଡ଼ିକି କନ୍ୟା ଗାଲରେ ପଡ଼ିଗଲା । ମନ୍ତ୍ରିପୁଅ ମଲା ସାପକୁ ନେଇ ଦାଣ୍ଡରେ ପକାଇଦେଲା । ଫେରି ଆସି ମୁଣ୍ଡରୁ ପଟ୍ଟ ପାଗ ଫିଟେଇ ଖଣ୍ଡାରେ ଗୁଡ଼େଇଲା । ଖଣ୍ଡାକୁ ବଢ଼େଇ ଖଣ୍ଡା ଅଗରେ

କନ୍ୟା ଗାଲରୁ ସେ ରକତ ଟୋପାକ ପୋଛୁଲବେଳକୁ ଖଣ୍ଡା ମୂଳ ପାଖ ରଜାପୁଅ ଦେହରେ ଲଗିଗଲା । ରଜାପୁଅ ଉଠିବସି ମନ୍ତ୍ରିପୁଅ ଚୁଟି ଧଇଲା; କହିଲା, 'ମୁଁ ତ ବେଲସୁଁ କହିଲ ବହେଁଯାକ କନ୍ୟାଟି ବଶ ହେବା, ସେତେବେଳେ କାହିଁ ନ ମଙ୍ଗିଲ, ଏତେବେଳେ କାହିଁ ଏ ଖଟ ଉପରେ ହମୁଡ଼େଇ ପଡ଼ିଥିଲ ? ଏକଥା କହିବ ଯେବେ କହ, ନଇଲେ ମୁଁ ଏଇଲଗେ ତୁମକୁ ହାଣି ଦେବି, ମୁଁ ନିଜେ ହାଣି ହୋଇ ମରିବି ।' ମନ୍ତ୍ରିପୁଅର ପ୍ରାଣଗଲେ ପଛକେ ଯିବ, ସେଥିପାଇଁ କିଛି ହାନ ନ ଥିଲା । କାଳେ ରଜାପୁଅ ଆପେ ହାଣିହୋଇ ମରିବ, ତେବେ ମନ୍ତ୍ରିପୁଅ ଏତେ ଯେ ଶ୍ରମ କରିଛି, ଅକାରଣ ଯିବ । ମନ୍ତ୍ରିପୁଅ ରଜାପୁଅକୁ ଯେତେ ବୁଝାଇଲା ରଜାପୁଅ ବୁଝିଲା ନାହିଁ; ଏକା ଜିଦ ଧଇଲା,ନ କହିଲେ ନ ଚଳେ । ଅତି ଜଗର କଲରୁ ମନ୍ତ୍ରି ପୁଅ କହିଲା, 'ସଙ୍ଗାତ, ମୁଁ ଯେବେ ଏ କଥା କହିବି, ତେବେ ପଥର ହୋଇଯିବି । ମତେ କାହିଁ ଏତେ ବଲାଉଛ ?' ରଜାପୁଅ ଏ କଥାକୁ ଅପସନ୍ଦ କଲା; କହିଲା, 'ମଣିଷ କେବେ ପଥର ହେଲାଣି ? ତୁମେ ମତେ ଭଣ୍ଡାଉଛ, ତୁମ ମନରେ ଥିଲା ମତେ ହାଣି ଏ କନ୍ୟାକୁ ବଶ ହୁଅନ୍ତ ।' ମନ୍ତ୍ରିପୁଅ ଯା ଶୁଣି ମନେ ମନେ ନାଁ ହୋଇଗଲା । ପଛକୁ କହିଲା, 'ସଙ୍ଗାତ ! ମତେ ପାସୋରିବ ନାହିଁ । ମୁଁ ପଥର ହୋଇଗଲେ ପଥର ଖଣ୍ଡକୁ ତୁମ ଶୋଇବା ବସିବା ଘରେ ରଖିଦବ । ଯେତେବେଳେ ହେଲେ ଦୁହେଁଯାକ ମୋ ଉପରେ ଟିକଏ ଦୃଷ୍ଟି ପକାଉଥିବ ।' ଯା କହି ପୋଖରି କାଲରେ ଦେଉଳ ପ ଖରେ ବାଟରେ ଯାହା ଶୁଣିଥିଲା, ସବୁ କହିଗଲା । ପହିଲୁ ମେଘନାଦ ପାଚେରି କଥା କହି ସାରିଲାରୁ ଗୋଡ଼ଠୁଁ ଆଣ୍ଠୁ ପର୍ଯ୍ୟନ୍ତ ପଥର ହୋଇଗଲା । ପକ୍ଷିରାଜ ଘୋଡ଼ା କଥା କହିଲାରୁ ଅଣ୍ଟାଯାଏ ପଥର ପାଲଟିଗଲା । ଘିତଥାଳୀ କଥା

କହିଲାବେଳକୁ ବେକଯାଏ ପଥର ହେଲା । ସାପ କଥା କହିଲା-ବେଳକୁ ମୁଣ୍ଡଟି ପଥର ହୋଇଗଲା । ଯା ଦେଖି ରଜାପୁଅର ଆଉ ବୁଦ୍ଧି ସ୍ଫୁରିଲା ନାହିଁ । ଯିମିତି ଶୋଇଥିଲା, ସିମିତି ଉଠିଲା । ପଥରକୁ କାନ୍ଧେଇଲା, ବାବାଜିଙ୍କ କଠଉସୋଡ଼ିକ ମାଡ଼ିଲା, ଝୁଲିମୁଣିଟି, ବେତ ଖଣ୍ଡିକ ଧଇଲା, ମୁଣ୍ଡ ଉପରେ ଖଣ୍ଡାଟି ଥିଲା, ତାକୁ ଧଇଲା, ବାହାରିଲା । କନ୍ୟାକୁ କହିଗଲା—'ମୁଁ ଯାଉଛି, ଯେବେ ସଙ୍ଗାତକୁ ମଣିଷ କରାଇ ନ ପାରିବି, ତେବେ ସଙ୍ଗାତକୁ ନେଇ ସମୁଦ୍ରରେ ଝାସ ଦେବି ।' କନ୍ୟା କେତେ ବୁଝେଇଲା, ବୁଝିଲା ନାହିଁ । ପଛକୁ କନ୍ୟା ଆପଣା କର୍ମକୁ ଆଦରି କାନ୍ଦିବୋବେଇ ରହିଲା ।

ରଜାପୁଅ ବିଦେଶ ଗଲା । ସଙ୍ଗାତକୁ ମୁଣ୍ଡେଇ ଏଗାର ବରଷ ବୁଲିଲା । ପଛକୁ ବାର ବରଷ ପୂରି ନ ଥାଏ, ଦିନେ ଯାଇ ଏକ କଦମ୍ବ ଗଛମୂଳେ ପହଞ୍ଚିଲା । ସେ ଗଛରେ ଗୋଟିଏ ଫୁଲଶାଗୁଣା ବସା କରିଥାଏ । ଛୁଆଗୁଡ଼ିକ ବସାରେ ଥୁଆଡ଼ି ଶାଗୁଣା ଦିନଯାକ ଆଧାର ଖୋଜି ଯାଏ । ସେଦିନ ରଜାପୁଅ ସେ ଗଛମୂଳେ ଶୋଇଛି, ଗଛ ଉପରେ ଶାଗୁଣାଛୁଆଯାକ କେଁ କାଁ ହେଲେ । ଏ ଉଠି ଦେଖିଲା, ଏକ ଅଜଗର ସାପ ଗଛ ଉପରକୁ ଉଠୁଛି, ସେ ଛୁଆଙ୍କୁ ଖାଇଦେବ । ରଜାପୁଅ ସାପକୁ ଦେଖିଲାକ୍ଷଣି ଖୋଳରୁ ଖଣ୍ଡା ବାହାରି କରି ସାପକୁ ଗଡ଼ ଗଡ଼ କରି କାଟିଲା । ଏଣେ ଫୁଲଶାଗୁଣା ଦିନଯାକ ବୁଲି ବୁଲି ସନ୍ଧ୍ୟାବେଳକୁ ବସାକୁ ନେଉଟି ଆସିଲା । ଛୁଆଙ୍କୁ ଆଧାର ଦେଲାବେଳକୁ ଛୁଆଯାକ କହିଲେ, "ମା' ଲୋ ମାଆ ! ଆମକୁ କଣ ଖାଇବାକୁ ଦେଉଛୁ, ଆମ ଜୀବନ ଆଜି ଯେ ରଖିଛି, ସେ ବାଟୋଇଟି ଗଛମୂଳେ ଶୋଇଛି, ତା କଥା ବୁଝ ।" ସେଇଠୁ ମା'କୁ ଦିନର ସବୁ କଥାଯାକ କହିଲେ । ମା ଯାଇ ଗଛମୂଳେ ଦେଖେ, ବାଟୋଇଟି ଶୋଇଛି, ଅଜଗର

ସାପ ଖଣ୍ଡ ଖଣ୍ଡ ହୋଇ ପଡ଼ିଛି । ବାଟୋଇକ ସେ ଉଠେଇଲା, କହିଲା 'ତୋ ଉପକାର ମୋ ମନରୁ ଯିବ ନାହିଁ । ତୁ କଣ ବର ମାଗୁଛୁ ମାଗ ।' ରଜାପୁଅ ଏ ପଥରକୁ ଦେଖେଇଲା, ସବୁକଥା ଶାଗୁଣାକୁ କହିଲା । ଶାଗୁଣା କହିଲା, 'ଏ ଗଛମୂଳ ମାଟି ଚକଟି ସେ ପଥର ଦିହରେ ବୋଳ ଦେଇ ପାଣି ଦି ମାଠିଆ ଢ଼ାଳ ଦେ ।' ରଜାପୁଅ ସତକୁ ସତ ସେଇଆ କଲାବେଳକୁ ମନ୍ତ୍ରିପୁଅ ମଣିଷ ହୋଇଗଲା । ନିଦରୁ ଉଠିଲା ଭଳି ଆଖି ମଳି କହିଲା, 'ସଙ୍ଗାତ ! ମୁଁ କେତେଗୁଡ଼ାଏ ଶୋଇପଡ଼ିଲ ।' ରଜାପୁଅ ହସି କର ସବୁ ପୂରୁବ କଥା କହିଲା । ଦିହେଁଯାକ କୁଣ୍ଢିଆକୁଣ୍ଢେଇ ହେଲେ, ଘରକୁ ଫେର ଆସିଲେ । ଘରେ ଆସି ପହଞ୍ଚିଲାବେଳକୁ ବାର ବରଷ ହୋଇଗଲାଣି । ତାଙ୍କୁ ଶୁଦ୍ଧି ହେବାକୁ ଉଦ୍ୟମ ଲାଗିଛି । ଦି'ସଙ୍ଗାତ ଆସି ପହଞ୍ଚିଗଲାରୁ ସମସ୍ତେ ଦେଖି ଆନନ୍ଦ । ରଜାପୁଅ କନ୍ୟାକୁ ନେଇ ଘର ଦୁଆରି କଲା । ମୁଁ ଗଲାରୁ କଥା କହିଲା ନାହିଁ ।

— — —

# ବୁଢ଼ା ଶଙ୍ଖାରି

[ ୬ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ]

ପ୍ରାୟ ଫଗୁଣମାସ ଶେଷ ସରିକି, ଉଦୁଉଦିଆ ଖରବେଳ, ବୁଢ଼ାଟିଏ ଗୋଟିଏ ଗାଁ ମଝିରେ ଯାଉଥିଲା । ଷାଠିଏ ବରଷର ବୁଢ଼ା, ଦାନ୍ତଗୁଡ଼ାକ ସବୁ ପଡ଼ିଗଲଣି, ମୁଣ୍ଡବାଳ ତେଣିକି ଥାଉ ଛୁଞ୍ଚି ବାଳଗୁଡ଼ାକ ପାଚି ଧୋବ ଫରଫର ଦିଶୁଚି । ବୁଢ଼ା ମୁଣ୍ଡରେ ଗୋଟିଏ ଟୋକେଇ, ଧୂଳିରେ ଆଣ୍ଠୁ ଯାକେ ବୁଡ଼ିଛି, ଅଷ୍ଟାଙ୍ଗ ଶରୀର ଝାଳବୁଢ଼ ଗୋଡ଼ବାଟେ ବହିଯାଉଛି ।

ଗାଁ ମୁଣ୍ଡରେ ଗୋଟିଏ ଘର । ପକାପିଣ୍ଡା, ସାତସେଣିଆ ଛପର, ଯାଉଁଳି କବାଟ । ବୁଢ଼ା ସେହି ପିଣ୍ଡାରେ ବୋଝଟି ଥୋଇ-ଦେଇ ନଥକରି ବସିପଡ଼ିଲା । କିଛିକ୍ଷଣ ପରେ ସେ ଘରୁ ଗୋଟିଏ ଦାସୀ ବାହାରି ଆସିଲା । ଦାସୀ ବୁଢ଼ାକୁ ଚହିଁ, ପଚାରିଲା, "କିହୋ ଶଙ୍ଖାରିପୁଅ, ଶଙ୍ଖା ଆଣିଛ କି ?" ବୁଢ଼ା ଉତ୍ତରକଲା 'ହଁ', ପୁଣି କହିଲା "ଝିଅ, ଟୋପାଏ ପାଣି ଦିଅନ୍ତୁ । ବୁଢ଼ା ମଣିଷ, ଖରାରେ ତଣ୍ଟି ଶୁଖିଗଲଣି ।" ଦାସୀ ପାଣି ଆଣିବାକୁ ଚାଲିଗଲା । କିଛିକ୍ଷଣ ପରେ ଲୋଟାଏ ପାଣି ନେଇ ଦାସୀ ଫେରିଆସି ବୁଢ଼ା ପାଖରେ ଥୋଇଦେଲା । ବୁଢ଼ା ଉପରକୁ ଆଁ କରିଦେଇ ଢକ ଢକ କରି ଅଧଲୋଟାଏ ପାଣି ଟେକିଦେଲା । ପାଣି ପିଇସାରି ବୁଢ଼ା ଦଉରସ ନିଶ୍ୱାସଟାଏ ମୁହଁବାଟେ ପକାଇ କହିଲା, "ଝିଅ, ତୋର ବଡ଼ ଧରମ ହେଲା ।" ଦାସୀ କହିଲା, "ହଉ ହେଲା ତ ହେଲା ପଛକେ, ଚାଲ ବଡ଼ ସାଆନ୍ତାଣୀ ଡାକୁଛନ୍ତି, କମିତିକା ଶଙ୍ଖା ଅଛି ଦେଖିବେ ।"

ବୁଢ଼ା ଝୋଟକେଇଟି ନେଇ ଉଠିଲା । ସଦର ଦରଜା ପାରିହେଲେ ଭିତରେ ପକ୍‌କା ବାହାର, ସାମନାରେ ଚଉପାଢ଼ୀ, ବାଆଁ ପାଖକୁ ଭିତର ଆଡ଼ ଦୁଆର । ସେ ଦୁଆର ପାଖରେ ଓଢ଼ଣା ଦେଇ ବହୂଟିଏ ଛିଡ଼ା ହୋଇଥିଲା । ବୁଢ଼ା ଯାଇ ଝୋଟକେଇଟି ଥୋଇ ଛିଡ଼ାହେଲା । ବହୂଟି ଧୀରେ ଧୀରେ ଦାସୀକି କହିଲା, "କି ଶଙ୍ଖା ଅଛି ପଚାରର ମା ।" ଦାସୀଟି ଟିକିଏ ମୁଖରା; ସେ କହିଲା, "ତୁ'କର ବୁଢ଼ା ମିଣିପିଠାକୁ ଏତେ ଲାଜ ! ନିଜେ ଝୋଟକେଇରୁ ଆସି ଦେଖୁ ନାହଁ ?" କଥାଟା ମନକୁ ଆସିଲା । ବହୂଟି ଓଢ଼ଣା ଅଧେ ଟେକି ଦେଇ ମୁରୁକି ମୁରୁକି ହସି ହସିକା ବାହାରି ଆସି ଝୋଟକେଇ ପାଖରେ ଛିଡ଼ାହେଲା । ବହୂଟିର ମୁହଁ ଦିଶିଗଲା । ମୁହଁଟି ଚକ-କାଟି ଦେଲାପରି, ଚମ୍ପାଫୁଲପରି ଗୋରା । ଗୋରି ଆଙ୍ଗୁଳି ଓସାରର ନାଲି ଡହିଁରେ ମୟୂର-କଣ୍ଠିଆ କନ୍ତା ଖଣ୍ଡିକ ଗୋଇଠିଯାଏ ଲମ୍ବିଛି । ତା ଭିତର ଦେଇ ବହୂଟିର କଞ୍ଚା ସୁନାପରି ଗୋରା ଗୋଟିଏ ଗୋଇଠିରେ ଗଢ଼ା ଦେହଟି ଫୁଟି ଦିଶୁଛି । ବୁଢ଼ାର ଆଖି ପୂରିଉଠିଲା । ଏଡ଼େ ସୁନ୍ଦର, ଏଡ଼େ ନିକ ବହୂଟିଏ ସେ କେବେ ଦେଖି ନାହିଁ । ବୁଢ଼ା ଆଉ ଆଖି ଫେରାଇ ପାରିଲା ନାହିଁ । ଏକ ଧ୍ୟାନରେ ବହୂଟିକୁ ଚାହିଁ ରହିଲା । ବୁଢ଼ାର ଇଚ୍ଛା କଣ କହିବ ବୋଲି, କିନ୍ତୁ ପାଟିରୁ କଥା ଫୁଟିଲା ନାହିଁ । କେତେବେଳେକେ ବୁଢ଼ା ମୁହଁଫିଟାଇ କହିଲା, "ମା, କି ଶଙ୍ଖା ନବୁ ନେ ।" 'ମା' ବୋଲି ଡାକଦେବାକ୍ଷଣି ବୁଢ଼ାର ଗୁଡ଼ିଶୂ କୁଣ୍ଟେ ହୋଇଗଲା । ବହୂଟି ଲାଜ ଛାଡ଼ିଦେଇ କହିଲା, "ଆସମାନତାରା ଶଙ୍ଖା ଅଛି ?" ଓଃ, ଏଡ଼େ ମିଠା କଥା ! ଏପରି କଥା ତ କେହି କହେ ନାହିଁ ! ବୁଢ଼ାର କାନରେ ସେ ସ୍ୱରଟା ଥରକୁ ଥର ବାଜିବାକୁ ଲାଗିଲା । ବୁଢ଼ା କହିଲା, "ନା ମା, ରଙ୍ଗଝୋଲରି, ବଉଳଫୁଲିଆ, ହିରୁମାଳିଆ, ଚୂନଟିପି ଏହିସବୁ ଅଛି ।

ଏଇଥିରୁ ଯାହା ନେବୁ ନେ ମା; ମୁଁ ଆସମାନତାରା ତିଆରି ହେଲେ ଆଣିଦେବ ।"

ବହୂଟି ଦେଖି ଦେଖି ମୁଠାଏ ଶଙ୍ଖା ପସନ୍ଦ କଲା । ତେବେ ସେ ମୁଠାକ ହାତକୁ କ୍ଷେବ କ. ନାହିଁ କଏ କୁଣ୍ଡିବ ? ଏହି ସମୟରେ ବୁଢା କହିଲା, "ଦେ ମା, ହାତ ଦେ, ମୁଁ ଶଙ୍ଖା କଛୁ ଦିଏ ।" ବହୂଟି ହଠାତ୍ ହାତ ବଢ଼ାଇ ଦେଉଛୁ ବା କପରି ! ଟିକଏ ଇତସ୍ତତଃ ହେଲା । ବୁଢ଼ା କହିଲା, "ମା ମୋତେ ଲାଜ କରୁଛୁ ? ମୁଁ ପରା ତୋ ପୁଅ । ପୁଅକୁ ମା ଲାଜ କରେନା ।"

ଦାସୀ ଏହି ସମୟରେ ଠୋ ଠୋ ହୋଇ ହସିଦେଇ କହିଲା, "ବହୂ ସାଆନ୍ତାଣିଏ, ଆଚ୍ଛା ବୁଢ଼ା ପୁଅଟିଏ ପାଇଲ ଏକା; କପାଳ ତ !" ବହୂଟି ପୁଣି ହସିଦେଇ କହିଲା, 'ଦୂର୍ ।'

ବହୂଟି ହାତ ବଢ଼ାଇଦେଲା । କେଡ଼େ ଟିକଏ ନାକ ହାତଟି । କେଡ଼େ ସୁନ୍ଦର ଗୋଲ, ଆଙ୍ଗୁଳିଗୁଡ଼ିକ ଚମ୍ପାକଢ଼ି ପରି, ପାପୁଲିଟି ଟୁଲୁ ଟୁଲୁ ହେଉଛି । ଶଙ୍ଖାଗୁଡ଼ିକ କି ସୁନ୍ଦର ଦିଶୁଛି । ଏ କଣ ମଣିଷର ହାତ ? ନା, କେହି କାରିଗର ଠାକୁର ଗଢ଼ିଛି ? ସେ ହାତକୁ ବୁଢ଼ା ତାର ମଳିଆ, ରୁକ୍ଷ ହାତରେ ଧରିବାକୁ ସାହସ କଲା ନାହିଁ । ତାପରେ ବାଁ ହାତରେ ଥିରକରି ହାତଟି ଧରି ପରେ ଶଙ୍ଖା କଛିବାକୁ ଲାଗିଲା । ଏ ହାତ, ଶଙ୍ଖାରେ କାଳେ କଟିଯିବ; ରକତ ବାହାରି ପଡ଼ିବ ଯେ, ପୁଣି ଟିକଏ ରହିଲା । ପୁଣି ଶଙ୍ଖା ପଟିଏ ଆଣି, ଧୀରେ ଧୀରେ, ଅତି ସନ୍ତର୍ପଣରେ, ଅତି ସାବଧାନତାର ସହିତ ସେ ପଟିକ କଛିନେଲା । ସେ ହାତଟି ଧରିଥିଲାବେଳେ ବୁଢ଼ାର ଆନନ୍ଦର ସୀମା ରହୁ ନ ଥାଏ, ଯେପରି ତାର ଜୀବନର ସମସ୍ତ ସୁଖ, ସମସ୍ତ ଆଶାର ସେହିଠାରେ ତୃପ୍ତି । ସେ ହାତକୁ ପୁଣି

ଗ୍ରହଣ କରିବାକୁ ହେଲା । ବୁଢ଼ା ଭାବିଲା, ମୁଁ ପ୍ରତିଦିନ ଏହିପରି, ଏ ହାତରେ ଶଙ୍ଖା ପିନ୍ଧାନ୍ତୁ କି !

ଏହି ସମୟରେ ସେ ଘରର ସାଆନ୍ତାଣୀ ସେଠାରେ ଆସି ପହଞ୍ଚିଲେ । ଶାଶୁଙ୍କୁ ଦେଖି ବହୂଟି ଓଢ଼ଣା ଟାଣିଦେଇ ପଳାଇଲା । ଶାଶୁ ଦାସୀକୁ ପଚାରିଲେ, "କିଲୋ ଶଙ୍ଖା କିଣୁଥିଲ କି ?" ଦାସୀ କହିଲା, "ହଁ, ବହୂ ସାଆନ୍ତାଣୀ ଏହି ମୁଠାକ ନେବେ ବୋଲି କହୁଛନ୍ତି ।"

ଶାଶୁ କହିଲେ—ଦାମ୍ କେତେ ?

ବୁଢ଼ା—ଶଙ୍ଖାମୁଠାକ କି ଦାମ୍ !

ଶାଶୁ—ଏଁର୍ ; କେତେ ଦେବ ?

ବୁଢ଼ା—ମା'ଠଉଁ ମୁଁ କଣ ଦାମ୍ ନେବ ?

ଶାଶୁ ଦାସୀକୁ ପଚାରିଲେ, "କିଲୋ ! ମା କ'ଣ ଲୋ ?"

ଦାସୀ ହସି କହିଲା, "ସେଇ ପିଲାଟି ବହୂ ସାଆନ୍ତାଣୀଙ୍କ ପୁଅ ହୋଇଛୁ ।" ଶାଶୁ ବି ହସିଲେ । କହିଲେ, 'ଆଚ୍ଛା; ଏଥର ଦାମ୍ ନେଇଥାଅ; ଆଉ ଥରକୁ ପଛେ ଖାଲି ଦେଇଯିବ । ତମେ ଗରିବ ଲୋକ—"

ବୁଢ଼ା—"ନାଁ ନାଁ, ମୋ ମା'କୁ ତ ଦେଇଛୁ; ମୁଁ ଆଉ ଦାମ୍ ନେବ ନାହିଁ । ଶଙ୍ଖା ମୁଠାକଲାଗି ମୁଁ ଗରିବ ହୋଇଯିବ ନାହିଁ ।"

ଏହା କହି ଶଙ୍ଖାରି ଶଙ୍ଖା ମୁଠାକ ରଖିଦେଇ ବୋଝଟି ଧରି ଏକା ବେଳକେ ଚାଲିଗଲା । ଆଉ ଡାକିଲେ ଶୁଣିଲା ନାହିଁ । ଦାସୀ ପଛରେ ଗୋଡ଼େଇ ଗୋଡ଼େଇ ଗଲା । କିନ୍ତୁ ସେ ଆଉ ଫେରି ଚାହିଁଲା ନାହିଁ ।

ସେହି ଦିନଠଉଁ ସେ ବୁଢ଼ା ଶଙ୍ଖାରି ଦୁଇଦିନେ ତିନିଦିନେ ଟିସେ ଟିକୁ ଆସେ । ଶଙ୍ଖାଟା କ'ଣ ଗୋଟାଏ ନିତ୍ୟାନି ଜିନିଷ ଯେ

ଲୋକେ ଖେଳ କଶିବେ; ଅକାଳେ ସକାଳେ ପୂନେଇ ପରବରେ ସିନା କାଏ ନୂଆ ଶଙ୍ଖା ଖୋଜେ । ବୁଢ଼ାଟା ଖାଲି ଘର ଘର ବୁଲି ଫେରିଯାଏ । କିନ୍ତୁ ଶଙ୍ଖା ବିକ୍ରୀ ତ ବୁଢ଼ାର ଉଦ୍ଦେଶ୍ୟ ନୁହେଁ । ସିଏ ଆସେ ତାର ସେହି ନିଜ ମା'ଟିକୁ ଦେଖିବାପାଇଁ । ଯେଉଁଦିନ ଆସେ କାହାରିକୁ ନ କହି ଦୁଆରଯାକେ ଚାଲିଆସେ । ବୋଝ ରଖିବାକୁ ହୁଏ ନାହିଁ । ଖାଲି ପାଟିକରି ଡାକିଦିଏ, "ନୂଆ ଶଙ୍ଖା ନିବ !" ତା ପାଟି ଶୁଣିଲାକ୍ଷଣି ବହୂଟି କୁଆଡ଼େ ଥାଏ, ଆସି ଦୁଆର ପାଖରେ ଟିକିଏ ଛିଡ଼ାହୁଏ । ବୁଢ଼ାଟି ଟିକିଏ ଅନାଏ; ଚାହିଁ ଦେଲାକ୍ଷଣି ବୁଢ଼ାର ମନ ପୂରିଉଠେ । ପଚାରେ, "ମା, ଆଜି ଶଙ୍ଖା ନିବୁ ?" ବୁଢ଼ାର ଇଚ୍ଛା କାଳେ ନିବାକୁ କହିବ, ତାହେଲେ ତା ମା'ର ଚମ୍ପାଫୁଲିଆ ସୁନ୍ଦର ହାତଟିରେ ସେ ଶଙ୍ଖା କଟ୍ଟିଦେବ; କିନ୍ତୁ ବହୂଟି ମୁଣ୍ଡ ହଲାଇଦିଏ । ବୁଢ଼ା ଫେରି ଚାଲିଯାଏ ।

ଦିନେ ଦିନେ ଯଦି ବହୂଟିର ଆସିବାକୁ ଡେରିହୁଏ, ସେ ଦାସୀଟି ହୁରି କରିଦିଏ—"ବହୂ ମାଆନ୍ତାଣିଏ, ଶଙ୍ଖାପୁଅ ଅଇଲାଣି ।' ବୁଢ଼ା ଦୁଇଥର, ତିନିଥର, 'ନୂଆ ଶଙ୍ଖା ନିବ' ବୋଲି ଡାକିବାରୁ ତା ମା'ଟି ଆସି ଛିଡ଼ାହୁଏ । ବୁଢ଼ା ଯେଉଁଦିନ ଆସେ, ପ୍ରାୟ ଏହି କଥା, ଏହି ଅଭିନୟ ନିତି ନିତି । ବୁଢ଼ା ଫେରିଲାବେଳେ ଭାବେ "ମା'ର ଆସ୍‌ମାନ୍‌ତାରା ଶଙ୍ଖା ଉପରକୁ ମନ, କେବେ ସେଥିରୁ ମୁଠାଏ ଆଣିଦେବ ।" ଶେଷରେ ଠିକ୍ କଲା—"ଆସନ୍ତା ରଜ ସଂକ୍ରାନ୍ତି ବେଳକୁ ଯୁଆଡ଼ୁ ହେଲେ ମା'ଲାଗି ଆସ୍‌ମାନ୍‌ତାରା ମୁଠାଏ ଆଣିବି, ମା' ନୂଆ ଶଙ୍ଖା ନାଇବ, ମୋତେ ହାତ ଦେଖାଇବ, ମୁଁ ଶଙ୍ଖା କଟ୍ଟି ଦେବି ।" ଏଇୟା ଭାବିଲାକ୍ଷଣି ବୁଢ଼ାର ମନ ଭାରି ଉତ୍‌ଫୁଲ୍ଲ ହୋଇଯାଏ । ବୁଢ଼ା ରଜସଂକ୍ରାନ୍ତିକୁ ଚାହିଁ ରହିଥାଏ । ରଜସଂକ୍ରାନ୍ତିଟି ଏଥର ତାର ଭାରି ଆନନ୍ଦର ଦିନ, ତା ମା' ଲାଗି ସେ ଆସ୍‌ମାନ୍ ତାରା ଶଙ୍ଖା ଆଣିବ, ମା' କେଡ଼େ ଖୁସି ହେବ !

ବୈଶାଖ ମାସ ହେଲା । ବୁଢ଼ା ଲୋକ; ପୁଣି ଖରାରେ ରୋଗ ରୋଗ ବାଢ଼ିଲା, ପ୍ରାଣିପିଆ ଦେହରେ ସହିଲା ନାହିଁ । ବୁଢ଼ାକୁ ଜ୍ୱର ହେଲା । ଦେଖୁଁ ଦେଖୁଁ ଘୋର ଜ୍ୱର, ଗୋଡ଼ ହାତ ଫୁଲିଗଲା । ସମସ୍ତେ କହିଲେ ବୁଢ଼ା ଆଉ ବଞ୍ଚିବ ନାହିଁ । ବୁଢାର କିନ୍ତୁ ସେ ଦିଗକୁ ଭାବନା ନାହିଁ । ସେ ସବୁବେଳେ ଭାବି ହେଉଥାଏ ଯେ, କେଉଁଦିନୁଁ ସେ ମା'କୁ ଦେଖିବାକୁ ଯାଇ ନାହିଁ । ସେଥିପାଇଁ ମନଟା ଆଉଟି ପାଉଟି ହେଉଥାଏ ।

ଦେଖୁ ଦେଖୁ ରଜସଂକ୍ରାନ୍ତି ଆସି ପାଖ ହୋଇଗଲା । ବୁଢା ଦୁଇ ମାସ ହେଲା ମା'କୁ ଦେଖିବାକୁ ଯାଇ ନାହିଁ । ଚାଲିପାରୁ-ଥିଲେ ଯେମିତି ହେଲେ ଦେଖି ଆସୁଥାନ୍ତା । କିନ୍ତୁ ରଜକୁ ତ ଆସ୍‌ମାନ୍ ତାର ଶଙ୍ଖା ମୁଠାଏ ନିଶ୍ଚୟ ଦେବାକୁ ହେବ । ବୁଢା ଅନେକ କଷ୍ଟରେ ଉଠି ବସି ନିଜ ହାତରେ ଶଙ୍ଖା ତିଆରି କଲା । ଆଉ କେହି କରିଦେଲେ କାଳେ ମା' ମନକୁ ନ ଆସିବ ! ଷାଠିଏ ବର୍ଷକାଳ ଶଙ୍ଖା ଗଢ଼ି ଗଢ଼ି ସେ ଯେତେ ହାତ ସଫେଇ ହାସଲ କରିଥିଲା, ସବୁ ସେଥିରେ ଲଗାଇଲା । ଦିନକ କାମ ଚାରିଦିନ ଲାଗୁ ପଛକେ କାମଟି କିମିତି ସରସ ହେଉ ।

ରଜ ଦୁଇ ଦିନ ଥାଇ କାମ ନିକାଶ ହେଲା । ମନ ଯୋନ୍ନ ଫଳ, ଏପରି ଗଢ଼ଣର ଶଙ୍ଖା ତା ଜୀବନରେ ତା ହାତରେ କେବେ ଉତୁରି ନାହିଁ । ଶଙ୍ଖା ଦେଖି ବୁଢ଼ାର ମନ ଭାରି ଖୁସି, ତା ମା' ହାତକୁ ଏ ଶଙ୍ଖା ମୁଠିକ ଖୁବ୍ ମାନିବ ।

ରଜ ଆଗଦିନ ପହିଲି ରଜ । ଆଜି ଝିଅବୋହୂଏ ନୂଆ ଶଙ୍ଖା, ନୂଆ ଶାଢ଼ୀ ପିନ୍ଧିବେ । ରାତିସାରା ବୁଢ଼ାର ନିଦ ନାହିଁ । ସକାଳୁ ଉଠି ବୁଢ଼ା ଭାବିଲା, "ମୁଁ ତ ଚାଲିପାରୁ ନାହିଁ, କଣ କରିବି, ଆଉ କିଏ ନେଇ ଗଲେ ତ ହେବ ନାହିଁ, ମା'କୁ କେତେ

ଢଲୁ ଦେଖି ନାହିଁ, ସତେ କଣ ଏଥିରୁ ବଞ୍ଚିବ ଯେ—ଥରେ ଦେଖିଥିଲେ । ଆଉ ମା'ର ସେହି ହାତରେ ଶଙ୍ଖା କରିଦେବ ।''

ମା'ର ହାତଟି ମନେ ପଡ଼ିଗଲା କ୍ଷଣି ବୁଢ଼ାର ଗଦାଏ ବଳ ଆସିଲା । ବୁଢା ସଅଳ ସଅଳ ମୁଠାଏ ଖାଇଦେଇ ଶଙ୍ଖା ମୁଠିକ ଗାମୁଛାରେ ବାନ୍ଧି ବାହାରିଲା । ଅତି କଷ୍ଟରେ ଭଡ଼ାଏ ଭଡ଼ାଏ ପାଦ ପକାଇ ଚାଲୁଥାଏ । ପାଞ୍ଚକୋଶ ବାଟ, ପହଞ୍ଚିଲା ବେଳକୁ ବେଳ ଗଡ଼ିଗଲାଣି ।

ବୁଢ଼ା ଯାଇ ଯେଉଁଠାରେ ଛିଡ଼ାହୋଇ ଡାକୁଥିଲା ସେହିଠାରେ ଛିଡ଼ାହେଲା । ମନରେ କେତେ ଆନନ୍ଦ, କେତେ ଉତ୍ସାହ । ଡାକିଲା, ''ଶଙ୍ଖା ନେବ ?'' କେହି ଶୁଣିଲେ ନାହିଁ । ପୁଣି ଡାକିଲା, ''ମା'ଲୋ ଶଙ୍ଖା ନେବୁ ପରା ।'' ତେବେ ବି କେହି ଆସିଲେ ନାହିଁ । ବୁଢ଼ା ଅଧୀର ହୋଇପଡ଼ିଲା । ଦୁଇଥର ଡାକ ସାରିଲାଣି, କେହି ଜବାବ ପଦେ ଦେଉ ନାହିଁ । ଥରେ ଡାକିଲେ ତ ମା' ତାର ଆସି ଦୁଆର ବନ୍ଧ ପାଖରେ ଛିଡ଼ାହୋଇ ଯାଉଥିଲା । ପୁଣି ଡାକିଲା, ''ମା'' ମୁଁ ଆସିଛି । ଶଙ୍ଖା ଆଣିଛି ତୋ ପାଇଁ ।'' ଏଇଥର ସ ଆନ୍ତାଣୀ ନିଜେ ବାହାରି ଆସିଲେ ତାଙ୍କ ପଛେ ପଛେ ସେହି ଦାସୀ ।

ସାଆନ୍ତାଣୀଙ୍କୁ ଦେଖି ବୁଢା କହିଲା, ''ମୋ ମା' କାହିଁ, ମୁଁ ତାପାଇଁ ଆସ୍‌ମାନତାରା ଶଙ୍ଖା ଆଣିଛି, ରଜରେ ପିନ୍ଧିବ ।'' ଦାସୀ ତ ସେତେବେଳକୁ ହୁରି କମ୍ପାଇ ହଅନ୍ତାଣି—ସେ କିଛି କହିଲା ନାହିଁ । ସାଆନ୍ତାଣୀ ଧୀରେ ଧୀରେ କହିଲେ, 'ନା ଶଙ୍ଖା ଲୋଡ଼ା ନାହିଁ ।'' ବୁଢା କହିଲା, ''ନା, ମୁଁ ମୋ ମା' ଲାଗି ବଡ଼ ଶରଧାରେ ଆଣିଛି ।''

ସାଆନ୍ତାଣୀ—ନା, ଶଙ୍ଖା କେହି ନେବେ ନାହିଁ, ଯା —

ବୁଢ଼ା—ହେଉ ଶଙ୍ଖା ନ ହେଲେ ନାହିଁ, ମୋ ମା'କୁ ଥରେ ଡାକ ହଅ, ମୁଁ ଦେଖିବି । କେଉଁ ଦିନରୁ ଦେଖି ନାହିଁ ।

ସାଆନ୍ତାଣୀ ଦେଖା ହୋଇପାରିବ ନାହିଁ ।

ବୁଢ଼ା ମୁଣ୍ଡରେ ବଜ୍ରପଡ଼ିଲା । "ଦେଖାହୋଇପାରିବ ନାହିଁ ! ମୋ ମା'କୁ ମୁଁ ଥରେ ଦେଖିପାରିବି ନାହିଁ !" ବୁଢ଼ାର ଆଖି ଛଳ ଛଳ ହୋଇଉଠିଲା । ସେ କାନ୍ଦ କାନ୍ଦ ହୋଇ କହିଲା, "ଥରୁଟିଏ ଦେଖିବି, ମୁଁ ଆଉ ବଞ୍ଚିବି ନାହିଁ ।"

ସାଆନ୍ତାଣୀ ଦାସୀକୁ କହିଲେ, "ଯା, ବହୂକୁ ଡାକ ଦେ ।" ଦାସୀ ଚାଲିଗଲା, କିଛିକ୍ଷଣ ପରେ ବହୂ ଆସି ଦୁଆର ପାଖେ ଛିଡ଼ାହେଲା । ସେଇଠି ସେ ସବୁଦିନେ ଛିଡ଼ାହୁଏ । ଆସିଲାବେଳକୁ ଝୁମୁରୁ ଝୁମୁରୁ ହୋଇ ଚାଲିଆସେ । ଛିଡ଼ାହୋଇ ବୁଢ଼ାକୁ ଚାହିଁଦିଏ । ତାର ହସହସ ମୁହଁଟି ଦେଖି ବୁଢ଼ାର ଆନନ୍ଦର ସୀମା ରହେ ନାହିଁ । ଆଜି ନିଃଶବ୍ଦରେ ଆସି ଛିଡ଼ାହେଲା । ସେ ଚୁରି ଆଙ୍ଗୁଳି ଲେଖାଏଁ ନାଲି ତହିଁର ଶାଢ଼ୀ ନାହିଁ କି କୁମ୍ଭ କନାବି, ଦକ୍ଷିଣୀ ପାଟ ନାହିଁ, ଗୋଡ଼ ଦୁଇଟା ଲଙ୍ଗଳା, ପିନ୍ଧିଛି ଖଣ୍ଡେ ଧଳା ଥାନଲୁଗା । ବୁଢ଼ା ଦେହ ଥରିଉଠିଲା, ମୁଣ୍ଡ ଘୂରିଗଲା । ବୁଢ଼ା ଆଖି ବୁଜି ପକାଇଲା । ପୁଣି ଚାହିଁ ଦେଲାବେଳକୁ ତାର ସେହି ହାତଟି ଦିଶିଗଲା—ହାତରେ କିଛି ନାହିଁ । ବୁଢ଼ା ହେ କରି ରଡ଼କରି ଉଠିଲା । ବହୂଟି ଫେରିପଡ଼ି ଚାଲିଗଲା । ବୁଢ଼ା କହିଲା, "ମା'ଲୋ, ମୁଁ ନ ମରି କାହିଁକି ତୋତେ ଦେଖିବାକୁ ଆସିଲି ! ଏଇତା ଦେଖିବା ଲାଗି ନା ଲୋ ମା'—" ବୁଢ଼ା ଆଉ କହିପାରିଲା ନାହିଁ । ଗାମୁଛାରୁ ତାର ବଡ଼ ଯତ୍ନର ବଡ଼ ଶରଧାର ଶଙ୍ଖାମୁଠିକ ଫିଟାଇ ପକ୍କା ବାହାଟରେ କଚାଡ଼ିଦେଲା । ଶଙ୍ଖା ମୁଠାକ ଯାକ ଚୂନା ହୋଇଗଲା । ତହୁଁ ସେ ଏକମୁହାଁ ହୋଇ ଫେରି ଚାଲିଗଲା । ଦାସୀ ଓ ଶାଶୁ ରଡ଼ି କରିଉଠିଲେ ।

---

# ବଡ଼ ପ୍ରଶ୍ନ

( ୬ ଗୋଦାବରୀଶ ମିଶ୍ର )

ଶୀର୍ଣ୍ଣ ବିଷର୍ଣ୍ଣ, ଅବସନ୍ନ, ନଟବର କେତେବେଳେ ବାଟରେ, କେତେବେଳେ ବା ଅଣବାଟେ, ଅତ୍ୟନ୍ତ ଭାବିତ, ଆନ୍ଦୋଳିତ ଏବଂ ବ୍ୟତିବ୍ୟସ୍ତ ହୋଇ ଯାଉଥିବାର ଦେଖି, କୃଷ୍ଣ ସେଦିନ କୌତୂହଳରେ ଅନେକ ଦୂର ପଛେ ପଛେ ଯାଇ, ଶେଷରେ ପଚାରିଲା, "ଆପଣ ଯାଉଛନ୍ତି କେଉଁଆଡ଼େ ?" "ସେପରି କେଉଁଆଡ଼େ ନୁହେଁ, ବାପ" କହି ନଟବର ସେ ପ୍ରଶ୍ନର ଉତ୍ତର ଦେଲେ ଏବଂ ସେହିପରି ଚାଲିବାରେ ଲାଗିଲେ । କୃଷ୍ଣ ପଛେ ପଛେ ଅନୁସରଣ କରି ଗଲା ।

"ଏଣିକି ଯେ ବାଟ ଖରାପ ପଡ଼ିବ, ବେଳ ମଧ୍ୟ ବେଶୀ ହେଲାଣି, ଏଠାରୁ ଫେରିବା ଦରକାର ।"

"ମୁଁ ତ ଫେରୁଛି । ତୁ ଏଠାରେ ରହ ବାପା ! ମୁଁ ଯାଏ । ତୁ ଗାଁ ପାଖ ଛାଡ଼ି ମୋ ସାଙ୍ଗେ କାହିଁକି ଆସୁଛୁ ?"

"ଆପଣ ଯିବେ କେଉଁଠାକୁ ?"

"ଘରକୁ ଯିବି, ବାପା ।"

"ଏ ତ ଘରଠାରୁ ବିପରୀତ ଦିଗରେ, କ୍ରମେ ଦୂରକୁ ଯାଉଛନ୍ତି ।"

"ହଁ, ଶେଷରେ ଯାଇ ତ ଘରେ ପହଞ୍ଚିବି ପୁଣି ।"

ନଟବରଙ୍କର କୋଷ୍ଠୀ ନ ଥିବାରୁ ତାଙ୍କର ବୟସ ଠିକ୍ ଜାଣି ହୁଏ ନାହିଁ । ତେବେ ପାଖ ଜନଷ ଆଖିକି ଭଲ ଦିଶେ ନାହିଁ ।

ବିନା ପ୍ରଚେଷ୍ଟାରେ ପୋଥି କିତାପ ପଢ଼ି ହୁଏ ନାହିଁ । ସେଥିରୁ ଶୃଙ୍ଖଳା ହୋଇଥିବାର ଅନୁମାନ ହୁଏ । ମୁଣ୍ଡର ପାଚିଲା ବାଳର ପରିମାଣଦ୍ୱାରା ଏ ଅନୁମାନ ସିଦ୍ଧାନ୍ତର ଦୃଢ଼ତା ଲାଭ କରେ । ସେ ବିବାହ କରିବାର ପ୍ରାୟ କୋଡ଼ିଏ ବର୍ଷ ହେଲାଣି । ବଳବୟସ ଖସିଲେ କିଏ ତାଙ୍କର ଓ ତାଙ୍କ ଭାର୍ଯ୍ୟା ବିମଳାଙ୍କର ହାଲଚାଲ ବୁଝିବ, ଖୁଆଇ ପିଆଇ ହେପାଜତରେ ରଖିବ, ତାହାହିଁ ସେ ତାଙ୍କର ଚିନ୍ତାର ବିଷୟ, ସେ କଥା ସମ୍ପୂର୍ଣ୍ଣ ଠିକ୍ ନୁହେଁ । ବିମଳା ବନ୍ଧ୍ୟା । ସେଥିପାଇଁ ସେ ବରଭାର୍ଯ୍ୟା ଦୁହିଁଙ୍କ ମଧ୍ୟରୁ କିଏ ଦାୟୀ ତାହା ଠିକ୍ ନ ବୁଝି ମଧ୍ୟ ବିମଳା ନିଜ ମୁଣ୍ଡର ପ୍ରଚଣ୍ଡ ପ୍ରଗଲଭତା ନିରୀହ ପ୍ରତିବାଦଶୂନ୍ୟ ନିଷ୍ଠବରଙ୍କ ଉପରେ ସର୍ବଦା ଢାଳିବାରେ ଲାଗିଥାନ୍ତି । ବିମଳା ପାଠ ପଢ଼ି ନ ଥିଲେ । କିନ୍ତୁ ଶିକ୍ଷା ପାଇଥିଲେ; ଉପନ୍ୟାସର ଭାବରେ ଅଳ୍ପାଧିକ ଅନୁପ୍ରାଣିତ ହୋଇ ଉନ୍ନତ ଭାଷାର ଅଳଙ୍କାର ଆଦରେ ନିଜର ଜିହ୍ୱାକୁ କେତେକ ପରିମାଣରେ ମଣ୍ଡିତ କରିବାର ସୁବିଧା ପାଇଥିଲେ ସେ ସ୍ୱାମୀଙ୍କ ପ୍ରତି ତାଙ୍କର ଦୈନନ୍ଦିନ ବକ୍ତବ୍ୟର ଧ୍ରୁବ ଅଂଶଟି ନିତାନ୍ତ ଗାଉଁଲି କଥାରେ ରୁକ୍ଷ ଭାବରେ ପ୍ରକାଶ ନ କରି, ଶୁଦ୍ଧ ସରଳ ଭାଷାରେ କହୁଥାନ୍ତି, "ଏ ଦଗ୍ଧ-ମୁଖର ପାଣି ଗ୍ରହଣ କରି ମୁଁ ବନ୍ଧ୍ୟା ହୋଇ ରହିଲି, ବିଧବା ହୋଇ ଉପବେଶନ କରିଥିଲେ କିଣ ଭାସମାନ ହୋଇ ଯାଉଥିଲି ?"

ଏବେ ବିମଳାଙ୍କର ପ୍ରକାଶିତ ଅସନ୍ତୋଷ ଏବଂ ପ୍ରକାଶିତ ଭର୍ତ୍ସନା, ତହିଁରେ ପୁଣି କେତେକ ପରିମାଣରେ ଭବିଷ୍ୟତ ଚିନ୍ତା, ଏଥିରେ ଘାବରାହୋଇ ନିଷ୍ଠବର ସର୍ବଦା ବଡ଼ ଦୁଃଖ ଭାବନାରେ ଥାନ୍ତି । ପୁଅଟିଏ ପାଇଁ ଝୁରି ଝୁରି ପୁଅ ହେଲା ନାହିଁ । ଏପରି କିଛି ବିଷୟ ସମ୍ପତ୍ତି ନାହିଁ ଯେ ଲୋକେ ପୋଷ୍ୟପୁତ୍ର ଦେବେ । ଘର

ଭିତରେ ପ୍ରାୟ ପନ୍ଦର ବର୍ଷ ଭାବ ଭାବ ନଟବର ଗତ କେତେ ଦିନ ହେଲା ବିମଳାଙ୍କ ବାକ୍ୟ-ଲହରୀର ସ୍ରୋତରେ ଭାସି ଘର ଭିତରୁ ନିତି ସକାଳେ ପଦାକୁ ବାହାରି ଆସନ୍ତି । ରୋଜ କୃଷ୍ଣ ସଙ୍ଗେ ତାଙ୍କର ଦେଖା ହୁଏ, କଥାବାର୍ତ୍ତା ମଧ୍ୟ ନାନା ବିଷୟରେ ପଡ଼େ । ମାତ୍ର ନଟବର ଭିତରର କଥା କେବେ କାହାକୁ କହି ନାହାନ୍ତି । ନିତି ନିତି ଦୁଃଖ କଷ୍ଟ ବେଳେ କୃଷ୍ଣଙ୍କୁ ଦେଖି ତା ସଙ୍ଗେ କଥାବାର୍ତ୍ତା ହେବାରେ ସେ ଦୁଃଖ କଷ୍ଟ କେତେକ ଭୁଲି ତାହା ପ୍ରତି ତାଙ୍କ ମନରେ ଏକ ଅଦୃଶ୍ୟ, ଅକଥନୀୟ ଆକର୍ଷଣ ଜନ୍ମିଛି । ଅନେକ ପରିମାଣରେ ସେ ତାକୁ ବାଟରେ ଦେଖିବେ ବୋଲି ଘରୁ ଆସନ୍ତି । କୋହ୍ନା ବିମଳାଙ୍କ ବାକ୍ୟ-ତରଙ୍ଗ ତଳେ ସେ ନୀରବରେ ମୁଣ୍ଡ ପୋତି ବାହାରର କୌଣସି ଆନ୍ଦୋଳନ ଅନୁଭବ ନ କରି ଘର ଭିତରେ ରହିପାରନ୍ତେ । ବିଳମ୍ବ ହେଲେ କାଳେ ବାଟରେ କୃଷ୍ଣ ସଙ୍ଗେ ଦେଖା ନ ହେବ, ସେଥିପାଇଁ ବିମଳାଙ୍କ ବାକ୍ୟସ୍ରୋତ ବହିବା ପୂର୍ବରୁ ମଧ୍ୟ ଅନେକ ସମୟରେ ଘରୁ ବାହାରି ପଡ଼ନ୍ତି. ସୁତରାଂ ନଟବରଙ୍କୁ ଦେଖିବା ନିମନ୍ତେ କୃଷ୍ଣଙ୍କୁ ଅପେକ୍ଷା କରିବାକୁ ପଡ଼େ ନାହିଁ । ପଡ଼ୁଥିଲେ ମଧ୍ୟ ସେ କରୁଥାନ୍ତା । ତା ସଙ୍ଗେ କଥାବାର୍ତ୍ତା ହେବା ଦ୍ୱାରା ନଟବରଙ୍କ ଦୁଃଖ ଯେ କେତେକ ପରିମାଣରେ ଊଣା ହୁଏ, ତାହା ସେ ବୁଝିପାରିଛି । ସୁତରାଂ ସେ ମଧ୍ୟ ଘରୁ ତରତର ହୋଇ ବାହାରି ଆସେ, ନଟବର ପହଞ୍ଚିବା ପୂର୍ବରୁ ତାଙ୍କ ଯିବା ବାଟରେ ଠିଆ ହୋଇଥିବ ବୋଲି ।

କେତେ ଦିନର କଥାବାର୍ତ୍ତା ଓ ସମ୍ପର୍କରେ କୃଷ୍ଣ ବୁଝିପାରିଛି ଯେ ତାହା ଛଡ଼ା ନଟବରଙ୍କ ସାନ୍ତ୍ୱନାର ବସ୍ତୁ ପୃଥିବୀରେ ଆଉ କିଛି ନାହିଁ । ନଟବର ମଧ୍ୟ ସେ କଥା ବୁଝିଥିବାରୁ ନିଜ ହୃଦୟ ମଧ୍ୟରେ ସର୍ବଦା ଏକ ଭୀଷଣ ଯୁଦ୍ଧର ଅଭିନୟ ଅନୁଭବ କରୁଛନ୍ତି ।

ତାଙ୍କର ବିବେକ ବାରମ୍ବାର କହୁଛି, "ନା, ସେ ଯେ ପରର ପିଲା ।" ତଥାପି ସେ ତାକୁ ଏକାବେଳକେ ଛାଡ଼ିପାରୁ ନାହାନ୍ତି । ତାକୁ ଦେଖିବା ନିମନ୍ତେ ଶୀର୍ଣ୍ଣ ଦୁର୍ବଳ ଦେହରେ ରୋଜ ସକାଳୁ ଶ୍ରମ ସ୍ୱୀକାର କରି ଘରୁ ପ୍ରାୟ ଦେଢ଼ କୋଶ ବାଟ ଚାଲି ଆସନ୍ତି । ସକାଳ ହେଲେ କିପରି ଚନ୍ଦ୍ରପୁର ବାଟେ ଚାଲିଯିବେ, ସେହି ଭାବନାରେ ପ୍ରାୟ ପ୍ରତ୍ୟହ ଶେଷ ରାତ୍ରରେ ତାଙ୍କର ଭଲ ନିଦ ହୁଏ ନାହିଁ । କୃଷ୍ଣକୁ ଦେଖିଲେ ସେ ବେଳେ ବେଳେ ଅନେକ ପରିମାଣରେ ପାଗଳ ପରି ହୋଇଯାନ୍ତି, କଣ କର୍ତ୍ତବ୍ୟ ଠିକ୍ ବୁଝି-ପାରନ୍ତି ନାହିଁ ।

ଆଜି ସେ ଘରୁ ଅନେକ ସମୟ ହେଲା ଆସିଲେଣି । ଅବଶ୍ୟ ସେ ଅନୁପାତରେ ଚାଲିଅଛନ୍ତି ଅତି ଅଳ୍ପ ବାଟ । ବାଟ ଚାଲିବା ତ ତାଙ୍କର ଉଦ୍ଦେଶ୍ୟ ନୁହେଁ ଯେ ହିସାବ କରି ଘଡ଼ିକେ କୋଶେ ଚାଲିବେ । କାଳିଅନ୍ଧାରରୁ ବିମଳା ଶେଯରୁ ଉଠିବା ପୂର୍ବରୁ ଘରୁ ବାହାରି ଆସିଛନ୍ତି । ଚନ୍ଦ୍ରପୁର ଗ୍ରାମ ନିକଟରେ ପହଞ୍ଚି କୃଷ୍ଣ ସହିତ ଦେଖା ହୋଇଛି । ଏବେ କୃଷ୍ଣଙ୍କୁ ଦେଖି ତାଙ୍କ ମନର ତୁଳାଦଣ୍ଡ ଦୋହଲି ଯାଇଛି, ତହିଁରେ ପୁଣି ଭାବୁଛନ୍ତି ଯେ ସବୁଦିନ ପରି ଘରକୁ ଫେରିବେ ଏବଂ ଫେରିଲେ, ନଦୀ ମୁହାଣରେ ଜୁଆର ସମୟରେ ଭାସି ଆସିଲା କାଠ ଖଣ୍ଡ ପରି ବିମଳାଙ୍କ ଗାଳି ଭର୍ତ୍ସନା ସ୍ରୋତରେ ପୁଣି ହୁଏତ ପଦାକୁ ବାହୁଡ଼ି ଆସିବା ହେବ ଏବଂ ଏହି ଚିନ୍ତାରେ ଭାଙ୍ଗି ପଡ଼ୁଛନ୍ତି । ସୁତରାଂ ସେ କେଉଁଆଡ଼େ ଯାଉଛନ୍ତି ଏବଂ କେଉଁଆଡ଼େ ଯିବା ତାଙ୍କର ଆବଶ୍ୟକ, ଏ ସବୁ ସେ କିଛି ବୁଝିପାରୁ ନ ଥିଲେ । କୃଷ୍ଣର ମନର ଭାବ ଗଳା ପର୍ଯ୍ୟନ୍ତ ଉଠି ଆସିଥିଲା । ଗତ କେତେ ଦିନ ସେ ତାହାକୁ ଅତ୍ୟନ୍ତ କଷ୍ଟରେ ମାଡ଼ି ରଖିଥିଲା । ମାତ୍ର ଆଜି ସେ ଭାବ

ଅଧିକ ହୋଇ ଫୁଲଉଠିବାରୁ ସେ ସଂକୋଚ ଓ ସୌଜନ୍ୟର ସ୍ୱାଭାବିକ ଅବରୋଧ ଅତିକ୍ରମ କରି କହି ପକାଇଲା, "ଆପଣ ମନରୁ ଦୁଃଖ ଛାଡ଼ନ୍ତୁ, ମୁଁ ଆପଣଙ୍କର, ମୋତେ କହନ୍ତୁ, ମୁଁ କଣ କରିପାରେ ?" ସେ ଯେ କଣ କରିପାରେ ସେ ତାହା ଜାଣିଥିଲା । ନଟବର ଠିକ୍ ରୂପେ ଜାଣି ନ ଥିଲେ ସୁଦ୍ଧା ଅନୁମାନ କରିଥିଲେ । ମାତ୍ର କୃଷ୍ଣର କଥା ଶୁଣି ନଟବର ତୁଣ୍ଡ ଫିଟାଇ ଉତ୍ତରରେ କିଛି କହିଲେ ନାହିଁ, କି କୃଷ୍ଣ କାନରେ କିଛି ଶୁଣିଲା ନାହିଁ ।

ଅନେକ ସମୟ ଚାଲିଲା ପରେ ନଟବର ପୁନରାୟ କୃଷ୍ଣଙ୍କୁ କହିଲେ, "ବାପା ଖରା ହୋଇଲାଣି, ଘରକୁ ଯା । ବାପ ମା ଚାହିଁଥିବେ"—କହି ନଟବର ହାତରେ ନିଜର ଆଖି ପୋଛିଲେ । ଉଭୟ ଆଖି ଲୁହରେ ଛଳ ଛଳ ହେଉଥିଲା । କୃଷ୍ଣ କିଛି କହି-ପାରିଲା ନାହିଁ । ନଟବରଙ୍କ ଅନୁରୋଧ ଧ୍ୱନି ପ୍ରତିଧ୍ୱନି ତା କାନରେ ବାଜୁଥିଲା । ନଟବର ନିଜ ଘରଆଡ଼କୁ ଫେରୁଛନ୍ତି ଦେଖି ସେ ନୀରବ ଭାବରେ ବିଦାୟ ନେଇ ଚାଲିଗଲା ।

କୃଷ୍ଣ ଜଣେ ଖାନ୍‌ଦାନ୍ ଘରର ପିଲା । ବାପ ମା'ଙ୍କର ବଡ଼ ପୁଅ । ବୟସ ଷୋଳ ବର୍ଷ । ତା ତଳେ ଆଉ ଗୋଟିଏ ଭାଇ । ପଢ଼ା ଶୁଣା ବେଶ୍ କରିଛି । ତାର ଗୋଟିଏ ବିଶେଷତ୍ୱ ଯେ, ବିଦ୍ୟାଳୟର ସହପାଠୀମାନେ ସୂର୍ଯ୍ୟମୁଖୀ ଲତାର ଶ୍ରେଷ୍ଠ ଶ୍ରେଷ୍ଠ ଡାଳ ଫୁଲଗୁଡ଼ିକ ଅସଲ ଡେମ୍ଫର ଫୁଲ ନିକଟରେ ମୁଣ୍ଡ ନୁଆଇଁ ରହିଲା ପରି ତାକୁ ସମସ୍ତେ ମାନ ଚାଲନ୍ତି । ସକଳ ବିଷୟରେ ତାହା ସହିତ ପରାମର୍ଶ କରି କାର୍ଯ୍ୟ କରନ୍ତି । ତାର କଥା କହିବା, ହସିବା, ଚାଲିବା ରୀତି, ପିନ୍ଧିବା ଢଙ୍ଗ, ଅନ୍ୟାନ୍ୟ ପିଲାମାନଙ୍କର ଅନୁକରଣର ବିଷୟ । ତାର ରୂପ, ଗୁଣ ଓ ବିଭବ ଦେଖି ଏତେ ଅଳ୍ପ ବୟସରେ ମଧ୍ୟ କେତେ ଲୋକ ବିବାହ ପ୍ରସଙ୍ଗ ନେଇ

ଆସିଲେଣି । ବାପା ଚାଳଚଳନ ନ କରି ମା'ଙ୍କ କଥାରେ ଚଳିଥିଲେ କୃଷ୍ଣ ବର୍ଷେ ହେଲା କୁଞ୍ଜରପୁର ଜମିଦାରଙ୍କ ଘରେ ବଡ଼ ହୋଇ ଯାଉଛନ୍ତି ।

ନଟବରଙ୍କ ସଙ୍ଗେ କୃଷ୍ଣର ଦେଖାସାକ୍ଷାତ୍, କଥାବାର୍ତ୍ତା ସବୁ ଚନ୍ଦ୍ରପୁର ଗ୍ରାମର ତୋଟାରେ, ନଟବରଙ୍କ ବୁଲିଯିବା ବାଟରେ । ନଟବର ନିଜ ଘରୁ ଆସି ଚନ୍ଦ୍ରପୁର ନିକଟରେ ପହଞ୍ଚିଲେ କୃଷ୍ଣ ତାଙ୍କ ସହିତ ଯୋଗ ଦିଏ । ଉଭୟେ ବାଟ ଚାଲୁ ଚାଲୁ କଥାବାର୍ତ୍ତା ହୁଅନ୍ତି, ଆମ୍ବଗଛ ମୂଳେ ଛାଇରେ ବସି ଗଳ୍ପ କରନ୍ତି । ନଟବର ଜଣେ ବେଶ୍ ଜ୍ଞାନୀ ବ୍ୟକ୍ତି । କିନ୍ତୁ କୃଷ୍ଣ ତାଙ୍କ ଜ୍ଞାନରେ ମୁଗ୍ଧ ନୁହେଁ । ନଟବରଙ୍କର ଗୋଟିଏ ଗୁଣ କୃଷ୍ଣର ହୃଦୟରେ ଛାପ ମାରିଲା ପରି ଲାଗି ରହିଛି । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ଦିନେ ଶୀତକାଳରେ ଜଣେ ଦରିଦ୍ର ଲୋକ ଲୁଙ୍ଗା ହୋଇ ଶୀତରେ ଥରୁ ଥରୁ ହୋଇ ଯାଉଥିବାର ଦେଖି ସେ ନିଜର ଘୋଡ଼େଇହେଲାଟି ତାକୁ ଦେଇଦେଲେ । କୃଷ୍ଣ ତାହା ଦେଖିଲା । ଆଉଦିନେ ଦୁଇଟି ବାଳକ ପଡ଼ିଆରେ ଘାସପତ୍ର ଖାଇବା ନିମନ୍ତେ ତୋଳୁଥିଲେ । କୃଷ୍ଣ ସେମାନଙ୍କୁ ପଚାରିଲା, "ଏ ପତ୍ର କଣ କରିବ, ପିଲାଏ ?" ସେମାନେ ଉତ୍ତର ଦେବା ପୂର୍ବରୁ ନଟବର କହିଲେ, "ଖାଇବେ ବୋଲି ନେଉଛନ୍ତି । ଭଗବାନ ଏ ଲୋକଙ୍କୁ କି ଦୁଃଖରେ ରଖିଛନ୍ତି । ଏମାନଙ୍କ ତୁଳନାରେ ମୁଁ କେତେ ସୁଖରେ ଅଛି !" ଏହା କହି ନଟବର ଦୀର୍ଘ ନିଶ୍ୱାସ ପକାଇଲେ । ସଙ୍ଗେ ସଙ୍ଗେ ଆଖିରୁ ଲୁହଧାର ଗଡ଼ିପଡ଼ିଲା ।

ମନୁଷ୍ୟ ମନୁଷ୍ୟର ହୃଦୟରେ ଯେ ଗୁଣ ଖୋଜେ, କୃଷ୍ଣ ନଟବରଙ୍କଠାରେ ତାହା ପାଇଥିଲା । ସୁତରାଂ ସେ ତାଙ୍କଠାରେ

ନିଜର କୋମଳ ଜୀବନ ମନେ ମନେ ଅର୍ପଣ କରିଥିଲା; କିନ୍ତୁ ସେ ବଡ଼ ଲାଜକୁଳା ପିଲା । ନିଜର ବ୍ୟବହାରରେ କୌଣସି ପ୍ରକାର ପ୍ରଗଲ୍‌ଭତା ଦେଖାଇବା ତାହାର ସ୍ୱଭାବ-ବିରୁଦ୍ଧ । ସେଥିପାଇଁ ଏତେ ଦିନ ନଟବରଙ୍କ ସହିତ ତାହାର ପରିଚୟ ଓ ଘନିଷ୍ଠତା ହୋଇଥିଲେ ସୁଦ୍ଧା ସମଗୁଣବିଶିଷ୍ଟ ଚୁମ୍ବକ ଦୁଇଟି ପରସ୍ପରଠାରୁ ମୁହଁ ବୁଲାଇ ଦୂରକୁ ଘୁଞ୍ଚିଲାପରି ସେ ନଟବରଙ୍କଠାରୁ ଦୂରରେ ରହୁଥିଲା । ଏତେ ଦିନ ମଧ୍ୟରେ ଦିନେ ନଟବରଙ୍କ ଘରେ ସେ ପାଦ ପକାଇ ନାହିଁ । ନଟବର ତାକୁ ସାହସ କରି ଦିନେ ଡାକି ମଧ୍ୟ ନାହାନ୍ତି । ଆଜି ସେ ନଟବରଙ୍କ ଅନୁରୋଧ ଅନୁସାରେ ତାଙ୍କୁ ଛାଡ଼ି ଘରକୁ ଚାଲିଗଲା ଅବଶ୍ୟ, କିନ୍ତୁ ଘରେ ତାର ମନ ମାନିଲା ନାହିଁ । କଲର ପିତୁଳାପରି ସେ ଗାଧୋଇବା, ଖାଇବା ଆଦି ଦୈନନ୍ଦିନ କ୍ରିୟାମାନ କରିଗଲା । କିନ୍ତୁ ମନରେ ରହିଲା, ନଟବର ଯେ ଏତେ ଦୁଃଖରେ ଘରକୁ ଫେରିଲେ ସେ ଘରେ ଯାଇ କଣ କରିଥିବେ, କିପରି ରହିଥିବେ ।

ଦିନେ ସନ୍ଧ୍ୟାବେଳେ ନଟବର ଘର ମଧ୍ୟରେ ଶେଯରେ ପଡ଼ି ଗଡ଼ପଡ଼ ହେଉଛନ୍ତି, ଏପରି ସମୟରେ ଶୁଣିଲେ, ଦାଣ୍ଡରେ କିଏ ପଚାରିଲା, "ନଟବର ବାବୁଙ୍କ ଘରଟା କେଉଁଠି ?" ସେ ସେହି ସ୍ୱର ଅନେକ ଦିନ ଶୁଣିଛନ୍ତି । ମାତ୍ର ସେହି ସ୍ଥାନ ସହିତ ସେ ସ୍ୱର ସମ୍ପର୍କ ତାଙ୍କ ମନ ମଧ୍ୟରେ ଘଟିପାରିଲା ନାହିଁ । ସୁତରାଂ ଭୟରେ, ସନ୍ଦେହରେ ସେ ବାହାରକୁ ବାହାରି ଦେଖିଲେ, କୃଷ୍ଣ ଆସି ଦ୍ୱାର ନିକଟରେ ଉପସ୍ଥିତ । ସେଦିନ ପରେ ନଟବର ଆଉ ବୁଲିଗଲେ ନାହିଁ । କୃଷ୍ଣ ଗୋବିନ୍ଦପୁର ଆସି ନଟବରଙ୍କ ଘରେ ରୋଜ୍ ତାଙ୍କ ସହିତ ଦେଖା ଓ କଥାବାର୍ତ୍ତା କରିବାରେ ଲାଗିଲା ।

କୃଷ୍ଣ ନଟବରଙ୍କ ଘରକୁ ଯିବା ଆସିବା କଲାଦିନୁ ବିମଳାଙ୍କ ହୃଦୟ-ଧନୁରୁ ଗୁଣ ଅନେକ ପରିମାଣରେ ଖସିଗଲାଣି । ଏକେ ସେ ଜଣେ ପର ଲୋକ; ବିମଳା ସ୍ୱାମୀଙ୍କ ନିକଟରେ ଯେ ତାଣ୍ଡବ ନୃତ୍ୟ କରୁଥିଲେ, ତା ଆଗେ କରିବାକୁ ତାଙ୍କୁ ନାରୀର ସ୍ୱାଭାବିକ ଲଜ୍ଜାଶୀଳତା ଷାନ୍ତ କରି ରଖିଲା । ପୁଣି କୃଷ୍ଣଙ୍କୁ ନିଜର ସୌଜନ୍ୟ ଓ ସୁଗୁଣମାନ ଦେଖାଇବା ନିମିତ୍ତେ ତାଙ୍କର କ୍ରମଶଃ ଆକାଂକ୍ଷା ବଢ଼ିବାରେ ଲାଗିଲା । ସେ ପ୍ରଥମେ ପ୍ରଥମେ ତାଙ୍କୁ ଦେଖା ନ ଦେଇ ଲୁଚୁଥିଲେ, ମାତ୍ର କେତେକ ସମୟ ପରେ ବୁଝିଲେ ଯେ, ତାଙ୍କୁ ଦୂରରେ ରଖିବାଦ୍ୱାରା ସେ ନିଜ ହୃଦୟର ଗୋଟିଏ କ୍ଷୀଣ ସ୍ନେହ ଉତ୍ସକୁ ସ୍ୱାଧୀନ ଭାବରେ ରଖିବାକୁ ନ ଦେଇ ଚପି ରଖୁଛନ୍ତି ମାତ୍ର । କୃଷ୍ଣ ନଟବରଙ୍କୁ ସମ୍ବୋଧନ କରିବାରେ କୌଣସି ଆତ୍ମୀୟତା-ସୂଚକ ଶବ୍ଦର ବ୍ୟବହାର ନ କଲେ ସୁଦ୍ଧା, ବିମଳାଙ୍କୁ କେବେ "ମା" ବୋଲି ଡାକିବାକୁ ଆରମ୍ଭ କରିଛି, ସେ କଥା ତାର ମନେ ନାହିଁ । ବିମଳା ମଧ୍ୟ ତାକୁ ମାତୃସୁଲଭ ସ୍ନେହ ଦେଖାଇବାରେ କେବେ ତ୍ରୁଟି କରି ନାହାନ୍ତି ।

କୃଷ୍ଣ ବୟସରେ ପିଲା ହେଲେ କଣ ହେବ, ତାର ବିଷୟ-ବୁଦ୍ଧି ମନ୍ଦ ନୁହେଁ । ଖାନଦାନ ବର୍ଦ୍ଧିଷ୍ଣୁ ଘରେ ସେ ବଢ଼ିଛି; ବାପ-ମା'ଙ୍କର କାର୍ଯ୍ୟକୁଶଳତା ପୈତୃକ ଗୁଣରୂପେ ଯାହା ଜନ୍ମ ସଙ୍ଗେ ପାଇଥିଲା, ତାହା ସଂସାର କ୍ଷେତ୍ରରେ ଦେଖି ଶିଖି ଆହୁରି ବଢ଼ାଇଛି । ତାର ତତ୍ତ୍ୱାବଧାନରେ ନଟବରଙ୍କ କ୍ଷୁଦ୍ର କୁଟୀରର ସମ୍ପଦ ବଢ଼ି-ବାକୁ ଲାଗିଲା । ନଟବରଙ୍କ ପୈତୃକ ସମ୍ପତ୍ତି ଦୁଇମାଣ ଜମି ଥିଲା । ବିମଳା ପିତାଙ୍କଠାରୁ ଆଠ ମାଣ ଜମି ଯୌତୁକ ଆଣି ନଟବରଙ୍କ ଘରକୁ ଆସିଲାବେଳେ ମନେ କରିଥିଲେ, "ଚଷଣ ଦୃଷ୍ଟିରେ ଦଶ ମାଣ ଜମି କିଛି କମ୍ ନୁହେଁ । ମୋ ପେଟରୁ ଯେ ଧନ ଜନ୍ମ ହେବ

ସେ ନେଇ ଆଣି ଥୋଇ ପାରିଲେ, ମହାଜନ ସାଉକାର ନ ହେଉ ପଛକେ ଖାଇ ପିଇ ବେଶ୍ ସୁଖରେ ରହିବ ।" କିନ୍ତୁ ବିମଳାଙ୍କ ପେଟରୁ ତାଙ୍କର ସେ କଳ୍ପିତ ଧନ ଜାତ ହେଲା ନାହିଁ । ସୁତରାଂ ସେ ଦଶ ମାଣ ଜମି ଆଶ୍ରୟ ଲାଭ କରିବାକୁ ଉପଯୁକ୍ତ ପାତ୍ର ନ ପାଇ ଅନାଶ୍ରିତ ଓ ଦୈନ୍ୟଗ୍ରସ୍ତ ଅବସ୍ଥାରେ ପଡ଼ି ରହିଲା । ନଟବର ନିଜେ ଟିକିଏ ଭାବୁକ ଲୋକ । ସରସ୍ୱତୀ ସ୍ୱତଃ ତାଙ୍କଠାରେ ପ୍ରସନ୍ନ ହୋଇ ନିଜ ପେଡ଼ିରୁ ଗୋଟିଏ ଉଜ୍ଜ୍ୱଳ ଲେଖନୀ ତାଙ୍କ ହାତରେ ଦେଇଛନ୍ତି । ତାହା ଦେଖି ଲକ୍ଷ୍ମୀ କହୁଛନ୍ତି, "ଏ ଲୋକଟା- ମୋର ଶତ୍ରୁ ! ସରସ୍ୱତୀର ଆଶ୍ରୟ ନ ଛାଡ଼ିଲା ଯାଏ ମୁଁ ଏହାକୁ ମୋ ପାଦର ଧୂଳିକଣାଟିଏ ସୁଦ୍ଧା ଦେବି ନାହିଁ ।" ନଟବର ଲେଖା- ପଢ଼ାରେ ଅନେକ ସମୟ କଟାଉଥିଲେ । ଜମିବାଡ଼ି ଉଠିଆ କରିବା ତାଙ୍କୁ ଆଉଡ଼ୁ ନ ଥିଲା । ତା ପରେ ପୁଣି ଭାବୁଥିଲେ ଯେ କାହା ପାଇଁ ସମ୍ପତ୍ତି କରିବେ, ତାଙ୍କ ଅନ୍ତେ କିଏ ଭୋଗ କରିବାକୁ ରହିବ ?

କୃଷ୍ଣର ତତ୍ତ୍ୱାବଧାନରେ ଜମିବାଡ଼ି ଚାଷ ହେଲା । ଅନ୍ୟାନ୍ୟ ଆୟର ପନ୍ଥା ଫିଟିଲା । କୃଷ୍ଣ କେତେ ଦିନରେ ଖାଇବା ଓ ରାତିରେ ଶୋଇବାକୁ ନିଜ ଘରକୁ ଯିବାଆସିବା କରିବା ବନ୍ଦ କଲାଣି, ତାହା କାହାରି ମନରେ ନାହିଁ । ସେ ବର୍ତ୍ତମାନ ନଟବର ଓ ବିମଳାଙ୍କ ପୁଅ । ତାର ଜନ୍ମିତ ପିତାମାତା ପ୍ରଥମେ ପ୍ରଥମେ ତାକୁ ସ୍ୱାଧୀନତା ଦେଉଥିଲେ, ମାତ୍ର ଅପତ୍ୟସ୍ନେହର ସେ କ୍ରମେ ଏତେ ଲମ୍ବି ହେବାକୁ ଅବାଧରେ ଛାଡ଼ିଦେଲେ ଯେ ତାହା ପୁଣି ଟାଣିଲା ବେଳକୁ ଛିଣ୍ଡିଯିବାର ଦେଖିଲେ । ସୁତରାଂ ସେ ଦିନେ କୃଷ୍ଣକୁ ଡକାଇନେଇ କହିଲେ, "ବାପା ତୁ ତ ପିଲା ନୋହୁ ଯେ ତୋତେ ମୁଁ ଶାସନ କରିବି, ଘରେ ବାନ୍ଧି ରଖିବି । ଏ ସମ୍ପତ୍ତିରୁ ତୋର

ଭୋଗ ଅଛି । ମୁଁ ଆଖି ବୁଜିଲେ, ରାମ କଣ ତୋତେ ଏଥିରେ ଆଉ ପୂରାଇ ଦେବ ? ମୁଁ ବଞ୍ଚି ଥାଉ ଥାଉ ତୁ ତୋ ଭାଗକୁ ନେଇ ଯା । କୋଳର ପକ୍ଷୀ ଡେଣା ଲଗିଲେ ତ ଉଡ଼ିଯିବାର କଥା, ମୁଁ କଣ ପଞ୍ଜୁରୀରେ ବନ୍ଦ କରି ରଖିପାରିବ ?"

ନଟବରଙ୍କ ନିଜ ସାମାନ୍ୟ ସମ୍ପତ୍ତିର ଆୟରେ କୃଷ୍ଣର ପୈତୃକ ସମ୍ପତ୍ତିର ଅର୍ଦ୍ଧାଂଶ ମିଶି, ତାଙ୍କ ଘର ଧନ ଦଉଲତରେ ପୂରିଉଠିଲା । ବିମଳାଙ୍କ ହୃଦୟର ଦୁଃଖ ଦୂର ହୋଇଗଲା । ସେ କେତେ ବର୍ଷହେଲା ଶୂଳରୋଗ ଭୋଗୁଥିଲେ । ତାହାର ଉପଯୁକ୍ତ ଚିକିତ୍ସା ନୋହିବାରୁ ତାଙ୍କର ସ୍ୱାସ୍ଥ୍ୟ ଭାଜି ଯାଇଥିଲା । ନଟବର ସେ ବିଷୟରେ ଉଦାସୀନ ଥିଲେ । ସେ ନିଜର ଖାଇବା ପିନ୍ଧିବା କଥା ବୁଝନ୍ତି ନାହିଁ । ଖାଇବାକୁ ଗଲାବେଳେ ଦ୍ୱାରକୁ ଭିକାରୀ ଆସିଲେ ନିଜ ନିମନ୍ତେ ବଢ଼ା ହୋଇଥିବା ଖାଦ୍ୟ ତାକୁ ଦେଇ ଉପବାସରେ ରହନ୍ତି । ନିଜର ରୋଗ ବ୍ୟାଧି ହେଲେ; ବିରାଡ଼ି ପଡ଼ିଆର ଘାସ ଖାଇ ଆପଣାର ଚିକିତ୍ସା ଆପେ କଲା ପରି ସେ ଉପବାସଦ୍ୱାରା ତାହାର ଉପଶମ କରନ୍ତି । ସୁତରାଂ ବିମଳାଙ୍କ ପ୍ରତି ତାଙ୍କର କୌଣସି ବିରାଗ ନ ଥିଲେ ସୁଦ୍ଧା କେବଳ ନିଜର ଉଦାସୀନତା ଯୋଗେ ସେ ତାଙ୍କର ଚିକିତ୍ସା ନିମନ୍ତେ କୌଣସି ବ୍ୟବସ୍ଥା କରିପାରୁ ନ ଥିଲେ । ତା ପରେ ଅର୍ଥର ଅଭାବ ଆଉ ଗୋଟିଏ କାରଣ । ବର୍ତ୍ତମାନ ଆଉ ସେ ଅଭାବ ନାହିଁ । ନଟବର ଓ ବିମଳାଙ୍କ ମଧ୍ୟରେ ନଟବରଙ୍କ ଆଡ଼ୁ ଉଦାସୀନତା ଓ ବିମଳାଙ୍କ ଆଡ଼ୁ ବିରାଗର ଯେ ବ୍ୟବଧାନ ଥିଲା, ତାହାର ସ୍ଥାନ ବର୍ତ୍ତମାନ କୃଷ୍ଣ ଅଧିକାର କରିଛି । ଫଳରେ ବିମଳା ନଟବରଙ୍କ ଉଦାସୀନତା ଅନୁଭବ କରିବାର କାରଣ ଆଉ ନାହିଁ । ତାଙ୍କର ହୃଦୟ-କନ୍ଦରର ଯେ ଅଗ୍ନିକଣାଟି ତାଙ୍କୁ ସର୍ବଦା ରାଗ ଓ ଯନ୍ତ୍ରଣାରେ କୁହୁଳାଉଥିଲା,

ତାହା କୃଷ୍ଣର ମଧୁର ବ୍ୟବହାର ବାଟରେ ନିବର୍ତ୍ତିଯାଇଛି ।
ନଟବର ଓ ବିମଳା ଯେ ସ୍ୱାମୀ-ସ୍ତ୍ରୀ ଏବଂ ପରସ୍ପର ପ୍ରତି ପ୍ରେମ ଓ
କର୍ତ୍ତବ୍ୟରେ ଆବଦ୍ଧ, କୃଷ୍ଣ ମୋହନରୂପ ପୁତ୍ର ଡୋର ଯୋଗେ
ତାହା ସେମାନେ କ୍ରମେ ଅଧିକ ଅଧିକ ଅନୁଭବ କଲେ । ଉପଯୁକ୍ତ
ଚିକିତ୍ସାଦ୍ୱାରା ବିମଳାଙ୍କ ବହୁକାଳର ରୋଗ ଭଲ ହୋଇଗଲା ।
ମନର ପ୍ରଫୁଲ୍ଲତା ସହିତ ଶରୀରର ସ୍ୱାସ୍ଥ୍ୟ ମିଶିବାରୁ ବିମଳା ପ୍ରୌଢ଼
ବୟସରେ ମଧ୍ୟ ଯୌବନ ସମ୍ପଦରେ ମଣ୍ଡିତ ହେଲେ ।

କୃଷ୍ଣ ନଟବରଙ୍କ ଘରକୁ ଆସିବାର ଛ ବର୍ଷ ହୋଇଗଲାଣି ।
ତା ପାଇଁ ପାତ୍ରୀ ଠିକ୍ ହୋଇଛି । ବିବାହ, କେତେ କାଳ ଗଡ଼ ଗଡ଼
ଅତି ଅଳ୍ପ ଦିନରେ ଦୋଳ ପୂର୍ଣ୍ଣିମୀ ଦିନ ହେବ; ଏପରି ସମୟରେ
ଫଗୁଦଶମୀ ରାତିରେ ବିମଳାଙ୍କ ଗର୍ଭରୁ ଗୋଟିଏ ପୁତ୍ର ସନ୍ତାନ ଜନ୍ମ
ଲାଭକଲା । ସେ ଘଟଣାରେ ଘରେ ଅନେକ ଦିନ ଧରି ଏତେ
ଉତ୍ସବ ଆନନ୍ଦ ଲାଗିଲା ଯେ, କୃଷ୍ଣର ମଙ୍ଗଳକୃତ୍ୟ ଉତ୍ସବ ପାଇଁ
ଆଉ ଖାଲି ଜାଗା ରହିଲା ନାହିଁ । ଅଶୌଚ ଯୋଗେ ମଧ୍ୟ ତାହା
ବନ୍ଦ ରଖିବାକୁ ହେଲା । ସେଠାରୁ ତେର ମାସ ବିବାହ ଯୋଗ
ନ ଥିଲ ।

ଯାନମଣି କ୍ରମେ ବୟସରେ ବଢ଼ିବା ସଙ୍ଗେ ସଙ୍ଗେ ବିମଳାଙ୍କ
ହୃଦୟର ଏତେ ସ୍ଥାନ ଅଧିକାର କରିନେଲା ଯେ ସେଠାରେ ତିଷ୍ଠିବା
ନିମନ୍ତେ କୃଷ୍ଣ ନିଜକୁ ବିଶେଷ ଭାବରେ ସଙ୍କୁଚିତ କରିବାକୁ ପଡ଼ିଲା ।
ଏ ସଙ୍କୋଚନ କ୍ରିୟା ଅତି ବେଗରେ ବଢ଼ିବାକୁ ଲାଗିଲା । ସେଥିରେ
ଏପରି ଦିନ ଆସିଲା, ଯେତେବେଳେ କି କୃଷ୍ଣ ନିଜର ପରି ଅନୁଭବ
କରିବା, ତା ପକ୍ଷେ ଅସମ୍ଭବ ହୋଇପଡ଼ିଲା; ତଥାପି ସେ ମନ
ମଧ୍ୟରେ ଦୁଃଖ ବା ଈର୍ଷା ପ୍ରବେଶ କରିବାକୁ ଦେଲା ନାହିଁ । ସେ
ଭାବି ସ୍ଥିର କଲା ଯେ ବିମଳାର ସଂକୀର୍ଣ୍ଣ ମାତୃହୃଦୟ ସେ ଗୋଟିଏ

ପିଲା ଭଳିଟି ପାଇଁ ଛାଡ଼ିଦେଇ ନିଜେ ଘରଗୁଡ଼ିକର ବିସ୍ତୃତ ପରିସର ଅଧିକାର କରି ରହିବ । କିନ୍ତୁ ସେ ସବୁ ନିର୍ଜୀବ ଜଡ଼ ସ୍ଥାନ ମଧ୍ୟ ପ୍ରଥମେ ବିମଳାଙ୍କର ନୀରବ ଘୃଣା, ଦ୍ୱେଷ ଓ ପରେ ଶବ୍ଦବହୁଳ ତାଡ଼ନା, ଭର୍ତ୍ସନା, ନିନ୍ଦା, ତିରସ୍କାର ଆଦିରେ ଏତେ ପୂରିଆସିଲା ଯେ କୃଷ୍ଣ ଘର ଭିତରେ ଆଶ୍ରୟ ନ ପାଇ ପଦାରେ ଅପର ଲୋକଙ୍କ ପିଣ୍ଡାରେ, ଗଛମୂଳେ ଟିକିଏ ଶାନ୍ତିପୂର୍ଣ୍ଣ ସ୍ଥାନ ଖୋଜିବାକୁ ଲାଗିଲା ।

ବିବାହ ଯୋଗ ନ ଥିବାରୁ ତେରମାସ ସମୟ କେତେ ଦିନୁ ଗତ ହୋଇଗଲାଣି । କୃଷ୍ଣର ବିବାହ ପ୍ରସ୍ତାବ ନଟବର କେତେ ଥର କରି ବିମଳାଙ୍କ ଆପତ୍ତି ଯୋଗେ ଆଉ କାର୍ଯ୍ୟରେ ପରିଣତ କରିପାରି ନାହାନ୍ତି । ନିର୍ବନ୍ଧ ହୋଇ ସାରିଥିଲେ ମଧ୍ୟ କନ୍ୟାକର୍ତ୍ତା ନିଜ କନ୍ୟାକୁ ବରପୂର୍ବାକରି ରଖିବାପଛକେ ଶ୍ରେୟସ୍କର ମଣିଲେ, ତଥାପି କୃଷ୍ଣ ସହିତ ବିବାହ ସୂତ୍ରରେ ଆବଦ୍ଧ କରିବାକୁ ଆଉ ଆଗ୍ରହ ଦେଖାଇଲେ ନାହିଁ । ସେ ଆଗ୍ରହ ଦେଖାଇଥିଲେ ଏବଂ ବିମଳା ନଟବରଙ୍କ ପ୍ରସ୍ତାବରେ କୌଣସି ଆପତ୍ତି କରି ନ ଥିଲେ ମଧ୍ୟ ଅଲଙ୍ଘନୀୟ ଅନିଚ୍ଛା ଏବଂ ଆପତ୍ତି କୃଷ୍ଣଆଡ଼ୁ ପ୍ରକାଶ ପାଇଥାନ୍ତା । ସେ ତେରମାସ ସମୟ ମଧ୍ୟରେ କୃଷ୍ଣ ସ୍ଥିର କରିଥିଲା ଯେ ସେ ଆଉ ବିବାହ କରିବ ନାହିଁ, ବିଶ୍ୱନାଥପୁର ମକଦ୍ଦମଙ୍କ ଏକମାତ୍ର ଝିଅ ସୌଦାମିନୀର ମଧୁର ସ୍ମୃତି ହୃଦୟରୁ ପୋଛି ପକାଇ ଦେଇଥିଲା ।

ନଟବର ଦୁଃଖ, ଲଜ୍ଜା ଓ ସନ୍ତାପରେ ମି୍ରୟମାଣ । କୃଷ୍ଣପ୍ରତି ତାଙ୍କର ଯେ କେବଳ ଶୁଷ୍କ କର୍ତ୍ତବ୍ୟ ରହିଛି, ତା ନୁହେଁ । ତା ସହିତ ତାଙ୍କ ହୃଦୟର ସରସ, ମଧୁର ବନ୍ଧନ ଅଚ୍ଛେଦ୍ୟ ବୋଲି ସେ ଅନୁଭବ କରିଛନ୍ତି । ସୁତରାଂ ବିମଳାଙ୍କ ହୃଦୟରୁ କୃଷ୍ଣ ଯେତେ ଯେତେ ବିତାଡ଼ିତ ହୋଇ ଆସିଛି, ସେ ତା ପାଇଁ ନିଜର

ବିଶାଳ ହୃଦୟ-କନ୍ଦରର ସେତିକି ସେତିକି ପ୍ରସାରିତ କରିଛନ୍ତି । ତାଙ୍କ ଗୃହରେ କୃଷ୍ଣର ଦୁର୍ଗତି ଦେଖି, ଏକାନ୍ତରେ ଆଖିରୁ ଦୁଃଖ ଓ ଅନୁତାପର ଜାହ୍ନବୀ ସ୍ରୋତ ଢାଳୁଛନ୍ତି । ମନେ ମନେ କହୁଛନ୍ତି, "ମୁଁ କାହିଁକି ଜଗତରେ ତାର ବସିବାର ନିର୍ଦ୍ଦିଷ୍ଟ ସୁଦୃଢ଼ ଆସନର ଘରକେନ୍ଦ୍ର ମୋର ସାମାନ୍ୟ ସ୍ୱାର୍ଥମୟ ସ୍ନେହ-ରଜ୍ଜୁର ଆକର୍ଷଣରେ ବିଚଳିତ କଲି !" ସେ ନିଜକୁ ଧିକ୍କାର କରୁଛନ୍ତି, ଅଭିଶାପ ଦେଇଛନ୍ତି । କୃଷ୍ଣ ସବୁ ଅନୁମାନ କରୁଛି, ମାତ୍ର ଦିନେ ପଦେ ଦୁଃଖର କଥା ତାଙ୍କ ମୁହଁରୁ ଶୁଣୁ ନାହିଁ । କେବଳ ନଟବରଙ୍କ ନିମନ୍ତେ ସେ ଏକ ପ୍ରବଳ ବର୍ଦ୍ଧିଷ୍ଣୁ ଅଗ୍ନି ଶିଖାକୁ ଆଲିଙ୍ଗନ କରି ରହିଛି । କ୍ରମେ କ୍ରମେ ଜଳି କ୍ଷୟ ପାଉଅଛି । ତଥାପି ତାକୁ ଛାଡ଼ୁ ନାହିଁ କିମ୍ବା ନିଜର କଷ୍ଟ ଯନ୍ତ୍ରଣା ତିଳେ ମାତ୍ର ପ୍ରକାଶ କରୁ ନାହିଁ ।

କୃଷ୍ଣର ଜନ୍ମିତ ପିତା ଏ ମଧ୍ୟରେ ନିଜର ବଂଶ ପରମ୍ପରା ରକ୍ଷା କରିବା ନିମନ୍ତେ ରାମକୁ ଛିନ୍ନ ସଂସାର କ୍ଷେତ୍ରରେ ସହାୟଯୁକ୍ତ କରି ଇହଧାମ ଛାଡ଼ି ଚାଲି ଯାଇଛନ୍ତି । ଗଲାବେଳେ ରାମକୁ କହିଥିଲେ, "ବାପା, କୃଷ୍ଣ ପରି ପିଲା ଜଗତରେ ଦୁର୍ଲ୍ଲଭ । ସେଥିପାଇଁ ମୁଁ ତାର କୌଣସି କାର୍ଯ୍ୟରେ ଦିନେ ବାଧା ଦେଇ ନାହିଁ । ଦେଖିବୁ, ବିପଦ ଆପଦରେ ତାକୁ ହୃଦୟରୁ ପାଶୋରି ଦେବୁ ନାହିଁ । ସେ ତୋର ବଡ଼ ଭାଇ । ଅତଏବ ପିତୃତୁଲ୍ୟ ।" ପିତାଙ୍କ ଅନ୍ତିମ କାଳର ପରାମର୍ଶ ଯୋଗେ ହେଉ ବା ନିଜର ସ୍ୱାଭାବିକ ଭ୍ରାତୃପ୍ରେମ ଯୋଗେ ହେଉ, ଆପଣାର ପୈତୃକ ଧନସମ୍ପତ୍ତି ନଟବରଙ୍କ ଘରେ ଛାଡ଼ି ସୁଦ୍ଧା କୃଷ୍ଣଙ୍କୁ ନିଜ ଘରକୁ ଫେରିଯିବାକୁ ରାମ ସସ୍ତ୍ରୀକ ବାରମ୍ବାର ଅନୁରୋଧ କଲା । ମାତ୍ର "ମୋର ତ ସେଠାରେ କୌଣସି ଅସୁବିଧା ହେଉ ନାହିଁ," କହି କୃଷ୍ଣ ରାମର ଅନୁରୋଧ ରଖିଲା ନାହିଁ । ଏକ ଦିଗରେ ବିମଳା ଓ

ଅନ୍ୟ ଦିଗରେ କୃଷ୍ଣ, ଏ ଦୁହିଁଙ୍କ ମଧ୍ୟରେ ନଟବର ଦିନକୁ ଦିନ କିଂକର୍ତ୍ତବ୍ୟମୂଢ଼ ହୋଇ ରହିଲେ ।

ଦିନେ ବିମଳା ନଟବରଙ୍କୁ ଡାକି କହିଲେ, "ଆଚ୍ଛା, ଏ କି ନାଟ ତୁମର ? ପର ପିଲାଟାଏ ଘରେ ଆସି ଏତେ କାଣ୍ଡ କରିବ; ମୁଁ ଯେପରି ଏ ଘରେ କେହି ନୁହେଁ, ମୋ ଧାନମଣି କେହି ନୁହେଁ ! ଏ କଥା ମୁଁ ଆଉ ବେଶି ଦିନ ବରଦାସ୍ତ କରିବି ନାହିଁ, ଆଜଠାରୁ କହି ରଖୁଛି ।" ଏହା ଶୁଣି ନଟବର ତାଳୁରୁ ତଳିପା ପର୍ଯ୍ୟନ୍ତ ବିଛା କାମୁଡ଼ିଲା ପରି କଷ୍ଟ ଯନ୍ତ୍ରଣା ଅନୁଭବ କଲେ । ବିମଳାଙ୍କୁ କେତେକରି ବୁଝାଇଲେ, କେତେ ଉପଦେଶ ଦେଲେ । ବିମଳା କିଛି ଶୁଣିଲେ ନାହିଁ, ଶେଷରେ କହିଲେ, "ତେବେ ତୁମେ ତାକୁ ଧରି ଏ ଘରେ ରହ । ମୁଁ ମୋ ଧାନମଣିକି ଧରି ଭାଗ୍ୟ ଆଦରି ଚାଲିବି ।"

ବିମଳା ଧନମଣିଙ୍କ ଧରି କେଉଁଆଡ଼େ ଯିବେ ବୋଲି ପ୍ରକୃତରେ ଇଚ୍ଛା କରି ଯେ ଏକଥା କହିଥିଲେ, ତାହା ନୁହେଁ । ଅନ୍ତତଃ ତାଙ୍କ ପରବର୍ତ୍ତୀ କାର୍ଯ୍ୟକଳାପରୁ ତାହାର କୌଣସି ପ୍ରମାଣ ମିଳିଲା ନାହିଁ । କ୍ରମେ ନଟବର ଓ କୃଷ୍ଣ ଖାଇବାକୁ ପାଇଲେ ନାହିଁ । ଉପବାସରେ କାଳ କଟାଇବା ପାଇଁ ଘରକୁ ଆସିବାକୁ ବସିଲେ ମଧ୍ୟ ଘରେ ପ୍ରବେଶ କରିବାର ଉପାୟ ବନ୍ଦ ହେଲା । ସେଥିରୁ ବୋଧହେଲା, ନଟବରଙ୍କୁ ବିମଳା ସେ ଶେଷ କଥା କହିବାର ସାରମର୍ମ ଏହା ହିଁ ଥିଲା ଯେ, ସେ ଧାନମଣିଙ୍କ ଧରି ସେହି ଘରେ ରହିବେ ଏବଂ ନଟବର ଯଦି କୃଷ୍ଣକୁ ତା ଆସିବା ବାଟରେ ଏକା ଯିବାକୁ ପୁଣି ଛାଡ଼ି ନ ଦିଅନ୍ତି, ତା' ହେଲେ ସେ ତା ସହିତ ଯେଣେ ଇଚ୍ଛା ଯାଇପାରନ୍ତି । ସେ ଘର ନଟବରଙ୍କ ପୈତୃକ ବାସସ୍ଥାନ; ତାହା ଛାଡ଼ି ଯିବା ତାଙ୍କ ପକ୍ଷେ

କଷ୍ଟକର ହୋଇପାରେ । କୃଷ୍ଣର କାହା ସହିତ କୌଣସି ବନ୍ଧନ ନାହିଁ, ସମଗ୍ର ଜଗତର କାହାର ସଙ୍ଗେ ସେ ବନ୍ଧା ନୁହେଁ । କେବଳ ନଟବରଙ୍କ ହୃଦୟରେ ସେ ଆବଦ୍ଧ ହୋଇ ରହିଛି, ସେ ଅଦୃଶ୍ୟ ହାର ଫିଟାଇ ଚାଲିଯାଇ ପାରୁନାହିଁ । ବିଶାଳ ବନ ଦେଶର ମୃଗଶିଶୁ ଯେ ପଞ୍ଜୁରୀରେ ପଡ଼ିଛି, ତାହା ଛାଡ଼ିଯିବା ତା ପକ୍ଷେ ଅସମ୍ଭବ ହୋଇଛି, କୌଣସି ଲାଭର ଆଶାରେ ନୁହେଁ, କେବଳ ଏହି ବିଶ୍ୱାସ ଯୋଗେ ଯେ, ସେ ଚାଲିଗଲେ ପଞ୍ଜୁରିଆର ପଞ୍ଜୁରିଟି କାଳେ ଭାଙ୍ଗିଯିବ ।

କୃଷ୍ଣ ବହୁକାଳ ଭାବି ସ୍ଥିର କଲା ଯେ ସେ ସେହିଠାରେ ପଡ଼ିରହିବ, ସବୁ ଗାଳି, ଅବହେଳା, ଘୃଣା ପିଠିରେ ବହିନେବ; କିନ୍ତୁ ଚାଲିଯାଇ ନଟବରଙ୍କ ମନରେ କଷ୍ଟ ଦେବ ନାହିଁ । ସୁତରାଂ ସେ ଘରର ଚାକର ପରି ରହିଲା, ସବୁ କାମ ଦାମ କଲା; ବାହାରେ ଖାଇଲା, ପଦାରେ ଶୋଇଲା । ନଟବର ପ୍ରଥମେ ପ୍ରଥମେ ଆପତ୍ତି କରୁଥିଲେ, ମାତ୍ର କ୍ରମେ ଅଭ୍ୟସ୍ତ ହୋଇଗଲେ । ଅତଏବ କୃଷ୍ଣର ନିର୍ଦ୍ଧାରିତ ପନ୍ଥାରେ କୌଣସି ବାଧା ପଡ଼ିବାର କାରଣ ରହିଲା ନାହିଁ; କିନ୍ତୁ ବିମଳା ସେଥିରେ ମଧ୍ୟ ସନ୍ତୁଷ୍ଟ ହେଲେ ନାହିଁ । ସେ ଯାନମଣିଙ୍କ କୃଷ୍ଣ ପାଖକୁ ଛାଡ଼ିବାରେ ଘୋର ଆପତ୍ତି ଦେଖାଇଲେ । ତାଙ୍କୁ ସିନ୍ଦୁକର ଅମୂଲ୍ୟ ମଣିଟିପରି କେତେ ଯତ୍ନ ତଲ୍ଲ ପକାଇ ଘର ଭିତରେ ରଖିଲେ । ସତେ ଅବା କୃଷ୍ଣ ତାଙ୍କୁ ଚୋରାଇ ନେବାକୁ କେବଳ ସେଠାରେ ଦୁଃଖ କଷ୍ଟ ସହି ପଡ଼ିରହିଛି । ଶେଷରେ ଦିନେ ବିମଳା କହି ପକାଇଲେ, "କୁସୁନିଆ ଏ ଘରେ ରହିଛି ଖାଲି ମୋ ଦରଦ ପଦର ଯାନମଣିର ରକ୍ଷା ହେବାକୁ । ଦିନେ ଟିକିଏ ଚପି ମାରିଦେଲେ ନ ମୁଁ ଭିନ ପାଞ୍ଜିରୁ ଗଲି ।"

ବିମଳାଙ୍କର ଏକଥା ଶୁଣି, ତାହା ଯେ କି ପ୍ରକାର ଅସମ୍ଭବ ଓ ଅସଙ୍ଗତ ବୁଝି ନଟବର ପତ୍ନୀଙ୍କର ମୂର୍ଖତାରେ ଟିକିଏ ହସିଲେ ।

କିନ୍ତୁ ତାପରେ କୃଷ୍ଣର ଆଉ ଦେଖା ମିଳିଲା ନାହିଁ । ନଟବର ଅନେକ ଖୋଜାଇଲେ, କେହି ତାର ପତ୍ତା ପାଇଲେ ନାହିଁ । ସେ ନିରାଶ ହୋଇ ଦୀର୍ଘ ନିଶ୍ୱାସ ପକାଇଲେ, ଆଖିର ଲୁହଧାର ବୁହାଇ ବସି ରହିଲେ, କେତେଦିନ ଆହାର ନିଦ୍ରାରେ ଅବହେଳା କରି ଶରୀର ଶୀର୍ଣ୍ଣ କଲେ । ସେ ସମ୍ବାଦ ପାଇ ରାମ ମୃତବତ୍ ହୋଇ ପଡ଼ିଲା; କିନ୍ତୁ ବିମଳା ନିଜର ଭାରାକ୍ରାନ୍ତ ହୃଦୟ ହାଲୁକା କରି ନିଶ୍ଚିନ୍ତରେ ନିଶ୍ୱାସ ମାଇଲେ । ତାଙ୍କର ଦୀନମଣି ନିଷ୍କଣ୍ଟକ ହେଲା । କୃଷ୍ଣର ସମ୍ପତ୍ତିରେ ନଟବରଙ୍କ ଧନ ଦଉଲତ ଗଢ଼ା ହୋଇଛି । କୃଷ୍ଣ ଥିବାଯାଏ ଦୀନମଣି ସେଥିରେ ଶତ୍ରୁହୀନ ଉତ୍ତରାଧିକାରୀ ହେବା ଅସମ୍ଭବ । ଅତଏବ ବିମଳା କହିଲେ, "ଯାଇଛି ତ ପାପ, ପୁଣି ବଞ୍ଚିରହି ଫେରି ନ ଆସିଲେ ରକ୍ଷା ।"

କାଳସ୍ରୋତରେ ଦିନ ପରେ ଦିନ ବହି ଚାଲିଗଲା । ନଟବର ପୂର୍ବେ ବିମଳାଙ୍କଠାରୁ ଯେ ଦୁର୍ବ୍ୟବହାର ପାଉଥିଲେ, ତାହା ତାଙ୍କୁ ଆଉ ଭୋଗିବାକୁ ପଡ଼ୁନାହିଁ । ଘରେ ଧନ ସମ୍ପତ୍ତି ହୋଇଛି, ତାହା ଉପଭୋଗ କରିବାକୁ ଉପଯୁକ୍ତ ଜନ୍ମିତ ଉତ୍ତରାଧିକାରୀ ମିଳିଛି । ସୁତରାଂ ବିମଳାଙ୍କ ମନରେ ଆନନ୍ଦର ସୀମା ନାହିଁ, ନଟବର ମଧ୍ୟ କ୍ରମଶଃ ନୂତନ ବେଷ୍ଟନୀରେ ନିଜକୁ ଅଭ୍ୟସ୍ତ କରିନେଲେଣି । କୃଷ୍ଣର ସ୍ମୃତି ତାଙ୍କ ଜୀବନରେ ଏକ ଐତିହାସିକ ଘଟଣା ହୋଇ ରହିବା ଉପରେ ବସିଲାଣି । ସେ ଘଟଣା ମନେପଡ଼ିଲେ ଅବଶ୍ୟ ଅତର୍କିତ ଭାବରେ ତାଙ୍କର ନାସିକାରେ ଏକ ଉଷ୍ଣ ଦୀର୍ଘଶ୍ୱାସର ଧାରା ବହିଯାଏ; କିନ୍ତୁ ଦୀନମଣି ତାଙ୍କ ହୃଦୟରେ କୃଷ୍ଣର ଶୂନ୍ୟସ୍ଥାନ ପ୍ରାୟ ପୂର୍ଣ୍ଣ କରି ବସିଛି । କେବଳ ଦୀନମଣି ଗୋପୀଭାଷାର "କୃଷ୍ଣ ଆସିବେ ବୋଲି

ଗଲେ ଭଣ୍ଡି'' ପଢ଼ିଲେ ନଟବର ମନେ ମନେ କହନ୍ତି, "କାହିଁ, ବୋଲି ଭଣ୍ଡି ଗଲି କେଉଁଠି ? ନ କହି ନ ପୋଛି ଚାଲିଗଲି । ଯେତେ ହେଲେ ତ ପର, ଯାଉ ।"

ଧାନମଣି ପରେ ବିମଳାଙ୍କର ଆଉ ଗୋଟିଏ ପୁତ୍ର ଲାଭ ହେଲା । ଅନେକ ଦିନ ଚାଲିଗଲା । ଧାନମଣିର ବୟସ ଅଠର ବର୍ଷ । ସେ ବର୍ତ୍ତମାନ ଜଣେ ଅତି ଉଗ୍ର ଯୁବକ । ସଂସାରରେ ଭଲମନ୍ଦ ପ୍ରତି ତା'ର ଭ୍ରୂକ୍ଷେପ ନାହିଁ । ବଡ଼ ସାନ ଭେଦ ତା ନିକଟରେ ନାହିଁ । କାହାକୁ ମାନିବାର ଇଚ୍ଛା ତା ହୃଦୟରେ ସ୍ଥାନ ପାଇ ପାରୁ ନାହିଁ । ସେ ଏକ ପ୍ରକାର ନିରଙ୍କୁଶ ହୋଇ ବଢ଼ିଛି । କୁମ୍ଭାରର ମାଟି ପିଣ୍ଡୁଳା ଆକାରରେ ଷଷ୍ଠୀଦେବୀଙ୍କଠାରୁ ତାକୁ ପାଇଲା ପରେ ବିମଳା ନିଜ ହାତରେ ତାକୁ ଗଢ଼ିଛନ୍ତି । ସେ ମାଆଙ୍କୁ ମାରେ, ବାପାଙ୍କ ବୋଲି ମାନେ ନାହିଁ । କୃଷ୍ଣର ସ୍ମୃତି ଉପରେ ପଦାଘାତ କଲେ । ଗୋବିନ୍ଦପୁରର ଲୋକେ କୃଷ୍ଣକୁ ମନେ ପକାଇ ତାର ପ୍ରଶଂସାର କଥାପଦେ ଅଧେ କହିଲେ ତାର ହୃଦୟ ଈର୍ଷାରେ ଜଳିଉଠେ ।

ଦିନେ ଜଣେ ଭିକାରୀ ନଟବରଙ୍କ ଦ୍ୱାରକୁ ଭିକ ମାଗି ଆସିଥିଲା । ଧାନମଣି ତା ଉପରେ ରାଗି ତାକୁ ମାରୁ ମାରୁ ପ୍ରାଣରେ ମାରିପକାଇଲା । ଚାରିଆଡ଼େ ଖବର ହୋଇଗଲା, ନଟବରଙ୍କ ବଡ଼ପୁଅ ନରହତ୍ୟା କରିଛି । ସେ ମରହଟ୍ଟା ଅମଳ । ଆଜିକାଲି ପରି ଯେତେବେଳେ ଆଇନ ଅଦାଲତ ନ ଥିଲା । ଭୋନ୍‌ସଲାଙ୍କ ଅଧୀନରେ ରଜାମାନେ ରାଜ୍ୟଶାସନ କରୁଥିଲେ । ରାଜା ନରହତ୍ୟା ସମ୍ବାଦ ପାଇ ଦଣ୍ଡବିଧାନ କଲେ—ନଟବରଙ୍କ ବଡ଼ପୁଅ ଫାଶୀ ହେବ ।

ନଟବର ବର୍ତ୍ତମାନ ଖୁବ୍ ବୁଢ଼ା, ବିମଳା ବୁଢ଼ୀ । ନଟବର, ବିମଳା ଓ ଧନମଣି ଧଇଁଚାଇଁଆସିଲେ । ନଟବର ଓ ବିମଳା କାନ୍ଦରେ ଆକାଶ ପୃଥିବୀ ଫଟାଉଥାନ୍ତି । ନିଜର ଭାଗ୍ୟକୁ ଦୋଷ ଦେଇ କପାଳରେ ହାତ ପିଟୁଛନ୍ତି । ଧନମଣିକୁ ରକ୍ଷା କରିବା ନିମନ୍ତେ ବ୍ୟାଧ ନିକଟରେ ହରିଣୀ ନିଜର ଶିଶୁଶାବକର ପ୍ରାଣ ରଖିବାକୁ ବୃଥା ଚେଷ୍ଟା କଲାପରି ଦୁହେଁ ନାନା ଉପାୟ କରୁଛନ୍ତି; ତାକୁ କୁଣ୍ଢେଇ ଧରୁଛନ୍ତି, ନୟନର ଅଶ୍ରୁଜଳରେ ତାର ମୁଣ୍ଡ ଭିଜାଉଛନ୍ତି, ମାତ୍ର ସେଥିରେ କିଛି ଫଳ ହେଲା ନାହିଁ । ଧନମଣି ଭୁଲାରେ ଗଢ଼ା ନିଜର ପ୍ରତିମାଟି ପରି ଥରି ଥରି ଫାଶୀଖମ୍ବ ପାଖକୁ ଗଲା ।

ଧନମଣିକୁ ଚିରକାଳଲାଗି ବିଦାୟ ଦେଲାବେଳେ କୃଷ୍ଣର ଅର୍ଦ୍ଧବିସ୍ମୃତ ସ୍ମୃତି ନଟବରଙ୍କ ମନରେ ଆସି ବିଜୁଳି ଚମକ ପରି ମୁହୂର୍ତ୍ତକ ମଧ୍ୟରେ ଖେଳିଗଲା । କୃଷ୍ଣ ତାଙ୍କ ଘରୁ ବିଦାୟ ନେଇଯାଇ ଆପଣାର ପିତୃଗୃହକୁ ନ ଫେରି ବନ ପ୍ରାନ୍ତରରେ ବୁଲି ଅନେକ ବର୍ଷ କଟାଇ, ଆଜି ଆସି ଦରବୁଢ଼ା ହୋଇଛି । ସୁଖ ଦୁଃଖ, ହସ କାନ୍ଦ ମଧ୍ୟରେ ତା ଜୀବନରେ ପ୍ରଭେଦ ସେ ଭୁଲିପାଇଛି । ଆଖିକୁ ଭଲ ଦିଶୁ ନାହିଁ । କାନକୁ ସ୍ପଷ୍ଟ ଶୁଣାଯାଉ ନାହିଁ । କିନ୍ତୁ ଫେରିବେଳେ ନଟବରଙ୍କ ବଡ଼ପୁଅ ଫାଶୀ ହେବା ବିଷୟ ଗ୍ରାମ ପ୍ରାନ୍ତରରେ ଲୋକେ ଗଳ୍ପ କଲେ, ସେ ତାହା ଶୁଣିପାରିଲା । କହିଲା, "ନଟବରଙ୍କ ବଡ଼ପୁଅ ! ସେ ତ ମୁଁ ।" ତାର ଗୋଟିଏ ସ୍ୱପ୍ନ ହଠାତ୍ ଭାଜିଗଲା । ମୁହୂର୍ତ୍ତକ ପାଇଁ ସେ ଚମକିପଡ଼ିଲା ।

ଧନମଣି ଫାଶୀଖମ୍ବରେ ଚଢ଼ିବାକୁ ଯାଉଛି, ହଠାତ୍ ଦୂରରୁ କିଏ ଜଣେ ଧାଇଁଆସି ଡାକ କହିଲା, "ସବୁର କର,

ଫାଶିଆଲ !" ସମସ୍ତେ ବୁଲି ଚାହିଁଲେ, ସ୍ୱର ପୁନରାୟ ଶୁଣାଗଲା । "ନଟବରଙ୍କ ବଡ଼ପୁଅ ମୁଁ, ମୁଁ ଫାଶୀ ନେବି ।" ମୁଣ୍ଡରେ ଜଟା, ଚିବୁକରେ ଦାଢ଼ି, ଶୀର୍ଣ୍ଣ ଅଥଚ କୃଷ୍ଣ, କପାଳ କୁଞ୍ଚିତ ହୋଇପଡ଼ିଛି । ଦୃଷ୍ଟିରେ ବିଷାଦର ଭାବ ପ୍ରକଟିତ । ନବାଗତ ଧନମଣିକୁ ହଟାଇଦେଇ ନିଜେ ଫାଶିଖମ୍ବରେ ଚଢ଼ିବାକୁ ବାହାରିଲା । ଫାଶିଆଲ ଦେଖି ଅବାକ୍ । ଉପସ୍ଥିତ ଲୋକେ କହିଲେ, "ଏ କ'ଣ ପାଗଳ !"

ନଟବର ଚିହ୍ନିଲେ, ସେ ତାଙ୍କର ତିରିଶ ବର୍ଷ ବୟସ ବେଳର ସେହି ଅପାଙ୍ଗିତ ପୁତ୍ର କୃଷ୍ଣମୋହନ । ତାଙ୍କର ସମୁଦାୟ ପ୍ରାଚୀନ ସ୍ମୃତି କ୍ଷଣକ ମଧ୍ୟରେ ଜାଗ୍ରତ ହୋଇଉଠିଲା, ତା ପ୍ରତି ପୂର୍ବ ସ୍ନେହର ଉତ୍ସ ପ୍ରବଳ ବେଗରେ ବହିବାକୁ ଲାଗିଲା । ସେ ଧାଇଁଯାଇ ଫାଶିଖମ୍ବରୁ କୃଷ୍ଣକୁ ପେଲି ପକାଇଦେଇ କହିଲେ, "କିଏ ତୁ ଧୂର୍ତ୍ତ କହୁଛୁ ମୋର ବଡ଼ପୁଅ ବୋଲି !ପଳା ଏଠାରୁ, ମୁଁ ଚିହ୍ନେ ନାହିଁ ତୋତେ ।" ମାତ୍ର କିଛି ଫଳ ହେଲା ନାହିଁ । ଫାଶିଆଲ ନିଜର ଅଭ୍ୟସ୍ତ କାର୍ଯ୍ୟ ଶୀଘ୍ର ଶେଷ କରି ଫେରିବାକୁ ବ୍ୟସ୍ତ ହୋଇପଡ଼ିଲା । କୃଷ୍ଣମୋହନ ପୁନରାୟ ଫାଶିଖମ୍ବରେ ଚଢ଼ିବାରୁ, ସେ ତାହାର ଶେଷକୃତ୍ୟ ସମାପନ କଲା । ଘଣ୍ଟା ବାଜିଗଲା । ନଟବର ଗ୍ରୀଷ୍ମକାଳୀନ ଅପରାହ୍ନ ବର୍ଷା ସମୟରେ ଝଡ଼ ତୋଫାନ ଓ ଜଳଧାରା ପରି ପ୍ରାଣର କୋହ ଗୁଡ଼ିଏ ଯନ୍ତ୍ରଣାରେ ଆହତ ହୋଇ ତଳେ ଲୋଟିବା ସଙ୍ଗେ ସଙ୍ଗେ ଫାଶିଖମ୍ବରେ ଶବ ମୁହଁରେ କଳାକନା ପଡ଼ିଗଲା ।

———

# ଲଛମନ ଜୀ

## ( ୰ ବାଙ୍କନିଧି ପଟ୍ଟନାୟକ )

"ଖାଇ ପିଇ ଦିନରେ ଥରେ କଚେରୀକୁ ଗଲେ ତମର କାମ ଛୁଟି । ମୁଁ ପଛେ ଏଣେ ହଟହଟା ହୋଇ ମରୁଥାଏଁ । ତମର ବା ଏତେ ଭାବନା ଚିନ୍ତା କିଆଁ ? ଉପରେ ପଡ଼ିଲେ ସିନା କାଟନ୍ତା ?"

ବଳରାମ ବାବୁ ସ୍ତ୍ରୀଙ୍କ କଥା ଶୁଣି ମୁହଁରୁ ଗୁଡ଼ାଖୁ ନଳଟା ଟିକିଏ କାଢ଼ି ଦେଇ କହିଲେ, "କଣ, କଥା କଣ ?"

"ନାହିଁ; କିଛି ନାହିଁ । ତମେ କି ଦିନ କି ରାତି ବହି ଖଣ୍ଡେ ଧରି ଆରାମଚୌକିରେ ପଡ଼ି ପଡ଼ି ଭଡ଼ ଭଡ଼ କରି ଗୁଡ଼ାଖୁ ଟାଣୁଥାଅ. ଏସବୁ ଛୋଟ କଥାରେ ତମର ଲୋଡ଼ା କ'ଣ ଥାଏ ? ଘରେ କ'ଣ ହେଲା ନ ହେଲା, ଏଥିରେ ତମର ଯାଏ ଆସେ କେତେ ?"

ବଳରାମ ବାବୁ ଈଷତ୍ ହାସ୍ୟ କରି କହିଲେ, "ଗୋଟାଏ ଲମ୍ବ ମୁଖବନ୍ଧ ନ ଦେଇ କଥାଟାଏ କହିବାକୁ ସ୍ତ୍ରୀଜାତିକୁ ଶାସ୍ତ୍ରରେ ମନା ଅଛି ନା କଣ ? ଏଇଟା କେଉଁ ଋଷିଙ୍କ ଅଭିଶାପ ?"

"ହଁ, ଯେତେ ଦୋଷ ସବୁ ତ ସେଇ ମାଇପି ଜାତିର । ପୁରୁଷକୁ ଗଢ଼ି ସାରି ଯେତେକ ମନ୍ଦଗୁଣ ବଳିଲା ତାକୁ ନେଇ ତ ବିଧାତା ଗୋଟିଏ ସ୍ତ୍ରୀ ଗଢ଼ି ଦେଲା ଯେ, ସେ ଚିରକାଳ ପୁରୁଷର ଦାସୀ ହୋଇ ରହିବ । ଆଉ ଜୀବନର ଯେତେ ଦୁଃଖ କଷ୍ଟ, ଗାଳି ଅପମାନ, ନିନ୍ଦା ଅପନିନ୍ଦା, ସବୁ ନିଜର ଭାଗ୍ୟ ବୋଲି ମୁଣ୍ଡ ପତେଇନେବ । ଆଖି ପାଣି ଗୋଡ଼ରେ ମାରି ସେ ଦଶ ମାସ କାଳ ପିଲାକୁ ପେଟରେ ଧରିବ, ପୁଣି ପିଲାର ଭଲ ମନ୍ଦରେ ପଦେ ପାଟି

ଫିଟେଇଲେ ତାର ଆଉ ରକ୍ଷା ନାହିଁ । କଏ, ତମେ ବାହାଘର କଲେ କର, ନ କଲେ ନାହିଁ, ମୋର ସେଥିରେ କଣ ଅଛି ? ଘରେ ଯୁବା ଝିଅକୁ ରଖି ବୁଢ଼ୀ କଲି ବୋଲି ମୋତେ ତ ଆଉ କେହି ନିନ୍ଦା କରିବେ ନାହିଁ । ତେବେ ମୋ ମନ ମାନିପାରେ ନାହିଁ ବୋଲି ପଦେ କହିଦିଏଁ । ଏଣିକି—"

"କାହାର ? ମାଳୀର ବାହାଘର କଥା କହୁଛ ?

''ନ ହେଲେ ଆଉ କଣ ତୁମର ଦୁଇଟି ବାହା କଥା ?"

"କାହିଁକି ? ହେଲେ ବା ମନ୍ଦ କଣ ହୁଅନ୍ତା ? ମୁଁ ତ ଆଉ ସେପରି ପାକୁଆ ବୁଢ଼ା ହୋଇଯାଇ ନାହିଁ ! ତମେ କଣ କହୁଚ ? ଆଉ ମଧ୍ୟ ବୟସ ସଙ୍ଗେ ମନର ସମ୍ପର୍କ କଣ ?

ବଳରାମ ବାବୁଙ୍କ ସ୍ତ୍ରୀ ସେଦିନ ରସିକତା ଉପଭୋଗ ବା ଉପହାସ କରିବା ମିଜାଜରେ ନ ଥିଲେ; ତେଣୁ ସେ, "ଯା ମଁ, ତମ ଇଚ୍ଛା ଯାହା କର. ମୁଁ ଆଉ ଏଥିରେ ପାଟି ଫିଟେଇବି ନାହିଁ, କହି ମୁହଁ ବୁଲାଇ ଗରଗର ହୋଇ ସେଠାରୁ ଚାଲିଗଲେ ।

ବଳରାମ ବାବୁ ବାହାରେ ଏପରି ଔଦାସୀନ୍ୟ ଦେଖାଇଲେ ସୁଦ୍ଧା ସେଦିନ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ପୁଅ ବାହାଘର ନୁହେଁ ଯେ ଦି ବର୍ଷ ଗୁଡ଼ା ଚାରିବର୍ଷ ଡେରି ହେଲେ କିଛି କ୍ଷତି ନାହିଁ । ମାଳୀ ଏବେ ଚୌଦ ପାରହୋଇ ପନ୍ଦର ବର୍ଷରେ ଗୋଡ଼ ଦେଲାଣି । ଆଉ ବଡ଼ ଜୋର ବର୍ଷଟାଏ । ତା ଛଡ଼ା ସେ ନିଜ ଘର ପାଖରେ ଥିଲେ ଯୋଗାଡ଼ଯନ୍ତ୍ର କରି ଶୀଘ୍ର ଗୋଟାଏ କିଛି କିନାରା କରିଦିଅନ୍ତେ । ଏତେ ଦୂରରେ, ସମସ୍ତ ବନ୍ଧୁ-ବାନ୍ଧବଙ୍କଠାରୁ ବିଚ୍ଛିନ୍ନ ଥାଇ ସେ କିପରି ଏ ଗୂଢ଼ ସମସ୍ୟାର ମୀମାଂସା କରିବେ, କିଛି ବୁଝିପାରିଲେ ନାହିଁ । ବିଶେଷତଃ ମାଳୀ ତାଙ୍କର ଦୁଇ ପୁଅରେ ଏକମାତ୍ର କୋଳପୋଛା ଗେହ୍ଲାବସନ୍ତ ଝିଅ;

ତାଙ୍କୁ କା ଯେ କପଟ ଘର ବର ସବୁ ଭଲ କରି ନ ଦେଖି ନ ଶୁଣି ନିର୍ମମଭାବରେ ଦାରିଅଙ୍କୁ ଫେଲାଦେବେ ! ଏହିପରି ନାନା ଭାବନାରେ ବାହାରର ଗୁଡ଼ାଖୁ ଧୂଆଁରେ ସେ ଯେପରି ଘର ମଧରେ ଅଦୃଶ୍ୟ ହୋଇଗଲେ, ଭିତରର ଚିନ୍ତାଜାଲରେ ମଧ ସେହିପରି ନିଜର ମନକୁ କେଉଁଠାରେ ହରାଇ ବସିଲେ । କିଛିକ୍ଷଣ ପରେ ହଠାତ୍ ଉଠିପଡି ସେହିଲାଗେ ନିଜର ବନ୍ଧୁ ଓ ଆତ୍ମୀୟମାନଙ୍କ ନିକଟକୁ ଏ ସମ୍ବନ୍ଧରେ କେତେ ଖଣ୍ଡ ପତ୍ର ଲେଖି ପଠାଇଲେ ।

ଏହାର ଗୁଟିଏଦିନ ପରେ ବଳରାମ ବାବୁ କୌଣସି ସରକାରୀ କାର୍ଯ୍ୟ ଉପଲକ୍ଷେ ବାଙ୍କିପୁର ଯାତ୍ରା କଲେ ।

ସନ୍ଧ୍ୟାର ସ୍ନିଗ୍ଧ କିରଣରେ ନଦୀତୀରସ୍ଥ ବୃକ୍ଷଗୁଡ଼ିକ ଝିଟିକୁଛି ଏବଂ ଗଙ୍ଗା ଖରତର ଉଜ୍ଜ୍ୱଳ ସଲିଳ ବିଭବରେ ଉନ୍ମତ୍ତ ହୋଇ କଳକଳ ଢଳଢଳ ହୋଇ ବହିଯାଉଅଛି । ବାଙ୍କିପୁରରେ ବଳରାମବାବୁ ପ୍ରକୃତିର ଏ ରମଣୀୟ ଦୃଶ୍ୟ ଦେଖି ଦେଖି ଏକାଗ୍ର ମନରେ ନଦୀକୂଳରେ ପରିଭ୍ରମଣ କରୁଅଛନ୍ତି; ଏପରି ଅପରିଚିତ ସ୍ଥଳରେ ହଠାତ୍ ପଦେ ଓଡ଼ିଆ କଥା ଶୁଣି ସେ ଚକିତଭାବରେ ଛିଡ଼ାହୋଇ ରହିଲେ । ଆହା ! କି ମଧୁର ସେ ସ୍ୱର ! କି ପ୍ରାଣସ୍ପର୍ଶୀ ସେ ଭାଷା ! ସେ ମନେକଲେ, କାହିଁକି ? ଆଜିଯାକେ ତ ମୋର ମାତୃଭାଷା ସଙ୍ଗେ ଏପରି ନିବିଡ଼ ପରିଚୟ ହୋଇ ନ ଥିଲା ? ସେ ଯେ ମୋର ହୃଦୟର ପ୍ରତ୍ୟେକ ତାର ସହିତ ଏପରି ଘନିଷ୍ଠ ଭାବରେ ବନ୍ଧା, ମୁଁ ତ କାହିଁ ଜାଣି ନ ଥିଲି । ଧିନ୍ୟରେ ସ୍ୱଦେଶ ! ତୁ ପୁଣି ଆପଣା ଜନଙ୍କୁ ଏତେ ଆପଣାର କରିଦେଉ ? ପଦେ କଥାର ଏତେ ଶକ୍ତି ? କେଉଁ କବିତାରେ ଏତେ ମାଧୁରୀ

ଅଛି ? କେଉଁ ସଙ୍ଗୀତରେ ଏତେ ମୋହ ଅଛି ? କେଉଁ ଭାଷାରେ ମାଦକତା ଅଛି ?)

ବଳରାମବାବୁ ପଛକୁ ବୁଲି ଦେଖିଲେ ମୂଲିଆ ଶ୍ରେଣୀର ଗୋଟିଏ ଲୋକ ଜଣେ ଭଦ୍ରଲୋକ ସଙ୍ଗେ କଥାଭାଷା ହେଉଛି । ଭଦ୍ରଲୋକଟି ମଧ୍ୟ ତା ସଙ୍ଗେ ଓଡ଼ିଆରେ କଥାବାର୍ତ୍ତା କରୁଛନ୍ତି । ବେଶଭୂଷା ଚାଲିଚଳନ ଦେଖି ତ ଏ ଭଦ୍ରଲୋକଟି ଓଡ଼ିଶାର ଲୋକ ବୋଲି ବୋଧହେଉ ନାହିଁ, ଅଥଚ ଏପରି ଶୁଦ୍ଧ ଓଡ଼ିଆ କହୁଅଛି କିପରି ? ଦେଖାଯାଉ, ଥରେ ପଚାରି ବୁଝିଲେ କ୍ଷତି କ'ଣ ?

"ଆପଣଙ୍କ ନିବାସ କଅଣ ଓଡ଼ିଶାରେ ?"

ଭଦ୍ରଲୋକ—"ଆଜ୍ଞା, ଆପଣଙ୍କ ଅନୁମାନ ଠିକ୍ । ଘର ଓଡ଼ିଶାରେ, ଆପଣଙ୍କ ନିବାସ ?"

ବ—"ସେହି ଓଡ଼ିଶାରେ, ଆପଣ ଏଠାରେ କିଛି କାର୍ଯ୍ୟ କରନ୍ତି ?

ଭ—"ଆଜ୍ଞା, ମୁଁ ଏଠାରେ ସବ୍‌ଡେପୁଟି କାର୍ଯ୍ୟ କରେ ।"

ବ—"ଆପଣ ଏଠାରେ କେତେ ବର୍ଷ ହେଲା କାର୍ଯ୍ୟ କଲେଣି ?

ଭ—"ନାଁ, ମୁଁ ଏହି ବର୍ଷ ସେ କାର୍ଯ୍ୟରେ ନିଯୁକ୍ତ ହୋଇ ଏଠାରେ ଶିଖିବା ଲୋକ ରୂପେ କାର୍ଯ୍ୟ କରୁଅଛି । ତେବେ ପାଟନାରେ ଆସି ରହିବାର ଅନେକ ବର୍ଷ ହୋଇଗଲାଣି ।"

ବ—"ତାହାହେଲେ ଏଥିପୂର୍ବରୁ ଆପଣ ଏଠାରେ କ'ଣ କରୁଥିଲେ ?"

ଭ—"ମୋର ପିତା ଏଠାରେ ଓକିଲ କରୁଥିବା ସମୟରେ ମୁଁ ତାଙ୍କ ପାଖରେ ରହି ପଢ଼ାଶୁଣା କରୁଥିଲି । ତାଙ୍କର କାଳ ହେବା ପରେ ମଧ୍ୟ ମାତା ପ୍ରଭୃତିଙ୍କୁ ଘରେ ଛାଡ଼ିଦେଇ ଆସି

ପିତାଙ୍କର ତ୍ୟକ୍ତ କେତେକ ସମ୍ପତ୍ତିବାଡ଼ି ବିଷୟ ବୁଝାସୁଝା କରିବା ଲାଗି ମୋତେ ଏଠାରେ ରହିବାକୁ ପଡ଼େ । ସେହିଦିନଠାରୁ ମୁଁ ଏଠାନର ରହି ଏହିଠା କଲେଜରୁ ବି. ଏ. ପାସ୍ କଲି ଏବଂ ତା'ପରେ ଏ କୃଷ୍ଣକରଖଣ୍ଡ ହେବାରୁ ଏପର୍ଯ୍ୟନ୍ତ ରହିବାକୁ ପଡ଼ୁଅଛି ।

ବ—"ଆପଣଙ୍କ ପିତାଙ୍କ ନାମ କ'ଣ ?"

ଭ—ଗୋପୀନାଥ ଦାସ ।"

ବ—"ଏଁ, ଆପଣଙ୍କ ଘର ଓଡ଼ିଶାର କେଉଁ ସ୍ଥାନରେ କହିଲେ ?"

ଭ—"ଆମ ଘର କଟକ ଜିଲ୍ଲା କଲ୍ୟାଣପୁର ।"

ବଳରାମ ବାବୁ ବିସ୍ମୟରେ କହିଲେ—"ତମ ନାମ ଲକ୍ଷ୍ମୀଧର ନା ?"

ଭ—"ଆପଣ କପରି ମୋ ନାମ ଜାଣିଲେ ?"

ବଳରାମ ବାବୁ ଆନନ୍ଦରେ ଗଦ ଗଦ୍ ହୋଇ କହିଲେ, "ମୁଁ କପରି ଜାଣିଲି ? ଗୋପୀ ମୋର ଅନ୍ତରଙ୍ଗ ବନ୍ଧୁ ଥିଲା । ମାଇନରଠାରୁ ଆରମ୍ଭ କରି କଲେଜ ପର୍ଯ୍ୟନ୍ତ ଏକ ସଙ୍ଗେ ପଢ଼ିବା, ଏକସଙ୍ଗେ ଖେଳିବା ସବୁ କରି ଆସିଅଛୁଁ । ସେ ପାଟନା ଆସିବା ଦିନଠାରୁ ଆମର ଆଉ ତେତେ ଚିଠିପତ୍ରର ଆଦାନ ପ୍ରଦାନ ନ ଥିଲା । ତମର କଣ ମନେ ନାହିଁ ? ନା, ସେତେବେଳକୁ ନିତାନ୍ତ ପିଲା, କୁଆଡ଼େ ମନେ ଥିବ ? ମୁଁ ତମକୁ କେତେ ଥର କାଖ କରି ଗେଲ କରିଛି, କେତେ ଥର ଆମ ଦୁହିଁ ଆଉ ତମେ ସାଙ୍ଗ ହୋଇ ଖେଳିଛ ।"

ଲକ୍ଷ୍ମୀଧର ଟିକିଏ ଇତସ୍ତତଃ ହୋଇ କହିଲେ, "ଆଜ୍ଞା, ମୁଁ ଏ ପର୍ଯ୍ୟନ୍ତ ସୁଦ୍ଧା ଭଲ କରି ଚିହ୍ନିପାରିଲି ନାହିଁ ।"

ବ—"କଲ୍ୟାଣପୁର ନିକଟରେ ଭାତପଡ଼ା ଗ୍ରାମର ନାମ ଶୁଣିଛ ? ଆମ ଘର ସେହିଠାରେ । ମୋ ନାମ ବଳରାମ ମହାନ୍ତି । ମୁଁ ବର୍ତ୍ତମାନ ଗୟାରେ ଥାଏଁ । ଏଠା କୋର୍ଟରେ ଟିକିଏ କାର୍ଯ୍ୟ ଥିବାରୁ ଆସିଥିଲି ।"

ଭ—"ପିତାଙ୍କ ମୁଖରୁ ଅନେକ ଥର ଆପଣଙ୍କ ନାମ ଶୁଣିଛି । ଭାତପଡ଼ାଟା ଆପଣଙ୍କର ଜମିଦାରୀ ନା ?"

ବ—"ହଁ ।"

ଭ—"ଆପଣ ଗୟାରେ କଣ କରନ୍ତି ?"

ବ—"ମୁଁ ସେଠାକାର ଫାଷ୍ଟ ମୁନ୍‌ସଫ୍ । ଆଚ୍ଛା, ତମେ ତ ଏଠାରେ ଅଛ, ସେଠାରେ ତମର ଇଲାକା ବାଡ଼ି କିଏ ବୁଝାସୁଝା କରେ ?"

ଭ—'ଆମ ମାମୁଁ ସବୁ ବୁଝାବୁଝି କରନ୍ତି । ତାଙ୍କ ଘର ଆମ ଗ୍ରାମରେ । ପିତାଙ୍କ କାଳ ହେବା ପରେ ସେ ଆମ ଘରର ମୁରବି । ସେ ନ ଥିଲେ ବୋଧହୁଏ ମୋତେ ଅନେକ ଦିନୁଁ ପଢ଼ାପଢ଼ି ବନ୍ଦ କରିବାକୁ ହୋଇଥାନ୍ତା ଏବଂ ମୁଁ ଏଠାରେ ମଧ୍ୟ ରହିପାରି ନଥାନ୍ତି ।

ବ—"ତମ ମାମୁଁ କିଏ ?"

"ତାଙ୍କ ନାମ ମାୟାଧର ଦାସ । ସେ କଲେକ୍‌ଟରୀର ହେଡ଼୍ କ୍ଲର୍କ ।"

ବ—"ଓଃ, ମାୟାଧର ବାବୁ ତମ୍ଭ ମାମୁଁ, ସେ ତ ଅତି ଭଲ ଲୋକ, ସେ କାହିଁକି ନ କରନ୍ତେ ? ହୁଁ ।" କିଛିକ୍ଷଣ ନୀରବ ରହି ପୁନରାୟ କହିଲେ, "ତମ ବଡ଼ଭାଇର ଆଦ୍ଧ ହୋଇଗଲାଣି ତ ?"

ଲକ୍ଷ୍ମୀଧର ତଳକୁ ମୁହଁ ପୋତି ଟିକିଏ ସଙ୍କୁଚିତ ଭାବରେ କହିଲେ, "ନା ।"

ବ—"କାହିଁକି ଏ ପର୍ଯ୍ୟନ୍ତ ହୋଇନାହିଁ ଯେ ?"

ଭ—"ମୋ ସେଥିରେ କଣ ଅଛି, ମାମୁଁ ଯାହା କରିବେ ।"

ଉଭୟ କିଛିକ୍ଷଣ ନିସ୍ତବ୍ଧ ରହିଲ ପରେ ଲକ୍ଷ୍ମୀଧର କହିଲେ, ଆପଣ ଏଠାରେ କେଉଁଠି ଅଛନ୍ତି ?"

ବ—"ମୁଁ ସୁରେନ୍ଦ୍ର ବାବୁଙ୍କ ବସାରେ ଅଛି ।"

ଲକ୍ଷ୍ମୀଧର ଟିକଏ ବିନୀତ ଭାବରେ କହିଲେ, "କାଲି ଆମ ବସାରେ ଆପଣଙ୍କର ଗଣ୍ଡାଏ ପ୍ରସାଦସେବା ହୁଅନ୍ତା । ମୁଁ କାଲି ସକାଳେ ଯାଇ......"

ବ—"ମୁଁ ତ ଆଜି ୯ଟା ଗାଡ଼ିରେ ଚାଲିଯିବି । ହଉ, ସେଥିରେ କଣ ଅଛି ? ତମେ ତ ଆମର ଆପଣାର ଲୋକ । ଏଣିକି ଆସିଲେ ମୁଁ ପଛକେ ତମ ବସାରେ ରହିକରି ଯିବି । ଯାହାହେଉ, ତମ ସଙ୍ଗେ କଥାବାର୍ତ୍ତା କରି ମୁଁ ଅତ୍ୟନ୍ତ ସୁଖୀ ହେଲି । ଭଗବାନ ତମର ମଙ୍ଗଳ କରନ୍ତୁ । ହଉ, ତମେ ତେବେ ଯାଅ, ମୋତେ ଶୀଘ୍ର ଷ୍ଟେସନକୁ ଯିବାକୁ ହେବ ।"

ବଳରାମ ବାବୁ ଲକ୍ଷ୍ମୀଧରଠାରୁ ବିଦାୟ ନେଇ ବସାକୁ ଫେରିଲେ ଏବଂ ମନେ ମନେ ଭାବିଲେ, ପିଲାଟି ଦେଖିବାକୁ ଯେପରି ଉତ୍ତମ, ସ୍ୱଭାବଟି ମଧ୍ୟ ସେହିପରି ଶାନ୍ତଶିଷ୍ଟ । ଆମ ମାଳତୀ ପାଇଁ ଯୋଗାଡ଼ କଲେ ତ ବେଶ ହୁଅନ୍ତା । ଅଦୃଷ୍ଟରେ ଥିଲେ ହୋଇପାରେ, କିଏ କହିବ ? ଦେଖାଯାଉ ଭଗବାନଙ୍କର କି ଇଚ୍ଛା !

ବଳରାମ ବାବୁ ସେଦିନ ରାତ୍ରି ଗାଡ଼ିରେ ଗମ୍ଭୀରକୁ ଫେରି-ଆସିଲେ ।

ବଳରାମ ବାବୁଙ୍କ ପତ୍ର ପାଇ ମାୟାଧର ବାବୁ ଭାବିଲେ, ହେଲେ ବା ମନ୍ଦ କଣ ! ଲକ୍ଷ୍ମୀଧରର ତ ଆସି ବିବାହର ବୟସ ହୋଇଗଲା, ଆଉ ଏଣିକି ବିଳମ୍ବ କରିବା ଅନୁଚିତ । ଏହାଠାରୁ ତ ଆଉ ଗୋଟାଏ ଭଲ ଘର ମିଳିବ ନାହିଁ । ତାଙ୍କର ଅନେକ ଧନର

ଗୋଟାଏ ଖାନ୍‌ଦାନ୍ ଘର । ବିଷୟ ଆଶ୍ରୟର ତ କଥା ନାହିଁ, ତା ଛଡ଼ା ବଳରାମ ବାବୁ ନିଜେ ଜଣେ ଓଡ଼ିଶାର ଗଣ୍ୟମାନ୍ୟ ବ୍ୟକ୍ତି । କନ୍ୟାଟି ମଧ୍ୟ ଖୁବ୍ ରୂପବତୀ—ଏ ତ ମୋର ନିଜର ଦେଖିବା କଥା; ପୁଣି ଶୁଣିଲି, ଲେଖାପଢ଼ା ବେଶ୍ ଶିଖିଛି ଓ ଆଉ ସବୁ ବିଷୟରେ ମଧ୍ୟ ଯୋଗ୍ୟ । ବିଶେଷତଃ ଭଲ ଜାତି ବୋଲି ସେମାନଙ୍କର ଅନେକ ଦିନରୁ ଗୋଟାଏ ଅଭିମାନ ଥିଲା, ଆମ୍ଭମାନଙ୍କ ସଙ୍ଗେ ବନ୍ଧୁ କରିବାକୁ ସେମାନେ ଯେପରି ଗୋଟାଏ ମର୍ଯ୍ୟାଦା ହାନି ବୋଲି ମନେ କରୁଥିଲେ । ନାଁ, ଏ ସୁଯୋଗ ଛୁଡ଼ିବାର ନୁହେଁ । ବାକି ଲକ୍ଷ୍ମୀଧର କଥା । ସେ ଯେପରି ଶାନ୍ତ ସୁଶୀଳ, ସେ ଯେ ମୋ କଥାରୁ ବାହାର ହେବ ଏପରି ତ ବୋଧ ହେଉ ନାହିଁ । ତେବେ ଆଜିକାଲିକାର ଶିକ୍ଷିତ ବର, ତାର ମତ ଅନୁଯାୟୀ କାର୍ଯ୍ୟ କରିବା ଭଲ । ଏହିପରି ନାନା କଥା ଭାବି ମାୟାଧର ବାବୁ ଲକ୍ଷ୍ମୀଧର ନିକଟକୁ ସେଦିନ ଏ ବିଷୟରେ ଖଣ୍ଡେ ପତ୍ର ଲେଖିଲେ ଏବଂ ସେଠାରେ ସମ୍ବନ୍ଧ କରିବା ଯେ ସର୍ବତୋଭାବରେ କର୍ତ୍ତବ୍ୟ ଓ ବାଞ୍ଛନୀୟ ଏ କଥା ମଧ୍ୟ ଉଲ୍ଲେଖ କଲେ ।

ବଳରାମ ବାବୁଙ୍କୁ କଣ ଲେଖିବେ କିଛି ସ୍ଥିର କରି ନ ପାରି ପରିଶେଷରେ ମନେକଲେ, ଆମର ତ ବରପକ୍ଷ, ଏତେ ଭୟ, ଉଦ୍‌ବେଗର କାରଣ କଣ ? ଏହା କହି ତାଙ୍କ ନିକଟକୁ ଖଣ୍ଡେ ପତ୍ର ଲେଖିଲେ । ପତ୍ରର ସାର ମର୍ମ ଏହି—ମୋର ଏ ପ୍ରସ୍ତାବରେ ଆଦୌ ଅମତ ନ ଥିଲେ ସୁଦ୍ଧା ଲକ୍ଷ୍ମୀଧରର ମତାମତ ନ ବୁଝି ମୁଁ ବର୍ତ୍ତମାନ କିଛି ସ୍ଥିର କରିପାରୁ ନାହିଁ । ଯଥାସମୟରେ ସମସ୍ତ ବିଷୟ ବୁଝିପାରିବେ ।

ମାୟାଧର ବାବୁଙ୍କ ପତ୍ର ପାଇ ଲକ୍ଷ୍ମୀଧର ବିଶେଷ ଅଗ୍ରହ କରିବାର ବୋଧ ହେଲନାହିଁ । ତଥାପି ମାମୁଁଙ୍କ ମନରକ୍ଷା କରିବାଲାଗି ସେ ତାଙ୍କ ନିକଟକୁ ଏହିପରି ଖଣ୍ଡେ ପତ୍ର ଲେଖିଦେଇ ନିଶ୍ଚିନ୍ତ ହୋଇ ରହିଲା ।

ଶ୍ରୀଚରଣକମଳେଷୁ—

ଆପଣଙ୍କର ପତ୍ର ପାଇ ସମସ୍ତ ବିଷୟ ଅବଗତ ହେଲି । ଏସବୁ ବିଷୟରେ ମୋର ମତ ବୁଝିବା ଅନାବଶ୍ୟକ । ଆପଣଙ୍କ କଥା ମୋର ସର୍ବଦା ଶିରୋଧାର୍ଯ୍ୟ । ଆପଣ ଚିରକାଳ ଆମ୍ଭମାନଙ୍କର ଶୁଭାକାଙ୍କ୍ଷୀ ଏବଂ ଆମ୍ଭମାନଙ୍କ ମଙ୍ଗଳ ନିମନ୍ତେ ଆପଣ ଯେ ସମସ୍ତ ବିଷୟ ଭଲକରି ବିବେଚନା କରି କାର୍ଯ୍ୟ କରିବେ, ଏଥିରେ ମୋର ଲେଶମାତ୍ର ସନ୍ଦେହ ନାହିଁ ।

ବର୍ତ୍ତମାନ ଟିକିଏ ବ୍ୟସ୍ତ ଥିବାରୁ ବେଶି କିଛି ଲେଖିପାରିଲି ନାହିଁ; ପରେ ସବିଶେଷ ଲେଖିବି । ଇତି ।

ନିବେଦକ ସେବକ

ଲକ୍ଷ୍ମୀଧର

ଲକ୍ଷ୍ମୀଧର ପତ୍ର ପାଇ ମାୟାଧର ବାବୁ ଏକପ୍ରକାର ନିଶ୍ଚିନ୍ତ ହୋଇଗଲେ ଏବଂ ସେହିଦିନ ଏ ବିଷୟରେ ବଳରାମ ବାବୁଙ୍କ ନିକଟକୁ ପତ୍ର ଲେଖିଲେ ।

ବିବାହର ଦିନଇତ୍ୟାଦି ସ୍ଥିରହୋଇଯିବା ପରେ ମାୟାଧର ବାବୁ ଲକ୍ଷ୍ମୀଧରକୁ ଲେଖିଲେ—

ଆଗାମୀ ମାଘ ମାସ ଶୁକ୍ଳପକ୍ଷ ସପ୍ତମୀ ଅର୍ଥାତ୍ ଜାନୁୟାରି ମାସ ୨୩ ତାରିଖରେ ବିବାହର ଦିନ ଧାର୍ଯ୍ୟ ହୋଇଛି । ଅନ୍ତତଃ ୧୫ ଦିନ ପୂର୍ବରୁ ଯେପରି ତୁମ୍ଭେ ଏଠାକୁ ଆସ, ସେ ବିଷୟରେ

ଚେଷ୍ଟା କରିବ । ବିବାହ କଥା ଶୁଣି ସମସ୍ତେ ସୁଖୀ ଅଛନ୍ତି, ଇତ୍ୟାଦି ।

ଏତେ ଶୀଘ୍ର ଏ କଥାର ନିଷ୍ପତ୍ତି ହୋଇଯିବ ବୋଲି ଲକ୍ଷ୍ମୀଧର ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ସେ ମନେକରିଥିଲେ ମୁଁ ପ୍ରକାଶ୍ୟ ଭାବରେ କୌଣସି ପ୍ରତିବାଦ ନ କଲେ ସୁଦ୍ଧା ପତ୍ରରେ ଯେଉଁ କ୍ଷୀଣ ଇଙ୍ଗିତ ଦେଇଅଛି, ସେଥିରେ ମୋର ଅନ୍ୟ କିଛି ପ୍ରସାଦ ନ ପାଇବା ପର୍ଯ୍ୟନ୍ତ ମାମୁଁ କିଛି କରିବେ ନାହିଁ, ଅନ୍ତତଃ ଶେଷ ଜବାବ ଦେବା ପୂର୍ବରୁ ସେ ନିଶ୍ଚୟ ମତେ ସମ୍ବାଦଦେବେ; କିନ୍ତୁ ହଠାତ୍ ଏପରି ପତ୍ର ପାଇ ଲକ୍ଷ୍ମୀଧର ବଡ଼ ବିଷମ ସମସ୍ୟାରେ ପଡ଼ିଲେ । କି ଉତ୍ତର ଦେବେ, କିଛି ଠିକ୍ କରିପାରିଲେ ନାହିଁ । ଶେଷରେ ନାନା ଚିନ୍ତା ପରେ ସେ ତାଙ୍କର ବାଲ୍ୟସଖା ବିନୋଦ ନିକଟକୁ ନିଜର ମନୋଭାବ ବ୍ୟକ୍ତ କରି ନିମ୍ନୋକ୍ତ ପ୍ରକାରରେ ଖଣ୍ଡେ ପତ୍ର ଲେଖିଲେ—

ଭାଇ ବିନୋଦ—

ତମେ ବୋଧହୁଏ ବଳରାମ ବାବୁଙ୍କ କନ୍ୟା ସହିତ ମୋର ବିବାହ ହେଉଥିବା କଥା ଶୁଣିଥିବ । ମୁଁ କାଲି ମାମୁଁଙ୍କ ପତ୍ରରୁ ଏ ଖବର ପାଇ ଆନନ୍ଦିତ ହେବି କି ଦୁଃଖିତ ହେବି, କିଛି ଭାବି-ପାରୁ ନାହିଁ । ବଳରାମ ବାବୁ ଅବଶ୍ୟ ଆମ ଦେଶରେ ଜଣେ ବିଶିଷ୍ଟ ଲୋକ ଏବଂ ତାଙ୍କ ସହିତ ସମ୍ପର୍କ କରିବା ଗୋଟାଏ ଗୌରବ ବିଷୟ ହୋଇପାରେ; କିନ୍ତୁ ଯାହା ଭାଗ୍ୟ ସହିତ ମୋ ଭାଗ୍ୟ ଚିରଦିନ ଅଚ୍ଛେଦ୍ୟ ବନ୍ଧନରେ ବନ୍ଧା ହେବ, ତାକୁ ଥରେ ଆଖିରେ ଦେଖିବା କଥା ଦୂରରେ ଥାଉ, ତାର ସ୍ୱଭାବ ଚରିତ୍ର, ଦୋଷ ଗୁଣ ସମ୍ବନ୍ଧରେ ମୁଁ ବିନ୍ଦୁ ବିସର୍ଗ ଜାଣେ ନାହିଁ ବା ଜାଣିବାର ସୁବିଧା ସୁଦ୍ଧା ନାହିଁ । ଏପରି ପର-ଚକ୍ଷୁରେ କନ୍ୟା

ଦେଖି ବିବାହ କରିବା କେତେଦୂର ସମୀଚୀନ, ତାହା ତମେ ବୁଝିପାରୁଥିବ । ମୁଁ ଅବଶ୍ୟ ସାହେବମାନଙ୍କ ପରି କୋର୍ଟସିପ୍ କରି ବିବାହ କରିବାକୁ କହୁ ନାହିଁ, ତେବେ ଏପରି ଗୋଟିଏ ପବିତ୍ର ସମ୍ପର୍କକୁ ବ୍ୟବସାୟ ବାଣିଜ୍ୟ ପରି କେବଳ ଚିଠି ଜବାବରେ ସ୍ଥିର କରିବାର ମୁଁ ପକ୍ଷପାତୀ ନୁହେଁ । କେଜାଣି ଅବା ସେ ରୂପ ଗୁଣରେ ଅସାମାନ୍ୟା; କିନ୍ତୁ ସେଇଟା ମୋର ସୌଭାଗ୍ୟ ଉପରେ ନିର୍ଭର କରେ; ପୁଣି ଅନ୍ୟ ଦିଗର ସମ୍ଭାବନା ତ କମ୍ ନୁହେଁ ! ତେବେ ଏପରି ଗୋଟାଏ ଗୁରୁତର ବିଷୟକୁ କେବଳ ସ୍ଫୂର୍ତ୍ତି ଖେଳର ହାରଜିଣ ଉପରେ ଛାଡ଼ିଦେବା ଉଚିତ କି ?

ଯାହାହେଉ] ତମକୁ ମୋର ବିଶେଷ ଅନୁରୋଧ ଯେ, ତମେ କନ୍ୟା ସମ୍ବନ୍ଧରେ ଯାବତୀୟ ବିଷୟ ଭଲ କରି ବୁଝି ସରଳ ଭାବରେ ମୋ ନିକଟକୁ ଲେଖିବ । ମୁଁ ତମର ପ୍ରତି-କଥାରେ କେତେଦୂର ଆସ୍ଥା ସ୍ଥାପନ କରେ, ତାହା ତମେ ଜାଣ । ଏ ବିଷୟରେ ମୋର ଭବିଷ୍ୟତର ସୁଖ ଦୁଃଖ ତମ ହାତରେ । ମୁଁ ମଧ୍ୟ ଏସବୁ ବିଷୟ ଘରେ କାହା ନିକଟକୁ ଲେଖିପାରୁ ନାହିଁ । ଅଭିଭାବକମାନେ ଯେ ଆମ୍ଭର ମଙ୍ଗଳ ବା ସୁଖ ନ ଖୋଜନ୍ତି, ତାହା ମୁଁ କହୁ ନାହିଁ, ତେବେ ସେମାନେ ଯଦି ଯୁବକର ହୃଦୟ ଦେଇ ବିଚାର କରୁଥାନ୍ତେ, ତାହାହେଲେ ଅନେକ ଅକଲ୍ୟାଣର ହାତରୁ ରକ୍ଷା ମିଳୁଥାନ୍ତା ।

ମୁଁ ଏତିକି ଲେଖିଦେଇ ନିଶ୍ଚିନ୍ତ ନୁହେଁ । ଯଦି ସୁବିଧା ହୁଏ ମୁଁ ପୂର୍ବରୁ ଯାଇ ତମ ସହିତ ପରାମର୍ଶ କରିବି ଓ ଅନ୍ୟାନ୍ୟ ବିଷୟ ବିଶଦ ଭାବରେ ବୁଝିବାକୁ ଚେଷ୍ଟା କରିବି । ବର୍ତ୍ତମାନ ପ୍ରାୟ ଦୁଇ ମାସରୁ ଅଧିକ ସମୟ ଅଛି;ଆବଶ୍ୟକ ହେଲେ ଏହା ମଧ୍ୟରେ ଭଙ୍ଗା-ଗଢ଼ା ଅକ୍ଳେଶରେ ହୋଇପାରେ ।

ଏ ବିଷୟ ଅନ୍ୟ କାହାରି ଆଗରେ ଯେପରି ପ୍ରକାଶ ନ ହୁଏ । ଆଶାକରେ, ତୁମମାନଙ୍କର ସମସ୍ତ ମଙ୍ଗଳ । ଇତି ।

ତୁମର ସ୍ନେହର
ଲକ୍ଷ୍ମୀଧର

ମନିଅର୍ଡ଼ର ଡାକରେ ପକାଇ ଦେଇ ଲକ୍ଷ୍ମୀଧର ଟିକିଏ ଆଶ୍ୱସ୍ତ ହେଲେ; କିନ୍ତୁ ମନରେ ଆଉ ଶାନ୍ତି ରହିଲା ନାହିଁ ।

(୭)

ବିବାହର ତିଥି ପ୍ରାୟ ମାସକରୁ ଊର୍ଦ୍ଧ୍ୱ ଅଛି । ଏତେ ପୂର୍ବରୁ ତ ଆଉ ବଳରାମ ବାବୁଙ୍କୁ ଛୁଟି ମିଳିବ ନାହିଁ । ଏଣୁ ସେ ତାଙ୍କର କନିଷ୍ଠ ପୁତ୍ର ନରିକୁ କହିଲେ, ତୁମେ ପିଲାମାନଙ୍କୁ ନେଇ ଆଗରୁ ଚାଲି ଯା, ମୁଁ ପଛେ ୧୦।୧୫ ଦିନ ପୂର୍ବରୁ ଛୁଟି ନେଇ ଏକା ଚାଲିଯିବି । ଆଉ ବିଳମ୍ବ କଲେ ତ ହେବ ନାହିଁ । ପୂର୍ବରୁ ଯାଇ ସବୁ ଆୟୋଜନ କରିବାକୁ ହେବ । ତା'ଛଡ଼ା ସ୍ତ୍ରୀକାର ସମ୍ପତ୍ତି ଯିବା ଆସିବା ସମସ୍ତ ନିକଟ ହୋଇଗଲା । ତୁମେମାନେ ନ ଗଲେ ଗୋବିନ୍ଦ ଏକା କଣ କରିବ ?''

ଏ ପ୍ରସ୍ତାବରେ ସମସ୍ତେ ସମ୍ମତ ହେଲେ ଏବଂ ରବିବାର ଦିନ ଯାତ୍ରା କରିବାର ସ୍ଥିର ହେଲା । ବଳରାମ ବାବୁଙ୍କ ସ୍ତ୍ରୀର ପୂର୍ବରୁ ଉଦରାମୟ ପୀଡ଼ା ଥିଲା । ବାହାରିବାର ସବୁ ଠିକ୍ ହେଉଅଛି; ଏହି ସମୟରେ ତାଙ୍କର ଉଦରଙ୍କର ବେଦନା ଆରମ୍ଭ ହେଲା । ଏପରି ଅବସ୍ଥାରେ ଏତେ ସୁଦୀର୍ଘ ପଥ ରେଳରେ ଯିବାକୁ କେହି ପରାମର୍ଶ ଦେଲେ ନାହିଁ । ଏଣୁ ବାଧ ହୋଇ ତାଙ୍କର ଯିବା ସ୍ଥଗିତ ରହିଲା । ବଳରାମ ବାବୁ କହିଲେ, "ତୁମେମାନେ ଚାଲିବେ ଯାଅ । ମୁଁ ପରେ ତାଙ୍କୁ ନେଇକରି ଯିବି । ଅନ୍ୟମାନଙ୍କ

କଥା ଅଲଗା', ମାଳୀ ତ ଆଉ ବେଶୀ ଦିନ ରହିପାରିବ ନାହିଁ । ତାର ଟିକିଏ ଆଗରୁ ଯିବା ନିତାନ୍ତ ଆବଶ୍ୟକ । ତାର ମା ଯାଇ-ଥିଲେ ଅବଶ୍ୟ ଟିକିଏ ସୁବିଧା ହୋଇଥାନ୍ତା, କିନ୍ତୁ କଣ କରାଯିବ ? ଦୈବୀ ଘଟଣା ଉପରେ କାହାର ଗୁଣ ଅଛି ?''

ସେଦିନ ସନ୍ଧ୍ୟାବେଳେ ମାଳୀ ଓ ନିଜ ସ୍ତ୍ରୀ ହେମକୁ ନେଇ ହରି ଷ୍ଟେସନ ଅଭିମୁଖରେ ଯାତ୍ରା କଲେ ।

କୁଲିଦ୍ୱାରା ଜିନିଷପତ୍ର ସବୁ ଗାଡ଼ିକୁ ପଠାଇଦେଇ ହରି ସ୍ତ୍ରୀଲୋକଙ୍କ ସହିତ ଯାଇ ଖଣ୍ଡିଏ ଦ୍ୱିତୀୟ ଶ୍ରେଣୀ କୋଠରୀରେ ପ୍ରବେଶ କଲେ । କୋଠରୀ ମଧ୍ୟରେ ଖୁବ୍ ସମ୍ଭବ ଜଣେ ହିନ୍ଦୁସ୍ଥାନୀ ଯୁବକ ଛଡ଼ା ଅନ୍ୟ କେହି ନ ଥିଲେ । ହରି ଜିନିଷପତ୍ର ସବୁ ଯଥାସ୍ଥାନରେ ରଖିବାର ବନ୍ଦୋବସ୍ତ କରିଦେଇ ଓ ସମସ୍ତଙ୍କର ବସିବା ସ୍ଥାନ ଠିକ୍ କରିଦେଇ ଗୋଟିଏ ସିଗାରେଟ ଲଗାଇ ଯୁବକଟି ସହିତ ହିନ୍ଦୀରେ କଥାବାର୍ତ୍ତା ଆରମ୍ଭ କରିଦେଲେ ।

କଥାବାର୍ତ୍ତା କରୁ କରୁ ହଠାତ୍ ସେ ଚାହିଁ ଦେଖିଲେ ଯେ ବ୍ୟାଗ ଖଣ୍ଡି କାହିଁ ଦେଖାଯାଉ ନାହିଁ । ଜିନିଷପତ୍ର ସବୁ ଲେଉଟ ପାଉଟ କରି ଦେଖିଲେ ଯେ, ଗାଡ଼ିରେ ବ୍ୟାଗ୍ ନାହିଁ ; ନିଶ୍ଚୟ ଓଏଟିଙ୍ଗ ରୁମରେ ଛାଡ଼ି ଆସିଛି ମନେକରି ସେ ତରତର ହୋଇ ଗାଡ଼ିରୁ ଓହ୍ଲାଇ ଷ୍ଟେସନ ଘର ଆଡ଼କୁ ଦୌଡ଼ିଲେ । ସେତେବେଳକୁ ପ୍ରଥମ ବେଲ (ଘଣ୍ଟା) ବାଜିଗଲାଣି । ବାକି ପ୍ରାୟ ୨।୩ ମିନିଟରୁ ବେଶୀ ସମୟ ନାହିଁ ।

ଚାହିଁ ଚାହିଁ ଦ୍ୱିତୀୟ ବେଲ ବାଜିଗଲା, ପ୍ଲାଟଫର୍ମ ଉପରେ ଛୁଟାଛୁଟି ଦୌଡ଼ାଦୌଡ଼ି ଲାଗିଅଛି ; ଲୋକେ କୋଳାହଳରେ ପରସ୍ପର କଥା ଶୁଣିବାର ଜୋ ନାହିଁ । ମାଳୀ ଓ ହେମ ଝରକାବାଟେ ମୁହଁ ବାହାର କରି ଯେତେ ଦୂରକୁ ଦୃଷ୍ଟିଯାଏ, ଉତ୍କଣ୍ଠାର ସହିତ ଅନାଇ

ରହିଛନ୍ତି, କିନ୍ତୁ ଲୋକ ଗହଳି ତ କ୍ରମେ କମି ଆସିଲାଣି, କାହିଁ ହରି ତ କେଉଁଠାରେ ଦେଖାଯାଉ ନାହାନ୍ତି । କାଳର ଗତିପରି ରେଲଗାଡ଼ି କାହାକୁ ଅପେକ୍ଷା କରେ ନାହିଁ । ଧେଁ କରି ଗୋଟାଏ ବିକଟ ସିଟିମାରି ଗାଡ଼ି ଛାଡ଼ିଦେଲା ଏବଂ ତାହା ସଙ୍ଗେ ଦୁଇଟି ରମଣୀ-କଣ୍ଠର କ୍ଷୀଣ କ୍ରନ୍ଦନଧ୍ୱନି କେଉଁଆଡ଼େ ମିଶିଗଲା, ତାହା ସେହି-ମାନଙ୍କ ଛଡ଼ା ଅନ୍ୟ କେହି ଜାଣିପାରିଲେ ନାହିଁ ।

ମାଳୀ ଓ ହେମ କ୍ରମେ ବେଶୀ ଅଧୀର ହୋଇଉଠିଲେ । କଣ କରିବେ କିଛି ଠିକ୍ କରିପାରିଲେ ନାହିଁ । ଯେତିକି ନିଜର ଅବସ୍ଥା ଭାବିବାକୁ ଲାଗିଲେ, ସେତିକି ମନରେ କୋହ ଦ୍ୱିଗୁଣ ହୋଇଉଠିଲା । ଏକେ ଅବଳା ସ୍ତ୍ରୀ ଜାତି, ସଂସାରର ଗତିବିଧି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞା; ତହିଁରେ ପୁଣି ବହୁତ ଯତ୍ନରେ ବଢ଼ିଥିବା କୁଣ୍ଡର ସୁକୁମାର ଫଳଗଛ ପରି ସେମାନେ ଗୃହର ଚତୁଃସୀମା ଛଡ଼ା କେବେହେଲେ ବାହାରର ଦାରୁଣ ଘାତପ୍ରତିଘାତ ଦେଖି ନାହାନ୍ତି । ଏବେ ତ ପାଖରେ ତାହା ବୋଲି ପିଲାଟିଏ ସୁଦ୍ଧା ନାହିଁ, ତହିଁରେ ଯେଉଁ ଲୋକଟି କୋଠରୀ ମଧ୍ୟରେ ଅଛି, ତାହାର ନଥିବା ଅପେକ୍ଷା ଥିବାକୁ ସେମାନେ ଆହୁରି ଭୟାବହ ମନେ କରୁଛନ୍ତି । ନିଜର ଅବସ୍ଥା ଭଲ କରି ଠିକଏ ଭାବିବାକୁ ବା ସ୍ୱାଧୀନ ଭାବରେ କଥାଭାଷା ହେବାକୁ ସୁଦ୍ଧା ସେମାନଙ୍କର କ୍ଷମତା ନାହିଁ । ସେମାନେ ଚତୁର୍ଦ୍ଦିଗରେ କେବଳ ଅନ୍ଧକାର—ସୂଚିଭେଦ୍ୟ ଅନ୍ଧକାର ଦେଖୁଛନ୍ତି । ସେମାନଙ୍କର ମନେ ହେଉଅଛି, ଯେପରି ଗୋଟାଏ ଖିମକାୟ ଦୁର୍ବୃତ୍ତ ଦୈତ୍ୟ ସେମାନଙ୍କୁ ଗୋଟାଏ ରଥରେ ବସାଇ ଆକାଶ ମାର୍ଗରେ ଅସୁରରାଜ୍ୟ ଆଡ଼କୁ ନେଇ ଯାଉଅଛି ।

ଏମାନଙ୍କର ଏପରି ଅବସ୍ଥା ଦେଖି ଯୁବକଟି ଆଉ ବେଶୀ କ୍ଷଣ ନିଶ୍ଚିନ୍ତ ରହିପାରିଲା ନାହିଁ । ସେ ସେମାନଙ୍କୁ ନାନା ଉପାୟରେ

ପ୍ରବୋଧ ଦେବାକୁ ଚେଷ୍ଟା କଲା; କିନ୍ତୁ ଫଳ ମଧ୍ୟରେ ଏତିକି ହେଲା ଯେ, ସେମାନେ ତା କଥାରେ କର୍ଣ୍ଣପାତ ନ କରି କ୍ରମେ ଆହୁରି ଅଧୀର ହୋଇଉଠିଲେ । ଯୁବକଟି ମଧ୍ୟ ନିରସ୍ତ ହୋଇ ନିଜ ସ୍ଥାନରେ ଯାଇ ବସିଲା ।

ହରି ସଙ୍ଗେ କଥାବାର୍ତ୍ତା କରିବା ସମୟରେ ଯୁବକ ସେମାନଙ୍କ ସମ୍ବନ୍ଧରେ କିଞ୍ଚିତ ଆଭାସ ପାଇଥିଲା । କିଛିକ୍ଷଣ ପରେ ସେମାନଙ୍କୁ ଟିକିଏ ଆଶ୍ୱସ୍ତ ହେବାର ଦେଖି ସେମାନଙ୍କ ଘର, କେଉଁଠାରେ ଥିଲେ, କେଉଁଠାକୁ ଯାଉଛନ୍ତି ଇତ୍ୟାଦି ବିଷୟରେ ଅଧା ବଙ୍ଗଳା, ଅଧା ହିନ୍ଦି ଭାଷାରେ ନାନା ପ୍ରକାର ପ୍ରଶ୍ନ କଲା ଏବଂ ସେମାନେ ମଧ୍ୟ ଯନ୍ତ୍ରଚାଳିତ ପରି କେତେଗୁଡ଼ିଏ ପ୍ରଶ୍ନର ଉତ୍ତର ଦେଇଗଲେ; କିନ୍ତୁ ମନେ ମନେ ଯୁବକ ସମ୍ବନ୍ଧରେ ସେମାନଙ୍କର ସନ୍ଦେହ ଆହୁରି ଦୃଢ଼ୀଭୂତ ହେବାକୁ ଲାଗିଲା । ସେମାନେ ମନେକଲେ କୌଣସି ଦୁରଭିସନ୍ଧି ନ ଥିଲେ ଏ ଏତେ ପଚାରନ୍ତା କାହିଁକି ? ରେଲ-ଗାଡ଼ିରେ ଯେ ନାନା ରକମର ଅତ୍ୟାଚାର ହୁଏ, ଶୁଣାଶୁଣିରେ ସେମାନେ କିଛି ଜାଣିଥିଲେ । ବିଶେଷତଃ ରୁକ୍ଷ ହିନ୍ଦୁସ୍ଥାନୀ ପୋଷା-କର ଅନ୍ତରାଳରେ ଯେ କେବେ ମାୟା ମମତାର ସ୍ନିଗ୍ଧ ଧାରା ବହିପାରେ ଏଇଟା ସେମାନଙ୍କର ଧାରଣାର ଗୋଚର ନ ଥିଲା । ଫଳତଃ ମନର ସନ୍ଦେହଟିକୁ ସେମାନେ ବହୁ ଯତ୍ନରେ ବଢ଼ାଇବାକୁ ଲାଗିଲେ । ଯେଉଁସବୁ ଘଟଣା ବା ପ୍ରମାଣ ଏହାର ପୋଷକତା କଲା, ସେମାନେ ତାକୁ ଆଦରର ସହିତ ଅଭ୍ୟର୍ଥନା କରିନେଲେ ଏବଂ ବାକି ଯେ ସବୁ ଏହାର ବିରୋଧାଚରଣ କଲା ସେମାନେ ତାକୁ ମିଥ୍ୟାସାକ୍ଷ୍ୟ ବୋଲି ଇଜଲାସରୁ ବିଦାୟ ଦେଲେ ।

ଟିକିଏ ପ୍ରକୃତିସ୍ଥ ହେଲା ପରେ, ପରିଣାମ କଣ ହେବ, ସେ ବିଷୟରେ ଚିନ୍ତା ନ କରି ସେମାନେ ବର୍ତ୍ତମାନ କଣ କର୍ତ୍ତବ୍ୟ

ତାହା ସ୍ଥିର କରିବାକୁ ଲାଗିଲେ । ପ୍ରଥମେ ସେମାନେ ନିଜ ନିଜର ଗହଣାପତ୍ର କ୍ରମେ କ୍ରମେ ଦେହରୁ କାଢ଼ି କାନିରେ ବାନ୍ଧିଲେ— ଏତେ ଅଳଙ୍କାର ଦେଖିଲେ କାଳେ ସେ ଲୋଭ ସମ୍ଭାଳି ନ ପାରିବ । ଯୁବକଟି ଏସବୁ ଲକ୍ଷ୍ୟ କରି ତାହାରିକୁ କିଛି ନ କହି ମନେ ମନେ ଟିକିଏ ନ ହସି ରହିପାରିଲା ନାହିଁ ।

ବଡ଼ ବଡ଼ ଷ୍ଟେସନ ନିକଟରେ ଯୁବକଟି ଯାଇ ସେମାନଙ୍କର କଣ ଦରକାର, କଣ ଆଣିବାକୁ ହେବ ଇତ୍ୟାଦି ପ୍ରଶ୍ନ କରେ, କିନ୍ତୁ ସେମାନେ ସବୁ କଥାରେ ନିରୁତ୍ତର । ମନେ ମନେ ଭାବନ୍ତି ଶାଠ୍ୟର ମୁଖ ସବୁବେଳେ ମଧୁର ।

ସେମାନଙ୍କ ଆଖିକି ନିଦ ଆସିବା ଦୂରେ ଥାଉ, ଜଣକଠାରୁ ଅନ୍ୟ ଜଣେ ମୁହୂର୍ତ୍ତିକ ନିମନ୍ତେ ସୁଦ୍ଧା ଅନ୍ତର ହେବାକୁ ସାହସ କଲେ ନାହିଁ, କେଜାଣି ଯଦି ଏଥିମଧ୍ୟରେ କିଛି ବିପଦ ଘଟିଯାଏ ! ସେମାନଙ୍କର ଏପରି ଦୁରବସ୍ଥା ଦେଖି ଯୁବକ ଟିକିଏ ଶୋଇବାର ଛଳନା କଲା, କିନ୍ତୁ ଏମାନଙ୍କ ଲାଗି ତା ଆଖିରେ ମଧ୍ୟ ନିଦ ନାହିଁ ।

ଆସାନସୋଲ ଜଙ୍କସନରେ ଗାଡ଼ି ପହଞ୍ଚିଲା । ଏଠାରୁ ଏ ଗାଡ଼ି ବଦଳାଇ ଅନ୍ୟ ଗାଡ଼ିରେ ଚଢ଼ିବାକୁ ହେବ । ଯୁବକ ସେମାନଙ୍କୁ ଅନ୍ୟଗାଡ଼ିକୁ ଯିବାକୁ ସେଥିପ୍ରତି ପ୍ରବର୍ତ୍ତାଇଲା, ସେମାନେ ମାନିଲେ ନାହିଁ, କେଜାଣି ଯଦି ଏହା ମଧ୍ୟରେ କିଛି ଚକ୍ରାନ୍ତ ଥାଏ । ଶେଷରେ ଅନ୍ୟାନ୍ୟ ଆରୋହୀମାନେ ଓହ୍ଲାଇବାର ଦେଖି ସେମାନେ ମଧ୍ୟ ଓହ୍ଲାଇଲେ । ଯୁବକଟି କେତେକ କୁଲିଦ୍ୱାରା ଓ କେତେକ ନିଜେ ସେମାନଙ୍କର ସବୁ ଜିନିଷ ଅନ୍ୟଗାଡ଼ିକୁ ବୁହାଇ ନେଇଗଲା ।

ପ୍ରଭାତ ହେବାରୁ ସେମାନଙ୍କ ମନରେ ଟିକିଏ ସାହସ ହେଲା ଏବଂ ଯୁବକ ପ୍ରତି ଅବିଶ୍ୱାସ ମଧ୍ୟ ଟିକିଏ କମିଲା । ଯୁବକ

ସେମାନଙ୍କ ସୁବିଧା ସକାଶେ ପାଣି ଆଣିଦେବାଠାରୁ ଆରମ୍ଭ କରି ଜଳଖିଆ ଇତ୍ୟାଦିର ବନ୍ଦୋବସ୍ତ କରିବା ପର୍ଯ୍ୟନ୍ତ ସବୁ କାର୍ଯ୍ୟ ଅଯାଚିତ ଭାବରେ କରୁଥାଏ—ଯେପରିକି ଏମାନେ ତାର କୌଣସି ଘନିଷ୍ଠ ଆତ୍ମୀୟ ।

ବୋଧହୁଏ ନିଜେ ଦରି ଥିଲେ ସେମାନଙ୍କର ଲାଗି ଏତେ ଯତ୍ନ କରିଥାନ୍ତା କି ନାହିଁ ସନ୍ଦେହ । ଅଥଚ ପ୍ରତିକାର୍ଯ୍ୟ ଭଦ୍ରତା ଓ ଲୌକିକତାର ସୀମା ମଧ୍ୟରେ ରହି ଏପରି ଧୀର ବିନୀତ ଭାବରେ କରିଯାଉଥାଏ, ଯେପରିକି ଏମାନଙ୍କ ପାଇଁ ସେ ଗୋଟାଏ ବିଶେଷ କିଛି କାର୍ଯ୍ୟ କରୁନାହିଁ—ଏସବୁ ତାର କର୍ତ୍ତବ୍ୟର ସୀମା ଭିତରେ ।

ଏତେ ଅକାଟ୍ୟ ପ୍ରମାଣ ସମ୍ମୁଖରେ ସେମାନଙ୍କର ମନର ସଂସ୍କାର ଆଉ ବେଶୀକ୍ଷଣ ତିଷ୍ଠିପାରିଲା ନାହିଁ କଠିନ ବରଫ ଯେପରି ଥରେ ଦ୍ରବ ହେବାକୁ ଆରମ୍ଭ କଲେ ଜଳ ପରି ତରଳ ନ ହେବା ପର୍ଯ୍ୟନ୍ତ କ୍ଷାନ୍ତହୁଏ ନାହିଁ, ସେମାନେ ସେହିପରି ତା ଉପରେ ଥରେ ବିଶ୍ୱାସ ସ୍ଥାପନ କଲା ଉତ୍ତାରୁ ତା ଆଡ଼କୁ କ୍ରମଶଃ ଆକୃଷ୍ଟ ନ ହୋଇ ରହିପାରିଲେ ନାହିଁ ।

ସେମାନେ ଏଣିକି ତାର ପ୍ରତି କାର୍ଯ୍ୟ ଓ କଥାରେ ମହତ୍ତ୍ୱର ସୂଚନା ଦେଖିପାରିଲେ । ଆହା ! ଏପରି ପର ଉପକାରୀ ଲୋକ ପୁଣି ସଂସାରରେ ଅଛନ୍ତି ? ଚିହ୍ନା ପରିଚୟ କିଛି ନାହିଁ, ଆମର ବିପତ୍ତି ଦେଖି ଏତେ ତରଳିଗଲା ଯେ ନିଜର ସୁଖ ସୁବିଧା ସବୁ ଛାଡ଼ିଦେଇ ଆମମାନଙ୍କ ପିଛା ବରାବର ଲାଗିଛି । ପ୍ରଭୁ ଏପରି ଲୋକଟାଏ ନ ଜୁଟାଇଥିଲେ ଆମର ଦଶା କଣ ହୋଇଥାନ୍ତା ? ଛି ଛି, ଏପରି ଲୋକକୁ ପୁଣି ଆମେ ଅବିଶ୍ୱାସ କରୁଥିଲୁଁ ? ଏଥିପାଇଁ ନିଶ୍ଚୟ ଆମର ପାପ ହୋଇଛି ।

ମାଳୀ କହିଲା, "ତମେ ଯାହା କହ, ତାଙ୍କୁ ଦେଖି ମୋ ମନରେ କାହିଁକି ପ୍ରଥମରୁ ସନ୍ଦେହ ହୁଉଁ ନ ଥିଲା। ଏଡ଼େ ସୁନ୍ଦର ଗଢ଼ଣ, ଏଡ଼େ ଅବିଶ୍ୱାସୀ ହୁଅନ୍ତା ନା ?"

ହେମ ହସି ହସି କହିଲା, "ତମେ ତ କଣ ତା ରୂପରେ ଏକାବେଳକେ ମଜ୍ଜି ଗଲଣି। ତେବେଣ ତ ସବୁ ଠିକ୍‌ଠାକ୍ ସରିଲଣି, ନ ହେଲେ ଅବା ଦେଖାଯାଇଥାନ୍ତା। ଆଉ ନ ହେଲେ କଣ ! ଦେଖା ନାହିଁ କି ଶୁଣା ନାହିଁ, କୁଆଡ଼ୁ ଗୋଟାଏ ବର ଧରି ଆଣିବେ ଯେ ସେ କାଳଆଭୁଆ ହେଉଛି ନା କଣ ହେଉଛି, କେଜାଣି ?"

ମାଳୀ "ଯା, ମ," କହିଦେଇ ମୁହଁ ବୁଲାଇ ବସିଲା।

ହେମ କହିଲା, "ମନକଥାଟା ଖୋଲିଦେଲି କି ନା, ସେଥିଲାଗି ହେଲା ମୋର ଦୋଷ। ଆଜି ସେ ଲୋକଟିର ଆମ ସକାଶେ ଏତେ ଧାଆଁ ଧପଡ଼ ଲାଗିଛି କାହିଁକି ଜାଣିଛ ?"

ମାଳୀ ଟିକିଏ ବିରକ୍ତି ପ୍ରକାଶ କରି କହିଲା, "ଯା, ମ, ମୁଁ କିଛି ଜାଣେ ନାହିଁ, ମୋ ସଙ୍ଗରେ ସିମିତି ଲଗାଅନା।"

ହେମ କହିଲା, "ମୁଁ କହିଦେବି ? କେବଳ ତମରି ଏହି ଚାନ୍ଦମୁହ ଖଣ୍ଡିକ ଲାଗି। ସୁନ୍ଦର ମୁହଁର ସବୁଠାରେ ଜୟ। ଉଞ୍ଚେଇଲା ଖଣ୍ଡା ତା ହାତରୁ ଖସିପଡ଼ିବ ଏ ଅବା କେଉଁ ଛାର ? ନ ହେଲେ କଣ ଗରଜ ପଡ଼ିଥିଲା ଯେ ସେ ଆମ ପାଇଁ ଏତେ ମିହନତ କରନ୍ତା ? ମଝିରେ ଥାଇ ଲାଭଟା ଏଥିରେ ମୋର ଏକା ସବୁଠାରୁ ବେଶି। 'କୁସୁମ ପରଶେ ପଟ ନସ୍ତରେ।"

ମାଳୀ ଆଉ ସମ୍ଭାଳି ନ ପାରି କହିଲା, "ତମର କଣ ଭାତ ହଜମ ହେଉ ନାହିଁ କି ?"

ହେମ କହିଲା, "ହେଲାଣି ନାଁ, ଏହିକ୍ଷଣି କଣ୍ଠଦାନ ପର୍ଯ୍ୟନ୍ତ ହେବ ? ମନରେ ରୋଗ ଥିଲେ, ପେଟ କଥା ପଚାରୁଛି କିଏ ?"

ଖଡ଼ଗପୁରଠାରେ ଯୁବକ ସେମାନଙ୍କ ମତ ଅନୁଯାୟୀ ଗୋବିନ୍ଦ ବାବୁଙ୍କ ଠିକଣାରେ ସଂକ୍ଷେପରେ ବାଟର ଦୁର୍ଘଟଣା ଲେଖି ଖଣ୍ଡେ ଟେଲିଗ୍ରାମ କରିଦେଲା ଏବଂ ସେମାନେ ରାତ୍ରି ୪ଟା ସମୟରେ କଟକ ଷ୍ଟେସନରେ ପହଞ୍ଚିବାର ସମ୍ବାଦ ମଧ୍ୟ ଦେଇଦେଲା ।

ହେମ ଓ ମାଳୀ ମନେ ମନେ ଭାବିଲେ, ଆଉ କିଛି ସମୟ ପରେ ତ ଆମେ ଗାଡ଼ିରୁ ଓହ୍ଲାଇଯିବା । ଏ ଲୋକଟି ଆମ ସକାଶେ ଏତେ କଷ୍ଟ ସ୍ୱୀକାର କଲା, ଅଥଚ ଆମେ ଏ ପର୍ଯ୍ୟନ୍ତ ତା ସମ୍ବନ୍ଧରେ କିଛି ଜାଣିପାରିଲେ ନାହିଁ । ଆମେ ଝିଅଲୋକ ବୋଲି ଯେ ଆମର ଏତେ ଉପକାର କଲା, ତାକୁ କଥାରେ ହେଲେ ଟିକିଏ କୃତଜ୍ଞତା ଜଣାଇବାକୁ କଣ ଆମର ଅଧିକାର ନାହିଁ ? ସେ ଯଦି କଟକରେ ଓହ୍ଲାଉଥାନ୍ତା, ତାହାହେଲେ ଅବା ଅନ୍ୟ କାହାଦ୍ୱାରା ସବୁ ବୁଝି ଯାହା କିଛି କରନ୍ତେଇ; କିନ୍ତୁ ସେ କୁଆଡେ ଯାଉଛି, କେଉଁଠାରେ ଓହ୍ଲାଇବ, କିଏ ଜାଣେ ? ଆଉ ମଧ୍ୟ ସେ ତ ଅଜଣା, ଅଚିହ୍ନା ଲୋକ, ତା ଆଗରେ ବା ଏତେ ଲାଜ କାହିଁକି ? ଏହିପରି ସାତପାଞ୍ଚ ଭାବି ହେମ ପ୍ରଥମରେ ସ୍ତ୍ରୀସୁଲଭ ସଙ୍କୋଚ ସତ୍ତ୍ୱେ, ଯେପରି ଅବସ୍ଥାରେ ଯେତେଦୂର ସମ୍ଭବ ଟିକିଏ କୃତଜ୍ଞତା ଜଣାଇ ପରୋକ୍ଷରେ ତାକୁ ଶୁଣାଇ ଯୁବକର ପରିଚୟ ଆଦି ପଚାରିଲା ।

ଯୁବକ ସଂକ୍ଷେପରେ ତାର ଏତିକି ପରିଚୟ ଦେଲା ଯେ ତାର ଘର ପଶ୍ଚିମରେ, ତାର ଭାଇ କଟକରେ କୌଣସି ସ୍ଥାନରେ କାର୍ଯ୍ୟ କରୁଥିବାରୁ ସେ ତାହା ନିକଟକୁ ଯାଉଅଛି । ଉଦ୍ଦେଶ୍ୟ, ଯଦି ଟିକିଏ ବାକିରି ଖଣ୍ଡେ ବାଜିଯାଏ, ସୁବିଧା ଦେଖି ଥାକିଯିବ ।

ଯୁବକର କଥା ଶୁଣି ହେମ ଓ ମାଳୀ ସ୍ଥିର କଲେ, ଏ ଯେତେବେଳେ ଚାକିରି ଅନୁସନ୍ଧାନରେ ଆସିଛି, ଆମ୍ଭେମାନେ ଘରେ ସମସ୍ତଙ୍କୁ କହି ସେ ଯେପରି କୌଣସିଠାରେ ଖଣ୍ଡିଏ ଭଲ କାର୍ଯ୍ୟ

ପାଏ, ତାର ଚେଷ୍ଟା କରିବା । ସେ ଆମର ଯେଉଁ ଉପକାର କରିଛନ୍ତି ଆମେ ଜୀବନରେ ତ କଦାପି ସେ ଋଣ ଶୁଝିପାରିବା ନାହିଁ । ତେବେ ଆମଦ୍ୱାରା ଯଦି ତାର କିଛି ହେଲେ ଉପକାର ହୁଏ, ତେବେ ଆମ ମନ ଟିକିଏ ଉଶ୍ୱାସ ହେବ ।

ଏହିପରି ମନେ ମନେ ବିଚାରି ସେମାନେ ଅତି ସାବଧାନରେ ତାର ନାମ, ଠିକଣା ଆଦି କଥା ଉଠାଇଲେ, ଯେପରିକି ସେମାନଙ୍କ ମନୋଭାବ ସେ କିଛି ଜାଣି ନ ପାରେ । ଉତ୍ତରରେ ଯୁବକ କହିଲା, 'ମୁଁ ତ ବର୍ତ୍ତମାନ କେଉଁଠାରେ ରହୁଚି, କଣ କରିବି କିଛି ଠିକ୍ ନାହିଁ । ଭାଇର ଠିକଣା ସୁଦ୍ଧା ମୁଁ ଜାଣେ ନାହିଁ । ଯଦି କୌଣସି ସ୍ଥାନରେ ମୁଁ ଟିକିଏ ସ୍ଥାୟୀ ଭାବରେ ରହେ, ତେବେ ପତ୍ରଦ୍ୱାରା ଜଣାଇପାରେ । ମୋ ଠିକଣା ଜାଣି ଅବା ଆପଣମାନଙ୍କର କଣ ହେବ ? କେବଳ ମୋର ନାମଟା ଜାଣି-ରଖନ୍ତୁ ଯେ 'ଲଛମନ ଜୀ ।'

ଗାଡ଼ି ଆସି କଟକ ଷ୍ଟେସନରେ ପହଞ୍ଚିଗଲା । ଯୁବକଟି କାହାର ଅନୁସନ୍ଧାନରେ ଯେପରି ସାଙ୍ଗେ ସାଙ୍ଗେ ଗାଡ଼ିରୁ ଓହ୍ଲାଇ-ପଡ଼ିଲା । ଗୋବିନ୍ଦ ବାବୁ ପୂର୍ବରୁ ସବାରି ଇତ୍ୟାଦି ନେଇ ବଡ଼ ଉତ୍କଣ୍ଠିତ ଭାବରେ ସେଠାରେ ଅପେକ୍ଷା କରିଥିଲେ । ବ୍ୟସ୍ତଭାବରେ ଅନେକ କୋଠରି ଖୋଜାଖୋଜି କଲାପରେ ଯେତେବେଳେ ମାଳୀ ପ୍ରଭୃତିଙ୍କୁ ଦେଖିପାରିଲେ, ଗୋଟାଏ ଦୀର୍ଘ ନିଶ୍ୱାସ ପକାଇଦେଇ ସେ ଟିକିଏ ଆଶ୍ୱସ୍ତ ହେଲେ ।

ଗୋବିନ୍ଦବାବୁଙ୍କ ପୁଅ ରାମ ମଧ୍ୟ ତାଙ୍କ ସହିତ ଷ୍ଟେସନକୁ ଆସିଥିଲା । ଗାଡ଼ିରୁ ସମସ୍ତେ ଓହ୍ଲାଇ ସାରିଲା ପରେ ହେମ ରାମଦ୍ୱାରା ଗୋବିନ୍ଦ ବାବୁଙ୍କୁ ଖବର ପଠାଇଲା ଯେ, ସେମାନଙ୍କ ସଙ୍ଗେ ଯେଉଁ ପଶ୍ଚିମା ଯୁବକଟି ଥିଲା, ସେ ବାଟରେ ସେମାନଙ୍କର ଅନେକ

ଉପକାର କରିଅଛି; ଏପରି କି ସେ ପାଖରେ ନ ଥିଲେ ସେମାନଙ୍କୁ ଆଉ କେହି ଦେଖିଥାଆନ୍ତେ କି ନାହିଁ ସନ୍ଦେହ !

ଏ କଥା ଶୁଣି ଗୋବିନ୍ଦବାବୁ ନିଜେ ଓ ଅନ୍ୟାନ୍ୟମାନଙ୍କ-ଦ୍ୱାରା ଯୁବକର ଅନେକ ଅନୁସନ୍ଧାନ କଲେ; କିନ୍ତୁ କୌଣସିଠାରେ ତାକୁ ନପାଇ ନିରସ୍ତ ହୋଇ ରହିଲେ ।

ହେମ ଓ ମାଳୀ କିନ୍ତୁ ଏଥିରେ ବଡ଼ ଦୁଃଖିତ ହେଲେ । ସେମାନେ ଆଉ ଥରେ ଗୋପନରେ ଭୋଲା ଗୁହଳଦ୍ୱାରା ନାନା ସ୍ଥାନରେ ଅନେକ ଖୋଜାଖୋଜି କଲେ ଓ ଶେଷରେ ହତାଶ ହୋଇ କ୍ଷୁଣ୍ଣ ମନରେ ଯାଇ ସବାରିରେ ବସିଲେ ।

ଆଜି ମାଳୀର ବିଦାଘର । ବଳରାମବାବୁଙ୍କ ଘର ନିକଟରେ ଲୋକାରଣ୍ୟ । ବାଦ୍ୟ କୋଳାହଳ ଓ ଜନତାର କଳରବରେ କାନ ଅତଡ଼ା ପଡ଼ିଯାଉଛି । ମଝିରେ ମଝିରେ ରମଣୀ କଣ୍ଠ ନିସୃତ ହୁଳହୁଳିର ତେଉରେ ଗ୍ରାମସାରା ଉଚ୍ଛୁଳିପଡ଼ୁଛି । ସର୍ବୋପରି ମାଳୀର ବ୍ୟାକୁଳ କ୍ରନ୍ଦନଧ୍ୱନି—ଘରର ଚାରିଆଡ଼େ ବୁଲି ବୁଲି ସମସ୍ତଙ୍କ ଚରଣତଳେ ଲୋଟି ସେ ଯେପରି କୃପାଭିକ୍ଷା କରୁଛି ଏବଂ ତା' ସଙ୍ଗେ ମହୁରୀର କରୁଣ ମଧୁର ରାଗିଣୀ ମିଶି ମନକୁ ପଦେ ପଦେ ବିଚଳିତ କରିଦେଉଅଛି । ଆଜି ସମସ୍ତଙ୍କ ଚକ୍ଷୁ ଆର୍ଦ୍ର ଓ ସମସ୍ତଙ୍କ ମୁଖରେ ଗୋଟାଏ ବିଷାଦର ଛାୟା ପଡ଼ି-ଯାଇଅଛି । ବଳରାମବାବୁଙ୍କ ସ୍ତ୍ରୀ ତ ଗୋଟାଏ ଘରେ ପଡ଼ିଅଛନ୍ତି ଯେ ତାଙ୍କର ଉଠିବାର ଶକ୍ତି ନାହିଁ । ବଳରାମବାବୁ ଏଡ଼େ ଧୀର ଗମ୍ଭୀର ଲୋକ; କିନ୍ତୁ ତାଙ୍କର ଚକ୍ଷୁଦ୍ୱୟ ଆଜି ରକ୍ତବର୍ଣ୍ଣ । ସେ ଘୁଡ଼ିକୁ ଘୁଡ଼ି ଲୁଗାକାନିରେ ଆଖି ପୋଛୁ ଅଛନ୍ତି । ଏତେ ବଡ଼

ଗୋଟିଏ କାର୍ଯ୍ୟ, କଣ ହେଲା, କଣ ନ ହେଲା ସେଆଡ଼କୁ ତାଙ୍କର ଦୃଷ୍ଟି ନାହିଁ । କେହି କିଛି ପଚାରିଲେ କେତେବେଳେ ପଦେ କଣ କହି ଦେଉଅଛନ୍ତି, ନ ହେଲେ କେବଳ ମୂକ ପରି ବସିଅଛନ୍ତି ।

କ୍ରମେ ବେଦିର ସମସ୍ତ କାର୍ଯ୍ୟ ଶେଷ ହୋଇଗଲା । ଜୁଆ ଖେଳିବାପାଇଁ ବରକନ୍ୟାଙ୍କୁ ଘର ଭିତରକୁ ନେଇଗଲେ । ବରକୁ ଦେଖିବା ଲାଗି ସ୍ତ୍ରୀଲୋକମାନେ ଆସି ଯୁଟବାନ୍ଧି ଛିଡ଼ାହୋଇଗଲେ । ହେମ ବରକୁ ଦେଖି ପ୍ରଥମେ ଥକାମରା ହୋଇ ଛିଡ଼ାହୋଇଗଲା । କିଛିକ୍ଷଣ ପରେ ସେ ସମ୍ଭାଳି ହୋଇ ନ ପାରି ପାଟିକରି ଉଠିଲା, "ହଇ ହେ ! ଏ ତ ଆମର ସେହି ଲଛମନଜୀ !" ହେମ କଥା ଶୁଣି ମାଳୀ ଓଢ଼ଣା ଭିତରୁ ଚମକି ଉଠିଲା । ସମସ୍ତେ ପରସ୍ପର ଆଡ଼କୁ କେବଳ ଅନାଅନି ହେଲେ । ହେମ ମଧ୍ୟ କିଛିକ୍ଷଣ ଅବାକ୍ ହୋଇଗଲା । ବର ଟିକିଏ ମୁରୁକେଇ ମୁରୁକେଇ ହସି ମୁହଁକୁ ତଳକୁ ପୋତି ଦେବାରୁ ହେମ ମନରେ ସନ୍ଦେହ ରହିଲା ନାହିଁ । ଯାହା ସହିତ ସେମାନେ ପ୍ରାୟ ଦେଢ଼ଦିନ କାଳ ଏକ ରେଳ କାମରାରେ କଟାଇ ଆସିଛନ୍ତି, ତା' ବିଷୟରେ କଣ ଏତେ ଭ୍ରମ ହୋଇପାରେ ।

ପ୍ରଥମେ ବସ୍ତୁସ୍ଥିତି ନବଗ୍ଭିଁ ଯିବାରୁ ହେମ ମନରେ ଟିକିଏ ଆନନ୍ଦ ହେଲା । ସେ ଏ ସୁଯୋଗ ଛାଡ଼ି ନ ପାରି କହିଲା, "ଏ ତ ଆଚ୍ଛା ଭଲ ଲୋକ ! ଗୁପ୍ତ ବେଶରେ ଭଦ୍ରଲୋକ ଘରର ବୋହୂ-ଝିଅଙ୍କ ସଙ୍ଗେ କଥାବାର୍ତ୍ତା କରି ଶେଷରେ କ'ଣ ନା ଆସି ଅବତ-ଣୀପ୍ରୀ ରାଜାପରି ବେଦିରେ ବସିଗଲେ । ମୁଁ ପରା ସମସ୍ତଙ୍କୁ କହୁଛି, ଏ ବାହାଘର ଠିକ୍ ହେଲା ନାହିଁ । ଏହା ଭିତରେ ଏତେ କୁଟ କପଟଥିଲା ବୋଲି କିଏ ଜାଣିଥିଲା ? ନ ହେଲେ ଜାଣିଶୁଣି କିଏ

ଗୋଟାଏ ପଶ୍ଚିମା ନପଗ୍ରଣି ସଙ୍ଗେ ଆମର ଏପରି ଝିଅକୁ ବିଭା ଦେଇଥାନ୍ତା ? ଯେଉଁ ଲୋକ ଘଡ଼ି ଘଡ଼ି ବହୁରୂପୀ ପରି ବେଶ ବଦଳାଇ ଲୋକଙ୍କୁ ଠକାଏ, ତାଠେଇଁ ବା ବିଶ୍ୱାସ କିଣ ? ପଶ୍ଚିମରୁ ଏତେ ବାଟ ଏହି ଗୃହକଣ୍ଠ ପାଇବା ଲାଗି ଆସିଥିଲ ପରା ? ହଉ ତେବେ ଆମେ ସମସ୍ତେ ଆଶୀର୍ବାଦ କରୁଛୁ, ତମେ ଚିରକାଳ ଆମ ମାଳୀଙ୍କର କଣ୍ଠାଗ୍ନକର ହୋଇଥାଅ ।

ବର ଟିକିଏ ହସି ହସି କହିଲା, "କାହିଁକି ? ଏ ପର୍ଯ୍ୟନ୍ତ ଖାଉନ୍ଦାଣୀଙ୍କଠଉଁ ତ ପରୁଆନା ଖଣ୍ଡି ମିଳିଲା ନାହିଁ । ନ ହେଲେ ପୁଣି ଅନ୍ୟ ସ୍ଥାନରେ ଚେଷ୍ଟା କରିବାକୁ ହେବ ତ ?

ବର ମୁହଁରୁ କଥା ଶେଷ ନ ହେଉଣୁ କିଏ ଗୋଟିଏ ଆସି "ହେଇଟି ନିଅ ପରୁଆନା" କହି ବରର ପୃଷ୍ଠଦେଶରେ ଗୋଟାଏ ସୁମିଷ୍ଟ ବିଡିଟପଳଆ ବିଧା ବସେଇଦେଲା ଏବଂ ସାଙ୍ଗେ ସାଙ୍ଗେ ହାସ୍ୟର କଲ୍ଲୋଳରେ ଘରଟି ଉଚ୍ଛୁଳିଉଠିଲା ।

ବିବାହକାର୍ଯ୍ୟ ଶେଷ ହୋଇଯିବା ପରେ ହେମ ମାଳୀକୁ କହିଲା, "କାଳକାଳିଆ ଝିଅଙ୍କୁ ଆଉ ବିଶ୍ୱାସ ନାହିଁ ପରା ! ମୁଁ ସେ ଦିନୁ ଜାଣେ ଯେ ଯୁ । ଭିତରେ ଗୋଟାଏ କିଛି ଗୁମ୍ଫ ର ଅଛି । ଆଖିରେ ଆଖିରେ ତମର ଏତେ କଥାବାର୍ତ୍ତା ହୋଇଗଲା, ମୋତେ ଟିକିଏ ଜଣେଇଥିଲେ ମୁଁ କିଣ ତମ ବରକୁ କୁଆଡ଼େ ନେଇ ପଳାଇଥାନ୍ତି ? ଦମୟନ୍ତୀ ପରି ତମେ କିପରି ତମର ଛଦ୍ମବେଶୀ ନଳକୁ ବରଣ କରିନେଲ, ମୋତେ ପରା ସେଇଟା ଆଚମ୍ବିତ ଲାଗୁଛି ।"

କଥାଟା ଚାରିଆଡ଼େ ରାଷ୍ଟ୍ର ହୋଇଯିବା ପରେ ବିନୋଦ ଆସି ଲକ୍ଷ୍ମୀଧରକୁ କହିଲା, "କିହୋ ଲଛମନଜୀ ! ଏଇଥିଲାଗି ପରଦେରେ

ଏତେ ସ୍ୱାଧୀନତାର ଡେଙ୍ଗ ଖେଳିଯାଉଥିଲ ନା ? କାହାରିକୁ ପର୍ବା ଧରାଛୁଆଁ ଦେଉ ନ ଥିଲ, ଶେଷରେ କଣ ନା ନିଜେ ଯାଇ ଭୁନ-ତାନ ହୋଇ ଫାଶରେ ବେକଟି ଗଳାଇଦେଲ ? ମୁଁ ଜାଣେ ସେ ସ୍ରୋତରେ ଦମ୍ଭ ଅଭିମାନ ତୃଣ ପରି କୁଆଡ଼େ ଭାସିଯିବ । ଭାଗୀରଥୀ ତରଙ୍ଗରେ କେତେ ଐରାବତ ଭାସିଯାଇଛନ୍ତି, ଦର୍ଶନ-ବିଜ୍ଞାନରେ ବାଲିବନ୍ଧ କି ସେଠାରେ ସମ୍ଭଲା ପଡ଼େ ?"

ଲକ୍ଷ୍ମୀଧର କହିଲ, "ଭାଇ, ମୋର ଏଥିରେ କଣ ଅଛି ? ବିଧିର ନିର୍ବନ୍ଧ ନିକଟରେ ମନୁଷ୍ୟ କି ଛାର !"

— — —

# ଦଶହରା ଭେଟି

[ ଶ୍ରୀ ରାଜକିଶୋର ରାୟ ]

ଆଶ୍ୱିନର ନରମ ସକାଳ ।

କମ୍ର ସବୁଜ ଘାସର ଗାଲିଚା ଉପରେ ସୁନା ସୋରିଷିଆ ଖରାର ଖେଳ; ପ୍ରକାଣ୍ଡ ଈଗଲ୍ ପକ୍ଷୀର ପକ୍ଷଗୁଚ୍ଛ ଭଳି ଅଶିଣ ଖରା ଉପରେ ଈଶାନ ବାୟୁ ବହମାନ ମେଘଖଣ୍ଡର ସାମୟିକ ସଞ୍ଚରଣ; ସ୍ୱଚ୍ଛ ଆକାଶ ଓ ଶ୍ୟାମ ଧରଣୀ ଭିତରେ ଅଭିନ୍ନ ଶାନ୍ତ ଭାବରେ ସତନ୍ଦ୍ର ଆବେଶ ସୃଷ୍ଟି କରୁଛି । ଏକ ମହା ବିଜନତା, ଯାହାର ଏକ କ୍ଷୀଣ ଧାର ସୁନନ୍ଦାକୁ ବହିର୍ଜଗତଠାରୁ ବିଚ୍ଛିନ୍ନ କରାଇ କରିଅଛି କେଉଁ ରାଜପୁରୀ ଅଲଅଲ ଜେମା······ମଞ୍ଜିମା··· ମଉଁନାବଣ୍ଠି ।

ସୁନନ୍ଦା ମୋର ସ୍ତ୍ରୀ ।

ମୋର ଅପକ୍ୱ ବୟସରେ ତାଙ୍କ ସହିତ ମୋର ବିବାହ ହୋଇଯାଇଛି । ତେଣୁ ଉପଯାଚିତ ହୋଇ ତାଙ୍କଠାରୁ ଯାହା କିଛି ଭିକ୍ଷା ମୁଁ ଲୋଡ଼େଁ—ଧର୍ମର ସନ୍ତାନ ସେ—ତାହା ମୋର ଶୂନ୍ୟ ଥାଳରେ ସେ ଅଜାଡ଼ି ଦିଅନ୍ତି ସତ; ମାତ୍ର ସେଇ ଅଜାଡ଼ିବାରେ ଯେଉଁ ତିଳ ପ୍ରାୟ 'ଅହଂ' ଲୁଚି ରହିଥାଏ, ତାହା ମୁଁ ଶୁଷ୍କ ମୁଖରେ ମରଣ ଅବଧି ସହି ନେଇପାରନ୍ତି; କିନ୍ତୁ ପାରେ ନା, କାରଣ ମୁଁ ତାଙ୍କର ସ୍ୱାମୀ ।

ସୁନନ୍ଦା କାବ୍ୟ କବିତାର ପ୍ରେୟସୀ । ମୁଁ ଖାଣ୍ଟି ବାସ୍ତବବାଦୀ । (ମୋ ଆଗରେ ମୃତ୍ୟୁ—ମୃତ୍ୟୁ, ଜୀବନ—ଜୀବନ, ମରଣ ଭିତରେ ମୁଁ ଅମୃତ ହସ୍ତର ଇଙ୍ଗିତ ଦେଖେନି କି ଜନ୍ମ ବା ସୃଷ୍ଟିରେ ମୁଁ ଦୁଇଟି ଆତ୍ମହରା ।)

ଆଜି ଯେଉଁ ଅଶୀଣ ସକାଳ କଥା ମୁଁ କହୁଛି, ଠିକ୍ ସେହି ସକାଳ, କୋଡ଼ିଏ ବରଷ ତଳେ ସୁନନ୍ଦାର ଶ୍ରୀ ଉପରେ ସଙ୍ଗୀତ ଢାଳିଥିଲା । ସେହି ସଙ୍ଗୀତ ଆଜି ବି ମୋର ପ୍ରାଣକୁ ମଧୁଛନ୍ଦରେ ଉଥଲ କରେ, ଯେତେବେଳେ ମୁଁ ତାଙ୍କର ହାସଦୀପ୍ତ ତୃପ୍ତ ମୁଖ ଉପରେ ନେତ୍ରପାତ କରେ । ଏତେ ରୂପ ! ସେ ରୂପରେ ପୁଣି ଏତେ ତନ୍ଦ୍ରା ! ଏତେ ସ୍ୱପ୍ନ ! ଏତେ ବୁଭୁକ୍ଷା !

ଅନ୍ତର୍ଯ୍ୟାମୀ ଜାଣନ୍ତି, ଏଇ ମୋର ସ୍ତ୍ରୀ ସୁନନ୍ଦା ପାଇଁ ମୁଁ କଅଣ ବା ନ କରିଛି, ନ କରିବି । କବିତା ସେ ଭଲ ପାଆନ୍ତି ବୋଲି ତାଙ୍କ ପାଇଁ ଆଣି ଦେଇଛି ସୁନେଲି ରଙ୍ଗର ମରକ୍କୋ ଚମଡ଼ା-ବନ୍ଧା ଓମରଖୈୟାମର ସୁରା ଓ ସାକୀର କବିତା ବହି । ସେ ବହି ସୁନନ୍ଦା ପଢ଼ନ୍ତି । ମଦିର ସ୍ରାବ ଝରିପଡ଼େ ତାଙ୍କର ଓଲମ୍ବ ହୁଓଟି ଆଖିପତାରୁ । କାଚନଳି ଭଳି ସ୍ୱଚ୍ଛ କଣ୍ଠ ଦେଶରେ ତାଙ୍କର ଦୁଇଟି ନୀଳ ଶିରା ଉତ୍ତେଜନାର ଉତ୍ତାପରେ ଲୋହିତ ବର୍ଣ୍ଣ ଧରେ । ତା ବି ମୁଁ ଧୀର ଚକ୍ଷୁରେ ଉପଭୋଗ କରେ । ସେ ଛବି ଭଲ ପାଆନ୍ତି ବୋଲି ମୁଁ ଗ୍ରୀସୀୟ ଆର୍ଟର ଚିରନ୍ତନ କଳାକୁଞ୍ଜରୁ ତୋଳି ଆଣିଛି ରୂପବତୀ, ଭିନସର ଉଲଗ୍ନ ଛବି; ଟାଙ୍ଗି ଦେଇଛି ବି ତାଙ୍କର ଶୋଇବା ଘରର କାନ୍ଥରେ । ନାରୀ ସେ; କିନ୍ତୁ ହବନେ ହେଲେ ତ ଏଇ ରୂପସୀ ଗ୍ରୀସୀୟ ଦେବୀ ମୂର୍ତ୍ତିର ଅନାବୃତ ରୂପ-କାନ୍ତିକୁ ଦେଖି ଶିହରି ଉଠି ନାହାନ୍ତି ? ସେ ଫୁଲ ଭଲ ପାନ୍ତି, ସେଥିପାଇଁ ମାଳୀକୁ ମୁଁ ହୁକୁମ ଦେଇଥାଏ ପ୍ରତି ଋତୁରେ ପ୍ରକୃତି

ଯେଉଁ ଫୁଲର ସମ୍ଭାର ନେଇ ମୋର ବଗିଚାରେ ପସରା ମେଲାଏ, ତାହା ଯେପରି ସୁନନ୍ଦାର ଟେବୁଲ ଉପରେ ତାଜା ଆଉ ଜୀଅନ୍ତା ଭାବରେ ରହି ପାରିବ । ତେଣୁ କୃଷ୍ଣଚୂଡ଼ା, ଗୋଲାପ, ରକ୍ତ କରବୀର, ଥରେ ଥରେ ସୁନନ୍ଦାର ଗଭାରେ ମଣ୍ଡଣି ହୋଇଥିବାର ମୁଁ ଦେଖେ । ମୁଁ ଦିଏ, ଦେଇଛି, ଦେଇ ବି ଯାଉଛି, କିନ୍ତୁ ସେ କଅଣ ଦେଇ ଶିଖି ନାହାନ୍ତି ? ସେ କାହିଁକି ଦେବେ ? ଯେ ସମ୍ପୂର୍ଣ୍ଣ ସେ ଅପୂର୍ଣ୍ଣର କଥା ଭାବିବ କାହିଁକି ?

ଏ ବ୍ୟବଧାନକୁ ଦଳିଦେବା ପାଇଁ ଆମ ଜୀବନରେ କୌଣସି ଆଶ୍ରୟ ନ ଥିଲା । ସୁନନ୍ଦାର ଆଶ୍ରୟ, କାବ୍ୟ କବିତା, ଛବି, ବନ୍ଧୁସଙ୍ଗ, ଫୁର୍ତ୍ତି—ଆଉ ମୋର ଅଶ୍ରୟ ନିଃସଙ୍ଗ ଜୀବନରେ ଯାହା ହୋଇଥାଏ—କେବଳ ଭାବନା···ମରୁର ସୀମାହୀନ ସୀମା ଭଳି ଅସୀମ ଭାବନା ।

ସେଦିନ ବିଜୟା ଦଶମୀର ପ୍ରଭାତ, ସୁନ୍ଦର ଓ ସୁଖର ପ୍ରଭାତ । ସୁନନ୍ଦା ସକାଳୁ ଗୁଣୁ ଗୁଣୁ ହୋଇ ତାଙ୍କର କୋଠରୀଟି ସଜାଇବାରେ ଲାଗିଛନ୍ତି । ଗତ ରାତ୍ରିର ଅଳସ ଭାବ ଧୀରେ କଟି-ଯାଇଛି ତାଙ୍କର ଆଖିପତାରୁ । ଶରତର ସ୍ୱର୍ଣ୍ଣ କିରଣରେ ଗବାକ୍ଷ ପଥ ହୋଇଛି ରଞ୍ଜିତ ।

ଗୃହ ସଜ୍ଜା ସରିଛି । ମୁଁ ଅନ୍ୟମନସ୍କ ଭାବରେ ବସି ରହିଛି କାଉଚ୍ ଉପରେ । ଦୂରରେ ଦଶଭୁଜା ମଣ୍ଡପ ଉପରେ ନହବତ୍‌ର ତାନ ତରଙ୍ଗାୟିତ ହୋଇ ବହିଆସୁଅଛି ଧୀରେ···ଅତି ଧୀରେ ।

ସୁନନ୍ଦା ସାବୁନରେ ହାତ ଧୋଉ ଧୋଉ କହିଲେ, "ଏଇ ଯାଃ ଭୁଲିଗଲି, ତୁମ ରୁମ୍‌ଟାରେ ଟିକିଏ ହାତ ମାରି ଆଣିପାରିଲି ନାହିଁ । କିନ୍ତୁ ତୁମେ ଯେଉଁ ଛବିଗୁଡ଼ାକ ଟାଙ୍ଗିଛ ! ଉଃ କି ଭୟଙ୍କର ! "ମତେ ବଡ଼ ଭୟ ଲାଗେ । କି ଯେ Taste !"

ନବହ୍ୱୀପର ସୁରରେ ମୋର ପ୍ରାଣ ଯେପରି ବିଜଡ଼ିତ ହୋଇ-ଯାଇଥିଲି । ସୁନନ୍ଦାର କଥାରେ ମୋର ଅଭିନିବେଶ ଭାଙ୍ଗିଗଲା, କହିଲି—

ଶୁଣ, ମୁଁ ନିଜେ ଯେତେବେଳେ ତୁମର ରୁଚିକର ହୋଇ-ପାରୁନି, ମୋର ରୁଚି, ମୋର ଛବି, ମୋର ଚେଷ୍ଟା କପରି ବା ତୁମର ପ୍ରିୟ ହେବ ?

'ଏଇ ରାଗିଲ ବୋଧହୁଏ' କହି ସୁନନ୍ଦା ତାଙ୍କର କେତକୀ ଭ୍ରୂରୁ ନଚାଇ ମୋ ଆଡ଼େ ହାଣିଲେ କଟାକ୍ଷ ।

'ନାଁ, ମୁଁ ରାଗି ନାହିଁ । ଯଦି ପାର ମହାତ୍ମାଙ୍କର ସେଇ ଚୂଇନା କ୍ଲେ ମୂର୍ତ୍ତିଟି ପେଟ୍ରୋଲ ଦେଇ ସଫାକରି ରଖ । ଚାକରକୁ କହିଲେ ଘରଟା ପରିଷ୍କାର କରିଦେବ । ଆଚ୍ଛା, କେଉଁ ଛବିଗୁଡ଼ାକ ବଡ଼ ଭୟଙ୍କର ବୋଲି କହୁଛ, ସୁନ ? ଉତ୍କଳମଣିଙ୍କର ? ବିଶ୍ୱରେ ଯେଉଁ ଗୋଟାଏ ବୋଲି ଲୋକ ହୃଦୟ ଫଟାଇ କରୁଣ କାନ୍ଦି ପାରିଥିଲି ? ଗୌତମଙ୍କର ? ମାୟାମୁକ୍ତ ହୋଇ ସନ୍ନ୍ୟାସ ଯାହା ? ଯାହାଙ୍କର ଅମୃତବାଣୀ ଶତ ସନ୍ତପ୍ତ ପ୍ରାଣରେ ଜରା ଓ ମୃତ୍ୟୁର ଭୟ ଦୂର କରୁଛି ? ଗାନ୍ଧିଜୀଙ୍କ ? ସାହେବ ହେଲେ ବି ଯେ ମହାଭାରତୀୟ ଅଟନ୍ତି ? ପାର୍ନେଲ ? ଭର୍ଜେନ୍ ମେରି ? ନିଉଟନ୍ ? ଶିବାଜୀ ? ଫ୍ଲୋରେନ୍ସ ନାଇଟିଙ୍ଗେଲ ? କାହାକୁ ଭୟ କରୁଛ ?

ବର୍ଷ ବର୍ଷ ଧରି ଏଇସବୁ ଛବି ମୋର ପ୍ରକୋଷ୍ଠ ଅଳଂକୃତ କରୁଛି । ସୁନନ୍ଦା ଦେଖିଛନ୍ତି, ଜାଣିଛନ୍ତି—ତଥାପି ତାଙ୍କର ଭୟ ? ପୁଣି ପଚାରିଲି—'କେଉଁ ଛବିଗୁଡ଼ାକ ଭୟର କାରଣ, ମୁଁ ଏହିକ୍ଷଣି ଦୂର କରିଦେବ । ତୁମର ପରିତୃପ୍ତି ପାଇଁ ମୋର ଏତେ ଦିନର ହୃଦୟ-କୁଞ୍ଜରେ ଗୋଟିଏ ମାତ୍ର ଛବି ମୁଁ ଛାଡ଼ିଦେଇ ପାରିବିନା ।'

'ନା ଟିଗୋ, ସେ ସବୁ ଛବି କଥା ମୁଁ କହୁ ନାହିଁ । ସାତ ଆଠଦିନ ତଳେ ଯେଉଁ ସବୁ ଛବି ଖବର କାଗଜରୁ କାଟି ବଡ଼ବଡ଼ ପେଷ୍ଟବୋର୍ଡ଼ ଲଗାଇ ରଖିଛ, ସେ କଣ ସବୁ ସତ୍ୟ ?

କାବ୍ୟକବିତାମୋଦୀ ମୋର ନିଜ ଅଙ୍କଲକ୍ଷ୍ମୀ ଏଇ ବାସ୍ତବ ଚିତ୍ରଗୁଡ଼ାକ ଅଲୀକ ବୋଲି ଭାବୁଛ ! କହିଲି—'ସାବୁନ ହାତରେ ଶୁଖି ଗଲାଣି, ଧୋଇ ଆସ ।' 'ହଁ, ମନେ ପଡ଼ିଲା' ଆଜି ଯେ ଦଶହରା । ମୋର କର୍ତ୍ତବ୍ୟ ନା, ଆନନ୍ଦ—ତୁମକୁ କିଛି ଉପହାର ଦେବା । ଦେବି, କିନ୍ତୁ କଅଣ ଦେବି ?

ସୁନନ୍ଦା ଅଭିମାନିନୀ । ଏଇ କଥାଟା ସେ କଥାପ୍ରସଙ୍ଗରେ ଉଠେଇବେ ବୋଲି "ତୁମ ରୁମ୍‌ଟାରେ ହାତ ଦେଇପାରିଲି ନାହିଁ" ଆରମ୍ଭ କରିଥିଲେ; କିନ୍ତୁ କଥାର ସ୍ରୋତ ଧରିଲା ଭିନ୍ନ ଆକାର ।

ସୁନନ୍ଦା ଉତ୍‌ଫୁଲ୍ଲ ହୋଇ କହିଲେ—"କାହିଁକି ମନେପଡ଼ିବ ? ଏ ବର୍ଷ କିନ୍ତୁ ମୁଁ ଛାଡ଼ିବି ନାହିଁ । ଗୋଟିଏ ରେଡ଼ିଓ, ଗୋଟିଏ ସେଟ୍ ଇଭିନିଂ ଇନ୍ ପ୍ୟାରିସ୍, ଆଉ ମୋ ପାଇଁ ଦୁଇ ଖଣ୍ଡ ଦାମିକିଆ ଶାଢ଼ୀ । ତା'ପରେ ସନ୍ଧ୍ୟାରେ ନିମନ୍ତ୍ରଣ ନିଶ୍ଚୟ । ସେଥିପାଇଁ ଲେମନ୍‌ସ୍କ୍ୱାଶ ଦୁଇ ବୋତଲ, ଟର୍କି ଦୁଇଟା, ବାଦାମ, ପେସ୍ତା, ଅଙ୍ଗୁର ସବୁଥିରୁ ଦୁଇ ଦୁଇ ସେର, ଆଉ—'

'ଥାଉ ସୁନ । ଆଚ୍ଛା, କେଉଁମାନେ ନିମନ୍ତ୍ରିତ ହେବେ ?

ସୁନ ହସି ହସି ଆରମ୍ଭ କଲେ—ପ୍ରେମରାଜବାବୁଙ୍କୁ ନିମନ୍ତ୍ରଣ କରିବା, ସେ ନୂଆ ସବ୍‌ଜଜ ହୋଇ ଆସିଛନ୍ତି । ତାଙ୍କ ସ୍ତ୍ରୀ ସୁଷମା, ମୋର ପିଲାଦିନର ସାଥୀ । ଆଉ ପୁପୁ ମିନା ତାଙ୍କର ଶ୍ରେଷ୍ଠ ପୁଅ ଝିଅ । ତା'ପରେ ବଙ୍କିମବାବୁ ପ୍ଲିଡ଼ର । ଜୋସେଫ ରାଉତ ଓ ତାଙ୍କ ସ୍ତ୍ରୀ ଇଭା ରାଉତ । ତୁମେ ନିଶ୍ଚୟ ଚିହ୍ନ, ସେମାନେ ତୁମର ଖୁବ୍ ପ୍ରଶଂସା କରନ୍ତି । ଯୁଦ୍ଧ-ସଭାରେ ତୁମର ବକ୍ତୃତା ଅବିକଳ ନକଲି

କରି ତାଙ୍କ କାଗଜରେ ଛପେଇଥିଲେ । ଚରଣାନନ୍ଦଙ୍କର ବାବୁ ଯଦିଓ ଅବିବାହିତ—'

ଏତିକିବେଳେ 'ମାଆ, ଦୁଃଖିଆ ମାଆ ଦୁଆରେ ଛିଡ଼ା ହୋଇଛି, ତା ପୁଅକୁ ଦୁଧ ଖୁଆଇବ, ଟିକିଏ ଚିନି ମାଗୁଛି' କହି ଟିକିଏ ରମୁ ସାଆନ୍ତାଣୀଙ୍କର ଆଦେଶ ଅପେକ୍ଷାରେ ରହିଲା । କଥା କହିଲା ବେଳେ ସୁନନ୍ଦାକୁ କିଏ ବାଧା ଦେଲେ ସେ ବିରକ୍ତ ହୁଅନ୍ତି । ସଙ୍ଗେ ସଙ୍ଗେ ଆଦେଶ ମିଳିଲା 'ନା, ଚିନି ନାହିଁ ।' ମୁଁ ପଚାରିଲି—'ରମୁ, ତାର ପିଲାଟି କେଡ଼େ ?' ରମୁ ସନ୍ତର୍ପଣରେ ଟିକିଏ ମାଆଙ୍କୁ ଅନେଇ କହିଲା—'ଏଇ ମାସକର ହେବ । ବଡ଼ ଦୁଃଖ ବାବୁ ତାର, ଦୁଧ ଟିକିଏ ମିଳେନାହିଁ ଯେ ଖାଲି ପାଣିରେ ଚିନି ଦେଇ ସେ କଅଁଳା ଛୁଆଟିକୁ ଦାପୁଡ଼େଇ ଦିଏ । ଆପଣ ଥିଲେ ବୋଲି ଲାଜ ମାଡ଼ିଲା ତାକୁ, ସେଥିପାଇଁ ମିଛରେ କହିଲା ଦୁଧ । ମୁଁ ଜାଣେ ଛୁଆଟା ଖାଲି ପାଣି ପିଏ ।'

କାଉଚ ଉପରୁ ମୁଁ ଉଠି ଛିଡ଼ାହେଲି । ଦୁର୍ଗାମଣ୍ଡପ ଉପରୁ ନହବତ୍‌ର ଧ୍ୱନି ଭାସିଆସୁଥାଏ । କହିଲି 'ରମୁ, ସେରେ ଚିନି ତାକୁ ଦେ । ଆଉ ତାକୁ କହ, ତାର ପିଲା ଦୁଇ ବର୍ଷ ହେବାଯାଏ ନିତି ସକାଳେ ଆସି ସେରେ ଗାଈ ଦୁଧ ଘରୁ ନେଇ ଯାଉଥିବ । କ'ଣ କହୁଛ ସୁନନ୍ଦା ? ପିଲାଟା ବଞ୍ଚିଯାଉ । ସୁନନ୍ଦା କିଛି କହିବା ପୂର୍ବରୁ ମୁଁ କହି ଚାଲିଲି—'ହଁ, ସବୁ କଣାହେବ, ନିମନ୍ତ୍ରଣ ବି କରାଯିବ, କିନ୍ତୁ ଜିନିଷ ସବୁ କିଣିବାକୁ ତୁମକୁ ମୋ ସାଙ୍ଗରେ ଯିବାକୁ ହେବ ବଜାରକୁ । ମାଇପିଙ୍କ ପସନ୍ଦ ଆଗରେ ଆମ ପସନ୍ଦ କଣ ପାସଙ୍ଗରେ ପଡ଼େ ? ଶୀଘ୍ର ତିଆରି ହୋଇଯାଅ । ଆଉ ରମୁ, ତୁ ଡ୍ରାଇଭରକୁ କହ ମଟରଟା ଗ୍ୟାରେଜରେ ରଖି ସେ ଘରକୁ ଯାଉ । ତାର ତ ପିଲାପିଲି ଅଛନ୍ତି । ଆଜି ଯେ ବିଜୟା !'

'କିନ୍ତୁ ମୁଁ ଯେ ବଜାର ଯିବ ବୋଲି କହିଲି ?' ସୁନନ୍ଦା ବ୍ୟଥିତ ଦୃଷ୍ଟିରେ ଏତିକି କହି ମୁହଁ ଫେରାଇ ରହିଲେ ।

ମୁଁ ଅପ୍ରସ୍ତୁତ କହିଲି—'ଆଜିଠୁ ଏବେ କୁଳବଧୂ ଅସୂର୍ଯ୍ୟଂପଶ୍ୟା ନ ହେଲେ କ୍ଷତି କଅଣ ? ତୁମେ ପାଦରେ ଯିବ ଦେଖିବ, ବୁଝିବ । ଏଥିରେ ତୁମର ଇଞ୍ଜିନିୟର ସ୍ୱାମୀ ଲାଜ ପାଇବେ ନାହିଁ । ତୁମରି ଭୟ କଅଣ ?,

ସହରର ଛକ ଜାଗାମାନଙ୍କରେ ଜନସମାଗମ ବେଶୀହୋଇ ଶାରଦୀୟ ପୂଜାର ସମ୍ଭାର ନଗରର ବୁକୁ ଉପରେ ଐନ୍ଦ୍ରଜାଲିକ ଶୋଭା ରଚନା କରିଛି । କାହାର ଯେପରି ଅବକାଶ ନାହିଁ, ନାହିଁ ଅବସର କିମ୍ବା ଅବସାଦ । ସୁନନ୍ଦାଙ୍କୁ ମୋର ପାଖେ ପାଖେ ଚଳେଇ ମୁଁ ଯାଇଛି ତାଙ୍କ ଲାଗି ପୂଜାର ଉପହାର କିଣିଦେବା ପାଇଁ ।

ହଠାତ୍ କାହିଁକି ସୁନନ୍ଦା ମୋର ଦୃଷ୍ଟି ଆକର୍ଷଣ କରାଇ କହିଲେ— 'ଇଃ,···ଇଲୋ କେଡ଼େ ଅସନା ପିଲାଟାଏ ମ ?' ମୁଁ ବୋଧହୁଏ ଆଉ କଅଣ ଭାବୁଥିଲି । ଚଳୁ ଚଳୁ କହିଲି— 'କେଉଁ ପିଲା ?'

'ମାଗନ୍ତାଟାଏ, ଦେଖ ମ ଦେଖ ମ···କୁକୁର ବାନ୍ତଗୁଡ଼ାକ କିମିତି ଗୋଟି ପକାଉଛି । ଇହି ଇଲୋ, ମାଆ ଲୋ, ଥୂଃ ଥୂଃ, ମାଆ କି ତାର କଣ ଗୀତ ଚୂଲି ହେବ, ଛୁଡ଼ାହୋଇ ତାକୁ ଅନେଇଛି ଖାଲି ବାଲୁ ବାଲୁ କରି ! ଇସି···ଚାଲ ଚାଲମ, ମୋ ମୁଣ୍ଡ କଅଣ ହୋଇଯାଉଛି—ଚାଲ···।'

ସୁନନ୍ଦାର ବସ୍ତ୍ରାଚିତ ନେହର ଦୃଷ୍ଟି ଯେଉଁଆଡ଼େ ତାଙ୍କୁ ଅଭିଭୂତ କରି ସ୍ଥାଣୁ ଭଳି ଛିଡ଼ା କରେଇଛି ସେଇଆଡ଼େ ମୁଁ ଚାହିଁ

ଦେଖିଲି, ଯାହା କି ମଣିଷ କେବେ ସଜ୍ଞାନରେ ଦେଖିଲେ କମ୍ପି ଉଠିବ !

ଅନ୍ଦାଜ ପାଞ୍ଚ ବର୍ଷର ମଣିଷ ପିଲା । ମୁଣ୍ଡଟା ହାଣ୍ଡି ଭଳି; ଉଦରଟା ଫୁଲିଛି ଅସମ୍ଭବ ଭାବରେ । ଆଖି ନାହିଁ, କେବଳ ଗାତ ଦୁଇଟା; ଗୋଟାଏ ଧାର ପିମ୍ପୁଡ଼ି ସେ ଗାତ ଦ'ଟା ଆକ୍ରମଣ କରିବାକୁ ଆଗେଇଛନ୍ତି । ହାତ ଗୋଡ଼ ଚାରିଟା ଚାରି ଖଣ୍ଡ କାଉଁରିଆ କାଠି । ହାଡ଼ ତଳକୁ ଚପି ହୋଇଯାଇଛି ଚମ । ହନୁହାଡ଼ ଦୁଇଟା ମୁଣ୍ଡ ଖପୁରିରୁ ଆଠଆଙ୍ଗୁଳ ଖଣ୍ଡେ ବାହାରି ଆସିଛି । କୁକୁରଟାର ସଦ୍ୟ ବାନ୍ତିରୁ ଯେଉଁ କ୍ଷିଣ ବାଷ୍ପ ବାହାରୁଛି, ଶୁଙ୍ଘି ହତଭାଗା ବାଆଁ ହାତ ପାପୁଲିରେ ପୋଷେ ବାନ୍ତି ଧରି ଡାହାଣ ହାତର ଖଡ଼ିକା ଭଳି ଆଙ୍ଗୁଠିରେ ସେଇ ବାନ୍ତି ଭିତରୁ ଅଧପଚା ତଣ୍ଡୁଳ କେତୁଟା ପାଟିକୁ ପକାଇ ଦେଉଛି ଟପ୍‌···ଟପ । ତାର ବୁଭୁକ୍ଷା ଯେପରି ଅପ୍ରତିହତ ···ଚିରନ୍ତ । ତା ପରେ ପରେ ଦେଖିଲି ଟୋକାଟା ଭାତଦାନା ବାନ୍ତି ଭିତରୁ ଆଉ ଖାଣ୍ଟି ନ ପାରି ପୋଷାକଯାକ କୁକୁରବାନ୍ତି ଗିଳି-ଦେଲା ପାପୁଲି ଚାଟି ! !

ଛାତିଟା ମୋର ଧଡ଼ାକ୍‌କରି ହୋଇ ସ୍ପନ୍ଦନହୀନ ହୋଇଗଲା । ନିଜକୁ ସମ୍ଭାଳିନେଇ ସ୍ତ୍ରୀଙ୍କୁ ଅନେଇଲି, ସେ ନାକରେ ପଣତ ଦେଇ ଥୁ ଥୁ କରୁଛନ୍ତି । ହତଭାଗାର ମାଆ ଆଡ଼କୁ ଚାହିଁ ଦେଖିଲି, ଏକ ହୃଦୟବିଦାରକ ଦୃଶ୍ୟ, ନର୍ଦ୍ଦମା ଉପରେ ଭାସମାନ ଖଲିଖଣ୍ଡେ । ଉଠ ଉଠି ଦଉଡ଼ି ଅଭାଗୀ ସେ ଖଲିଖଣ୍ଡି ଟାଣିଆଣିଲା ପୂତିଗନ୍ଧମୟ ନର୍ଦ୍ଦମାରୁ । ବୋଧହୁଏ ସେ ଆଶା କରିଥିଲା, ବହୁତ ଭରସା ରଖି-ଥିଲା ଭାଗ୍ୟ ଉପରେ । ଲେଖି ତସ୍କର ଭଳି ଖଲିଟାକୁ ସାଉଁଟି ଆଣି ମେଲେଇ ଦେଖେ ତ ସବୁ ଶୂନ୍ୟ । ତାର ଆଖି ଆଗରେ ଘନ ଅନ୍ଧାର – ଯେପରି ଶତ ସହସ୍ର ଭୂମଣ୍ଡଳ ସେଇ ମହାଶୂନ୍ୟର

ମହାଗ୍ରାସ ଭିତରେ ଲୀନ ହୋଇଯାଉଛନ୍ତି । ଧାଇଁ ଆସିଲା ସେ ରାକ୍ଷସୀ ପରି, ଗୋଟିଏ ନିର୍ଘାତ ନାଡରେ 'ମର ବାଡ଼ପଡ଼ା' କହି ପିଲାଟାକୁ ତଳେ ପକାଇ ଦେଲା, ଆଉ ପରକ୍ଷଣରେ ହତଭାଗିନୀ ଶୋଷିଦେଇଗଲା କୁକୁରର କ୍ଲେଦମିଶା ପରୁ ଲାଳ···ବାନ୍ତି ! !

ଡାକିଲି—'ଶୁଣୁଛ ?'

'ଏଁ ।'

'ରେଡ଼ିଓ ଦୋକାନ ଆଉ ଦୂରକୁ ଟିକିଏ ଅଛି ।'

'ରେଡ଼ିଓ ?'

'ହୁଁ ।'

'ଯିବା ଚାଲ' !

ସହରର ରାଜପଥ ଗୁଡ଼ି ଗଳି ଭିତରେ ପହଞ୍ଚିଲୁ ମୁଁ ଓ ସୁନନ୍ଦା । ସୁନନ୍ଦାର ପଥଚଲା ଅଭ୍ୟାସ ନାହିଁ । ତାଙ୍କୁ ବାଧିଲାଣି । ହଠାତ୍ ଶୁଣିଲି କିଏ କହୁଛି—ଦୁଇ ମାସର ପିଲା, ମାସେ ହେଲା କ୍ଷୀର ମୁହଁ ଦେଖିନି । ମାଆ ଡାକୁଣୀ ଯାହା ପେଜ ମଦେ ତାକୁ ପିଆଇଦେଲା ପିଲାଟା ତା' ଆଖି କାନ ଖୋଷି ମାଆ କୋଳରେ ସେଇଠି ଢଳିପଡ଼ିଲା, ହା ଭଗବାନ ! ଆହା !

ମୁଁ ଆଗେଇ ଚାଲିଲି —

ସୁନନ୍ଦା ମୋର ହାତ ଧରି କହିଲେ, 'କୁଆଡ଼େ ଯାଉଛ ?'

କାହିଁକି ଶାଢ଼ୀ, ରେଡ଼ିଓ,ତାପରେ ଅଙ୍ଗୁରି ପେଣ୍ଡା, ଏସବୁ ?

'ନା ଥାଉ'—ଦେଖିଲି ସୁନନ୍ଦାର ଆଖି ଛଳ ଛଳ, କପୋଳରେ ଝୋଳ ।

'—ରାମ ନାମ ସତ୍ୟ···ରାମ ନାମ···'

'ଓ' କହି ସୁନନ୍ଦା ଚିତ୍କାର କରିଉଠିଲେ । ମୁଁ ବ୍ୟସ୍ତ ଭାବରେ ଗୋଟିଏ ଚଳନ୍ତା ଟାକ୍‌ସି ଅଟକାଇ ସୁନନ୍ଦାର ଅନିଚ୍ଛା ସତ୍ତ୍ୱେ ତାଙ୍କୁ ବସାଇ ଡ୍ରାଇଭରକୁ କହିଲି, 'ଚାଲ ବଙ୍ଗଳାକୁ' ।

ଠିକ୍ ସେତିକିବେଳେ ନିଖିଳ ଶବ ସଂସ୍କାର ସମିତିର ଜଣେ ସେବକ ମତେ ନମସ୍କାର କରି ମଟର ପାଖେ ଛିଡ଼ାହେଲେ । କାନ୍ଧ ଉପରେ ସମିତିର ହୁଣ୍ଡି ।

'ସାର୍, ବୁଢ଼ା ଆଠ ଦିନ ଭୋକରେ ଏହିକ୍ଷଣି ଟଳିପଡ଼ିଲା ! ପ୍ରତିଦିନ ପିଲା ମଣିଷ ମାଇପି ବୁଢ଼ା ହୋଇ ଦଶ ପନ୍ଦର ଉଠେଇ-ନେବାକୁ ପଡ଼ୁଛି । ଆପଣଙ୍କ ଭଳି ବଦାନ୍ୟ ବ୍ୟକ୍ତିଙ୍କ ପାଖରୁ ଏ ସମିତି କିଛି ସାହାଯ୍ୟ ଭିକ୍ଷା କରେ । ଦେବେ ସାର୍ କିଛି ?'

ସୁନନ୍ଦାର ବେପଥୁ ହାତ ବଢ଼ାଇଦେଲା କୋଡ଼ିଏଟି ଟଙ୍କା । ଆଖିର ପାଣିରେ ତାଙ୍କର ଆଖି ଦୁଇଟି ସେତେବେଳକୁ ବୁଡ଼ି ଯାଇଥିଲା । ଏଭଳି ଭାବପ୍ରବଣା ମାଆଙ୍କୁ ଦେଖି ସେବକଟି ବୋଧହୁଏ ସଙ୍କୁଚିତ ନ ହୋଇ କହିଲା—

"ମାଆ, ଏ ଜାତି ଅଭିଶପ୍ତ । କେବେ ଶୁଣିଛନ୍ତି ନ ଖାଇ ଭୋକ ଉପାସରେ କେଉଁ ଜାତି ମରିଛି ? ମଫସଲର କାହାଣୀ ନ ଶୁଣିବା ହିଁ ଭଲ । ପଚାଳି ପଟରେ ପଚାଳି, କେବଳ ଅନାହାର ନୁହେଁ, ମହାମାରୀ, ଓଲେଉଠା । ଅଖାଦ୍ୟ ଖାଇଲେ ପିଣ୍ଡ ରହିବ ତ ମାଆ ? ମୁଁ ଯାଏଁ, ଧନ୍ୟବାଦ···ରାମ ନାମ ସତ୍ୟ ହେ'···

ଲୋକଟି ଚାଲିଗଲା । ମୁଁ ଚାହିଁଛି, ଅମ୍ଳାନ ବଦନରେ ଭୋକେଇରେ ସେ କାନ୍ଧ ଦେଇଦେଲା ।

'ସୁନନ୍ଦା—' ମୁଁ ଡାକିଲି । ମୋର ଆର୍ଦ୍ର କଣ୍ଠରେ ବୋଧ-ହୁଏ ଡାକଟା ଭୟଙ୍କର ଶୁଭିଥିବ । ସୁନନ୍ଦା ଚମକି ମୋ ମୁହଁକୁ ଚାହିଁ ରହିଲେ, ମୁଁ କହିଲି —

‘ଟାକ୍ସି ଚଳୁ—ବଙ୍ଗଳାକୁ ନୁହେଁ । ଶାଢ଼ୀ·····ଶାଢ଼ୀର ଦୋକାନକୁ—ଅଙ୍ଗୁର ଦୋକାନକୁ, ଜଜ୍ ସାହେବଙ୍କୁ ନିମନ୍ତ୍ରଣ କରାଯିବ ଯେ···’

ସୁନନ୍ଦାର ଉଚ୍ଛ୍ୱସିତ କ୍ରୋଧ ସହିବାର ସୀମା ପାର ହୋଇଥିଲା । କହିଲେ, ‘ମତେ କ୍ଷମା କର । ପୋଡ଼ିଯାଉ ସେ ନିମନ୍ତ୍ରଣ । ମୋ ରାଣ ଖାଅ, ତୁମ ରୁମ୍‌ରେ ଯେଉଁ ଏଇଭଳି ଦୁଃଖୀ ଭୋକୀ ଶୋଷୀଙ୍କର ଛବି ରହିଛି, ସେ ସବୁ ଆଜିଠାରୁ ମୋ ଘରେ ରହିବ । ଆଉ ଦେଖ—ରେଡ଼ିଓ, ଶାଢ଼ୀ ଆଉସବୁ ଜିନିଷ ପାଇଁ ଯେଉଁ ସାତଶ ଟଙ୍କା ଆଣିଛ, ତାହାର ଖର୍ଚ୍ଚରେ ଏଇମାନଙ୍କ ମୁହଁରେ ମୁଠିଏ ମୁଠିଏ ପକାଅ, ଢ଼ୋକେ ପାଣି ଦିଅ । ସେତକ ସରିଗଲେ ମୁଁ ଆଉ ଟଙ୍କା ଯୋଗାଇଦେବ । ଏମାନେ କିପରି ବଞ୍ଚନ୍ତୁ ।”

ସେହିଦିନଠୁଁ ‘ସୁନନ୍ଦା ଭୋଜନାଳୟ’ ପ୍ରତିଷ୍ଠିତ ହୋଇଛି । ପ୍ରତି ସଞ୍ଜରେ ସେଠାରେ ପାଞ୍ଚ ଶହରୁ ଊର୍ଦ୍ଧ୍ୱ ଭିକାରି ଭିକାରୁଣୀ ମୁହଁରେ ଦାନା ଦିଅନ୍ତି । ନିଜେ ସୁନନ୍ଦା ଚୁଲିରେ ବସାନ୍ତି ହାଣ୍ଡି, ସାକ୍ଷାତ ଅନ୍ନପୂର୍ଣ୍ଣା ! ମୋ ଜୀବନ ସାର୍ଥକ ହୋଇଛି । ମିଳେଇ ଯାଇଛି ଦୁଇ ହୃଦୟ ଭିତରେ ତୁଙ୍ଗ ବ୍ୟବଧାନ ।

---

# ଘର ବାହୁଡ଼ା

## [ ବିଶ୍ୱକବି ରବୀନ୍ଦ୍ରନାଥ ]

## ଅନୁବାଦକ--ଶ୍ରୀ ରବିନାରାୟଣ ମହାପାତ୍ର

ବାବୁ ଘରେ ଚାକିରି ରହିଲାବେଳେ ରାଇଚରଣର ବୟସ ହୋଇଥିଲା ବାର ବର୍ଷ । ଯଶୋହର ଜିଲ୍ଲାରେ ତାର ଘର । ଲମ୍ବା ବାଳ, ବଡ଼ ବଡ଼ ଆଖି, ଚିକ୍‌କଣ କଳା ରଙ୍ଗର ବାଳକଟିଏ । ଜାତିରେ କରଣ । ବାବୁ ମଧ୍ୟ କରଣ । ତେଣୁ ବାବୁଙ୍କ ବର୍ଷକର ଛୁଆଟିର ଲାଳନପାଳନରେ ସାହାଯ୍ୟ କରିବା ହିଁ ଥିଲା ରାଇଚରଣର ପ୍ରଧାନ କର୍ତ୍ତବ୍ୟ ।

ସେଇ ଶିଶୁଟି କାଳକ୍ରମେ ରାଇଚରଣର କୋଳ ଛାଡ଼ି ସ୍କୁଲ, ସ୍କୁଲ ଛାଡ଼ି କଲେଜ, କଲେଜ ଛାଡ଼ି ମୁନସିଫ ଚାକିରି କଲେଣି । ଏବେ ରାଇଚରଣ ତାଙ୍କର ଭୃତ୍ୟ । ତାହାର ମଧ୍ୟ ଆଉ ଜଣେ ମୁନିବ ବଢ଼ିଲେଣି । ବୋହୂ ଘରକୁ ଆସିଲେଣି । ସୁତରାଂ ମୁନ୍‌ସିଫ୍ ଅନୁକୂଳ ବାବୁଙ୍କ ଉପରେ ରାଇଚରଣର ପୂର୍ବେ ଯେତେ ଦାବି ଥିଲା, ସେଥିରୁ ଅଧିକାଂଶ ନୂଆ କର୍ତ୍ତ୍ରୀଙ୍କର ହାତରେ ରହିଲାଣି ।

କିନ୍ତୁ କର୍ତ୍ତ୍ରୀ ସହରକୁ ଯାଇ ଯେପରି ରାଇଚରଣର ପୂର୍ବ ଅଧିକାର କେତେକଟା ଗ୍ରାମ ଅପେକ୍ଷା କମ୍ କରିଦେଇଛନ୍ତି; ସେହିପରି ଗୋଟିଏ ନୂତନ ଅଧିକାର ଦେଇ ଅନେକଟା ପୂରଣ କରିଛନ୍ତି । ଅଳ୍ପ ଦିନ ହେଲା ଅନୁକୂଳ ବାବୁଙ୍କର ପୁତ୍ର ସନ୍ତାନଟିଏ ଜନ୍ମଲାଭ ହୋଇଛି, ଆଉ ରାଇଚରଣ କେବଳ ନିଜ ଚେଷ୍ଟା ଅଧ୍ୟବସାୟ ବଳରେ ତାକୁ ସମ୍ପୂର୍ଣ୍ଣରୂପେ ଆୟତ୍ତ କରିନେଇଛି ।

ସେ ଅତି ବେଗରେ ସବୁତ ତାକୁ ଝୁଲାଏ, ଖୁବ୍ କୌଶଳରେ ଦୁଇ ହାତରେ ଧରି ଉପରକୁ ଟେକିଦିଏ – ତା ମୁହଁ ପାଖରେ ପାଟିକରି ମୁଣ୍ଡ ହଲାଏ । ଉତ୍ତରର କୌଣସି ଆଶା ନ ରଖି ଏଇ ଶିଶୁଟିକୁ ଏମିତି ସବୁ ସମ୍ପୂର୍ଣ୍ଣ ଅର୍ଥହୀନ ଅସଙ୍ଗତ ପ୍ରଶ୍ନ ପଚାରେ ଯେ, ଏହି କ୍ଷୁଦ୍ର ଶିଶୁଟି ରାଇଚରଣଙ୍କୁ ଦେଖିଲେ ଏକାବେଳକେ ପୁଲକିତ ହୋଇଉଠେ ।

ଅତି ସାବଧାନରେ ପିଲାଟି ଦୁଆରବନ୍ଧ ଡେଇଁବାକୁ ଗଲା-ବେଳେ, କେହି ତାକୁ ଧରିବାକୁ ଆସିଲେ ସେ ଖିଲ ଖିଲ ହସି ଦ୍ରୁତ ବେଗରେ ପଳାଇଯାଇ ନିରାପଦ ସ୍ଥାନରେ ଲୁଚିବାକୁ ଚେଷ୍ଟା କରେ । ତାହାର ଏଇ ଅସାଧାରଣ ବୁଦ୍ଧିଶକ୍ତି ଓ ବିଚାର-ଶକ୍ତି ଦେଖି ରାଇଚରଣ ଏପରି ମୁଗ୍ଧ ହୋଇଯାଏ ଯେ, ମା'ଙ୍କ ପାଖକୁ ଦଉଡ଼ିଯାଇ ଗର୍ବରେ ସେ କହେ; " ମା ! ତମ ପୁଅ ବଡ଼ ହେଲେ ଜଜ୍ ସାହେବ ହେବ, ମାସକୁ ପାଞ୍ଚ ହଜାର ଟଙ୍କା ରୋଜଗାର କରିବ ।

ପୃଥିବୀରେ ଆଉ କେଉଁ ମାନଙ୍କ ଶିଶୁ ଯେ ଏହି ବୟସରେ ଦୁଆରବନ୍ଧ ଡେଇଁବା ପରି ଅସମ୍ଭବ ବୁଦ୍ଧିର ପରିଚୟ ଦେଇ-ପାରେ, ତାହା ହୁଏତ ରାଇଚରଣ ଧାରଣା କରିପାରୁ ନ ଥିଲା— କେବଳ ଭବିଷ୍ୟତ ଜଜ୍ ସାହେବଙ୍କ ପକ୍ଷରେ ଏହା ଯେପରି ଏକ ଆଶ୍ଚର୍ଯ୍ୟର କଥା । ଅବଶେଷରେ ଶିଶୁଟି ଯେତେବେଳେ ଟଳମଳ ହୋଇ ଚାଲିବାକୁ ଆରମ୍ଭ କଲା, ସେ ଏକ ଆଶ୍ଚର୍ଯ୍ୟ ବ୍ୟାପାର ହୋଇପଡ଼ିଲା ଏବଂ ଯେତେବେଳେ ମାଙ୍କୁ ମା, ପିଉସୀଙ୍କୁ ପିଚି, ରାଇଚରଣଙ୍କୁ ଚନ ବୋଲି ଡାକିପାରିଲା, ସେତେବେଳେ ରାଇଚରଣ ସେହି ପ୍ରତ୍ୟାଶିତ ସମ୍ବାଦ ଚାରିଆଡ଼େ ପ୍ରଚାର କରିବାକୁ ଲାଗିଲା । ସବୁଠାରୁ ଆଶ୍ଚର୍ଯ୍ୟର ବିଷୟ ଯେ, "ମାଙ୍କୁ ମା

ଡାକେ, ପିଉସୀଙ୍କୁ ପିଚ,, କିନ୍ତୁ ମତେ କହେ ଚନ ।" ବାସ୍ତବିକ ଶିଶୁର ମୁ ଣ୍ଡକୁ ଏ ବୁଦ୍ଧି କେଉଁଠୁ ଆସିଲା, କହିବା କଷ୍ଟ । ନିଶ୍ଚୟ ବଡ଼ଲୋକେ ଏପରି ଅଲୌକିକତାର ପରିଚୟ ଦେଇପାରିବେ ନାହିଁ, ଆଉ ଦେଇପାରୁଥିଲେ ତାହାର ଜଜ୍ ସାହେବ ହବାର ସମ୍ଭାବନା ସମ୍ପର୍କରେ ସାଧାରଣ ଲୋକେ ସନ୍ଦେହ ପ୍ରକାଶ କରନ୍ତେ । କିଛିଦିନ ପରେ ମୁହଁରେ ଦଉଡ଼ି ବାନ୍ଧି ରାଇଚରଣକୁ ଘୋଡ଼ା ହେବାକୁ ପଡ଼ିଲା । ମାଲ ସାଜି ଶିଶୁଟି ସଙ୍ଗେ ତାକୁ କୁସ୍ତି କରିବାକୁ ପଡ଼ିଲା ଆଉ ହାରିଯାଇ ତଳେ ପଡ଼ି ନ ଗଲେ କଥା ସରିଲା ।

ଏହି ସମୟରେ ଅନୁକୂଳ ବାବୁ ପଦ୍ମାନଦୀ କୂଳରେ ଥିବା ଗୋଟିଏ ଜିଲ୍ଲାକୁ ବଦଳିହେଲେ । ପୁଅ ପାଇଁ ସେ କଲିକତାରୁ ଗୋଟିଏ ଠେଲାଗାଡ଼ି କିଣିନେଲେ । ସାଟିନ କନାର ଜାମା, ମୁଣ୍ଡରେ ଜରିଟୋପି ଓ ହାତରେ ସୁନାବଲା ଏବଂ ପାଦରେ ଦୁଇଟି ଗୋଡ଼ଖଡ଼ୁ ପିନ୍ଧାଇ ରାଇଚରଣ ନବକୁମାରଙ୍କୁ ଦୁଇବେଳା ଗାଡ଼ିରେ ବସାଇ ବୁଲାଇନିଏ ।

ବର୍ଷାଦିନ ଆସିଲା । ଗୃହୁଁ ଗୃହୁଁ କ୍ଷୁଧାର୍ତ୍ତ ପଦ୍ମା ନଦୀ, ଉଦ୍ୟାନ, ଗ୍ରାମର ଶସ୍ୟକ୍ଷେତ୍ର ଗୋଟାଏ ଗୋଟାଏ ଗ୍ରାସରେ ଶେଷ କରିଦେଲା । ପଠାର କାଶବଣ, ଝାଉଁ ବଗିଚା ପାଣିରେ ବୁଡ଼ିଗଲା । ଅବିରତ ଟୁପଟାପ୍ ଶବ୍ଦ ଓ ପ୍ରଖର ଜଳ ସ୍ରୋତର ଗର୍ଜ୍ଜନରେ ଚତୁର୍ଦ୍ଦିଗ ମୁଖରିତ ହୋଇଉଠିଲା । ଦ୍ରୁତଗତିରେ ଧାବମାନ ଫେନରାଶି ଦେଖି ନଦୀର ତୀବ୍ର ଗତି ଲକ୍ଷ୍ୟ କରି ହେଉଥିଲା ।

ଅପରାହ୍ନରେ ବାଦଲମାଳା ଖେଳି ବୁଲୁଥାଏ—ବର୍ଷାର ସମ୍ଭାବନା ନ ଥାଏ । ରାଇଚରଣର ଖାମଖିଆଲି କ୍ଷୁଦ୍ର ମୁନିବଟି କୌଣସି ମତେ ଘରେ ରହିବାକୁ ଚାହିଁଲା ନାହିଁ । ଗାଡ଼ିରେ ଯାଇ ବସି ରହିଲା । ରାଇଚରଣ ଧୀରେ ଧୀରେ ଧାନକ୍ଷେତର ଧାରେ

ଧାରେ ଗାଡ଼ି ଠେଲି ଠେଲି ନଦୀକୂଳରେ ପହଞ୍ଚିଲି । ନଦୀରେ ଗୋଟିଏ ହେଲେ ନାଆ ନାହିଁ । କୂଳସ୍ଥିତ ମଠରେ ଗୋଟିଏ ହେଲେ ଲୋକ ଦିଶୁ ନାହିଁ । ବାଦଲମାଳାର ଫାଙ୍କ ଭିତରେ ଦେଇ ଦେଖାଦେଉଛି ସେପାରିର ଜନହୀନ ବାଲୁକା ତଟରେ ନୀରବ ଉଜ୍ଜ୍ୱଳ ସମାରୋହରେ ସୂର୍ଯ୍ୟାସ୍ତର ଆୟୋଜନ । ସେଇ ନିସ୍ତବ୍ଧତା ମଧ୍ୟରେ ହଠାତ୍ ଶିଶୁଟି ଗୋଟିଏ ଦିଗକୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା, "ଚନ ଫୁ" । ଅନତିଦୂରରେ ଜଳପୂର୍ଣ୍ଣ ଭୂମି ଉପରେ ଗୋଟିଏ ବଡ଼ କଦମ୍ବ ଗଛର ଉଚ୍ଚା ଡାଳରେ କେତୋଟି କଦମ୍ବ ଫୁଲ ଫୁଟିଥିଲା । ସେଇ ଫୁଲ ପ୍ରତି ଶିଶୁର ଲୁବ୍ଧ ଦୃଷ୍ଟି ଆକୃଷ୍ଟ ହୋଇଅଛି । ଦୁଇ ଚାରି ଦିନ ତଳେ ରାଇଚରଣ କାଠରେ ଗୁନ୍ଥି କଦମ୍ବ ଫୁଲର ଗାଡ଼ିଟିଏ ତିଆରି କରି ଦେଇଥିଲା । ସେଇ ଫୁଲ-ଗାଡ଼ିରେ ଦଉଡ଼ିଟିଏ ବାନ୍ଧି ଟାଣିବାରେ ଶିଶୁଟି ଏତେ ଆନନ୍ଦିତ ହୋଇଥିଲା ଯେ, ସେଦିନଠୁଁ ରାଇଚରଣକୁ ଆଉ ଲଗାମ ପିନ୍ଧିବାକୁ ହେଲା ନାହିଁ । ଘୋଡ଼ା ହଉ ହଉ ସେ ଏକାବେଳକେ ସହିସ ପଦକୁ ଉଠିଗଲା ।

କାଦୁଅ ଭିତରେ ଫୁଲ ତୋଳି ଯିବାକୁ ଚନର ପ୍ରବୃତ୍ତି ହେଲା ନାହିଁ । ହଠାତ୍ ବିପରୀତ ଦିଗକୁ ଆଙ୍ଗୁଠି ଦେଖାଇ କହି ପକାଇଲା, "ଦେଖ୍ ଦେଖ୍, ଏଇ ପକ୍ଷୀ ଦେଖ, ଆରେ ଉଡ଼ି-ଗଲାରେ, ଆରେ ପକ୍ଷୀ, ଆ, ଆ ।" ଏହିପରି ଅବିଶ୍ରାନ୍ତ ଭାବରେ ବିଚିତ୍ର କଳରବ କରି ଜୋରରେ ଗାଡ଼ିଟାକୁ ଠେଲିବାକୁ ଲାଗିଲା ।

କିନ୍ତୁ ଯେଉଁ ଶିଶୁ ଭବିଷ୍ୟତରେ ଜଜ୍ ସାହେବ ହେବ ତାକୁ କି ଏତେ ସହଜରେ ଭୁଲାଇ ହୁଏ । ବିଶେଷତଃ ଆଖିରେ ପଡ଼ିଲା ଭଳି ଚତୁର୍ଦ୍ଦିଗରେ କିଛି ନ ଥିଲା; ଆଉ ମନଗଢ଼ା ପକ୍ଷୀ କଥା କହି କେତେ ଦଣ୍ଡ ବା ଭୁଲାଇ ହେବ ?

ରାଇଚରଣ କହିଲା, "ତେବେ ତମେ ଗାଡ଼ିରେ ବସିଥା କି ମୁଁ ସାଙ୍ଗେ ସାଙ୍ଗେ ଫୁଲ ତୋଳି ଆଣୁଛି ! ଖବରଦାର, ନଈକୂଳକୁ ଯିବ ନାହିଁ ।" ତା ପରେ ସେ ଆଣ୍ଠୁ ଉପରକୁ ଲୁଗା ଟେକି ଫରକଚ୍ଛ ମାରି କଦମ୍ବ ଗଛ ଆଡ଼କୁ ଚାଲିଲା ।

କିନ୍ତୁ ଏଇ ଯେ ରାଇଚରଣ ପାଣି ପାଖକୁ ଯିବାକୁ ବାରଣ କରିଗଲା, ସେଥିରେ ଶିଶୁ ମନ କଦମ୍ବ ଫୁଲଠାରୁ ଫେରିଆସି, ମୁହୂର୍ତ୍ତକ ଭିତରେ ପାଣି ଆଡ଼କୁ ଧାଇଁବାକୁ ଲାଗିଲା । ଦେଖିଲା, କଳକଳ ନାଦରେ ଛଳଛଳ ହୋଇ ଜଳଧାରା ଛୁଟି ଚାଲିଛି—ସତେ ଯେପରି ଦୁଷ୍ଟାମି କରି କୌଣସି ଗୋଟାଏ ବଡ଼ ରାଇଚରଣର ହାତ ଛାଡ଼ି ଲକ୍ଷେ ଶିଶୁ କଳରବ କରି ବାରଣ ହୋଇଥିବା ସ୍ଥାନକୁ ହଠାତ୍ ଦୌଡ଼ି ଦୌଡ଼ି ପଳାଇ ଯାଉଛନ୍ତି—

ସେହି ଚପଳ କାର୍ଯ୍ୟଲାଗି ମାନବ ଶିଶୁର ଚିତ୍ତ ଚଞ୍ଚଳ ହୋଇଉଠିଲା, ଗାଡ଼ିରୁ ଓହ୍ଲାଇ ଧୀରେ ଧୀରେ ସେ ନଦୀକୂଳକୁ ଗଲା । ଗୋଟାଏ ବଡ଼ ଡଙ୍ଗା ଗୋଟାଇ ନେଇ, ଝୁଙ୍କିପଡ଼ି ସେ ମାଛ ଧରିବାକୁ ଲାଗିଲା । ଭାସିଯାଉଥିବା ଜଳଧାରାର ଅସ୍ଫୁଟ କଳ-ଧ୍ୱନି ଶିଶୁକୁ ବାରମ୍ବାର ନିଜର ଖେଳପଡ଼ିଆକୁ ଆହ୍ୱାନ କଲା ।

ଝୁପ୍‌କରି ହଠାତ୍ ଗୋଟାଏ ଶବ୍ଦ ହେଲା, କିନ୍ତୁ ବର୍ଷାଦିନେ ପଦ୍ମାଷ୍ଟାରରେ ଏହିପରି କେତେ ଶବ୍ଦ ଶୁଣାଯାଏ । ରାଇଚରଣ ଅଞ୍ଚିରେ ଅଣ୍ଡିଏ ହେବ କଦମ୍ବ ଫୁଲ ତୋଳିଲା; ଗଛରୁ ଓହ୍ଲାଇ ପଡ଼ି ହସ ହସ ମୁହଁରେ ଗାଡ଼ି ପାଖକୁ ଦଉଡ଼ି ଆସି ଦେଖିଲା, କେହି ନାହିଁ । ଚାରିଆଡ଼େ ଚାହିଁ ଦେଖିଲା, କେଉଁଠି କାହାରି ଚିହ୍ନବର୍ଣ୍ଣ ଦିଶୁ ନାହିଁ ।

ମୁହୂର୍ତ୍ତକ ଭିତରେ ରାଇଚରଣର ରକ୍ତ ବରଫ ପରି ଥଣ୍ଡା ପାଲଟିଗଲା । ସମସ୍ତ ଜଗତ ମଳିନ ବିବର୍ଣ୍ଣ ଧୂଆଁ-ଧୂସର

ଦେଖାଗଲା । ପଞ୍ଚା ବୁକୁରେ ଥରେ ପ୍ରାଣ ଖୋଲି ଚିତ୍କାର କରି ଡାକିଲା, "ବାବୁ – ସାନବାବୁ —ମୋ ସୁନା ଛୁଆବାବୁ !"

କିନ୍ତୁ 'ଚନ' ବୋଲି କେହି ଉତ୍ତର ଦେଲେ ନାହିଁ, ଦୁଷ୍ଟାମୀକରି କାହିଁ ଶିଶୁକଣ୍ଠଟିଏ ହସିଉଠିଲା ନାହିଁ; କେବଳ ପଦ୍ମାନଦୀ ପୂର୍ବପରି କଳକଳ, ଛଳଛଳ ହୋଇ ଛୁଟି ଚାଲିଲା—ଯେପରି ସେ କିଛି ଜାଣେ ନାହିଁ, ଆଉ ପୃଥିବୀର ଏଇସବୁ ସାମାନ୍ୟ ଘଟଣାରେ ମନ ଦେବାକୁ ଯେପରି ତାହାର ମୁହୂର୍ତ୍ତେ ବେଳ ନାହିଁ ।

ସନ୍ଧ୍ୟା ହେଲା । ଉତ୍କଣ୍ଠିତ ହୋଇ ମାଆ ଚାରିଆଡ଼େ ଲୋକ ପଠାଇଲେ, ଲଣ୍ଠନ ଧରି ନଦୀକୂଳରେ ଲୋକ ଆସି ଦେଖିଲେ, ନିଶୀଥର ଝଡ଼ ବତାସପରି ରାଇଚରଣ "ବାବୁ—ଛୁଆବାବୁ ମୋର" ବୋଲି ଭଗ୍ନ କଣ୍ଠରେ ଚିତ୍କାର କରି ଘୂରିବୁଲୁଛି । ଅବଶେଷରେ ଘରକୁ ଫେରି ରାଇଚରଣ ମା'ଙ୍କ ପାଦତଳେ ଧୁମ୍‌କରି ପଡ଼ିଗଲା । ତାକୁ ଯେତେ ପଚାରିଲେ ସେ କେବଳ କାନ୍ଦି କାନ୍ଦି କହିଲା, "ମା, ମୁଁ ଜାଣିନାହିଁ ।"

ସମସ୍ତେ ହୁଏତ ମନେମନେ ବୁଝିପାରିଲେ ଏହା ପଦ୍ମାନଦୀର କାମ; ତଥାପି ଗାଆଁ ମୁଣ୍ଡରେ ଯେଉଁ ଦଳେ ଗ୍ରାମବାସୀ ଜମା ହୋଇଥିଲେ, ସେଥିପ୍ରତି ସେମାନଙ୍କର ସନ୍ଦେହ ତୁଟିଲା ନାହିଁ ଆଉ ମା'ଙ୍କ ମନ ଭିତରେ ଏପରି ଗୋଟିଏ ସନ୍ଦେହ ଖେଳିଗଲା—ରାଇଚରଣ ବୋଧହୁଏ ଚୋରି କରିଅଛି । ତେଣୁ ସେ ତାକୁ ଡାକି ନେହୁରା ହୋଇ କେତେ କହିଲେ, "ତୁ ମୋ ପିଲାକୁ ଫେରାଇ ଦେ —ଯେତେ ଟଙ୍କା ଚାହିଁବୁ, ତତେ ଦେବି ।" ଏକଥା ଶୁଣି ରାଇଚରଣ କେବଳ ମୁଣ୍ଡ ବାଡ଼େଇ ହେଲା । ସାଆନ୍ତାଣୀ ତାକୁ ତଡ଼ିଦେଲେ ।

ସ୍ତ୍ରୀଙ୍କ ମନରୁ ରାଇଚରଣ ପ୍ରତି ଏହି ସନ୍ଦେହ ଦୂରକରିବାପାଇଁ ଅନୁକୂଳବାବୁ ବହୁ ଚେଷ୍ଟା କରିଥିଲେ; ପଚାରିଥିଲେ, "କେଉଁ

ଉଦ୍ଦେଶ୍ୟରେ ବା ରାଇଚରଣ ଏପରି ଜଘନ୍ୟ କାର୍ଯ୍ୟ କରିପାରେ ?'
ଗୃହିଣୀ କହିଲେ, "କାହିଁକି ? ପିଲାଦେହରେ ସୁନାର ଗହଣା ଥିଲା ।"

୨

ରାଇଚରଣ ତା ଗାଁକୁ ଫେରିଗଲା । ବହୁଦିନ ହେଲା ତାର ସନ୍ତାନସନ୍ତତି ହେଉ ନ ଥିଲେ । ଯୋଗକୁ ବର୍ଷେ ନ ପୂରୁଣୁ ପରିଣତ ବୟସରେ ତା ସ୍ତ୍ରୀ ପୁତ୍ର ସନ୍ତାନଟିଏ ପ୍ରସବ କରି ଇହଲୀଳା ସମ୍ବରଣ କଲେ ।

ଏହି ନବଜାତ ଶିଶୁଟି ପ୍ରତି ପ୍ରଥମେ ରାଇଚରଣର ଘୃଣା ହେଲା । ସେ ମନେକଲା, "ଏହି ଶିଶୁଟି ଯେପରି ଛଳକରି ସାନ-ବାବୁର ସ୍ଥାନ ଅଧିକାର କରିବାକୁ ଆସିଛି । ମୁନିବର ଏକମାତ୍ର ଶିଶୁ ସନ୍ତାନକୁ ଜଳରାଶିରେ ଭସାଇଦେଇ ନିଜେ ସେ ପୁତ୍ର-ସୁଖ ଉପଭୋଗ କରିବା ଯେପରି ଏକ ମହାପାପ । ରାଇଚରଣର ବିଧବା ଭଉଣୀଟି ପାଖରେ ନ ଥିଲେ ଏହି ନବଜାତ ଶିଶୁଟି ହୁଏତ ପୃଥିବୀରେ ବେଶୀଦିନ ନ ଥାନ୍ତା—

ଆଶ୍ଚର୍ଯ୍ୟର କଥା—ଏହି ଶିଶୁଟି କିଛିଦିନ ପରେ ଏରୁଣ୍ଡିବନ୍ଧ ଟପିବାକୁ ଆରମ୍ଭ କଲା ଏବଂ କୌଣସି ପ୍ରକାର ବାରଣ ନ ମାନି କୌତୁକ ସହକାରେ ଚତୁରତା ପ୍ରକାଶ କରିବାକୁ ଲାଗିଲା । ଏପରିକି ଏଇ ଶିଶୁର କଣ୍ଠସ୍ୱର, ହାସ୍ୟ, କାନ୍ଦଣାସ୍ୱର ଅନେକ ଅଂଶରେ ସେଇ ଶିଶୁଟିର ଅନୁରୂପ । ଦିନେ ଦିନେ ଏହାର କାନ୍ଦ ଶୁଣି ରାଇଚରଣ ହଠାତ୍ ଥରିଉଠେ । ମନେହୁଏ ସାନବାବୁ ରାଇଚରଣକୁ ନ ପାଇ କୋଉଠି କାନ୍ଦୁଛନ୍ତି ।

ରାଇଚରଣର ଭଉଣୀ ଶିଶୁର ନାମକରଣ କରିଥିଲେ 'ଫେଲନା'—ଫେଲନା ଯଥାସମୟରେ ପିଉସୀକୁ ପିଶ ବୋଲି ଡ଼ାକିଲା । ସେଇ ପରିଚିତ ଡାକ ଶୁଣି ଦିନେ ହଠାତ୍ ରାଇଚରଣର

ମନହେଲା—"ତେବେ ତ ସାନବାବୁ ମୋ ମାସ୍ଟା ଗ୍ଭଡ଼ପାରି ନାହାନ୍ତି । ସେ ତ ଫେରଆସି ମୋରି ଘରେ ଜନ୍ମଗ୍ରହଣ କରିଛନ୍ତି ।"

ସେତେବେଳେ ମା ସାଆନ୍ତାଣୀଙ୍କର ସେଇ ଦାରୁଣ ସନ୍ଦେହ କଥା ହଠାତ୍ ମନେପଡ଼ିଲା—ଆଶ୍ଚର୍ଯ୍ୟ ହୋଇ ମନେ ମନେ ଭାବିଲା, 'ଆହା, ସତେ; ସତେ ମା ମନ ସିନା ତାଙ୍କର ଜାଣିପାରିଥିଲା ତାଙ୍କ ପିଲାକୁ କିଏ ଚୋରିକରିଛି !' ଏତେଦିନ ଶିଶୁକୁ ସେ ଯେ ଅଯତ୍ନ କରିଛି—ସେଥିଲାଗି ବହୁତ ଅନୁତାପ କଲା । ଶିଶୁ ପାଖରେ ପୁଣି ସେ ନିଜକୁ ଧରାଦେଲା ।

ଫେଲନାକୁ ରାଇଚରଣ ବଡ଼ଘରର ପିଲାପରି ମଣିଷ କରି ଗଢ଼ିବାକୁ ଲାଗିଲା । ସାଟିନ୍ କନାର ଜାମା କିଣିଦେଲା । ଜରିର ଟୋପି ଆଣିଲା । ମୃତ ସ୍ତ୍ରୀର ଗହଣା ଭାଙ୍ଗି ଚୁଡ଼ି ଓ ବଳା ତିଆରି କଲା, ଗାଁର କୌଣସି ପିଲା ସହିତ ତାକୁ ଖେଳିବାକୁ ଗ୍ଭଡ଼ିଲା ନାହିଁ —ଦିନ ରାତି ତାହାର ଏକମାତ୍ର ଖେଳସଙ୍ଗୀ ହେଲା । ଗାଁର ପିଲାମାନେ ସୁଯୋଗ ପାଇଲେ ତାକୁ ନବାବ ପୁଅ କହି ଉପହାସ କଲେ ଏବଂ ସେହି ଅଞ୍ଚଳର ଲୋକେ ରାଇଚରଣର ଏହି ବଡ଼ଲୋକ ବେଭାର ଦେଖି ଆଶ୍ଚର୍ଯ୍ୟ ହେଲେ ।

ପାଠପଢ଼ାର ବୟସ ହେଲାରୁ ରାଇଚରଣ ନିଜର ସମସ୍ତ ଜମିଜମା ବିକି କରିଦେଇ ଫେଲନାକୁ କଲିକତା ନେଇଗଲା । ସେଇଠି ବହୁ କଷ୍ଟରେ ଚାକିରିଟିଏ ଯୋଗାଡ଼କରି ଫେଲନାକୁ ପଢ଼ିବାକୁ ପଠାଇଲା । ନିଜେ ଏଣୁ ତେଣୁ କରି ଚଳିଯାଇ ପିଲାର ଭଲ ଖାଇବା, ଭଲ ପିନ୍ଧିବା, ଭଲ ପାଠ ପଢ଼ିବାରେ ହେଳା କଲା ନାହିଁ । ମନେ ମନେ କହି ହେଉଥାଏ, "ବାବୁ ମୋର, ମତେ ସୁଖ ପାଇ ମୋ ଘରକୁ ଆସିଚୁ ବୋଲି, ତୋର କିଛି ଅଯତ୍ନ ହେବ ନାହିଁ ।"

ବାର ବର୍ଷ ବିତିଗଲା । ପିଲାଟି ପଢ଼ାଶୁଣାରେ ଭଲ କଲା । ଦେଖିବାକୁ ବେଶ୍ ହୃଷ୍ଟପୁଷ୍ଟ, ଉଜ୍ଜ୍ୱଳ ଶ୍ୟାମବର୍ଣ୍ଣ କେଶବିନ୍ୟାଶ ପ୍ରତି ବିଶେଷ ଯତ୍ନ—ସୁଖୀ ମେଜାଜ, ସୌଖୀନ । ବାପକୁ ଠିକ୍ ବାପପରି ମନେକରି ପାରୁନା । କାରଣ ବାପର ସ୍ନେହ ଆଉ ଚାକରର ସେବା ଦୁଇଟି ଏକାଧାରରେ ରାଇଚରଣ ଦେଖାଇ-ଥିଲା । ତାର ଆଉ ଗୋଟିଏ ଦୋଷ ଥିଲା—ସେ ଫେଲନାର ବାପ, ଏ କଥା ସମସ୍ତଙ୍କ ନିକଟରୁ ଗୋପନ କରି ରଖିଥିଲା । ଯେଉଁ ଛାତ୍ର-ନିବାସରେ ଫେଲନା ରହୁଥିଲା, ସେଠାରେ ଛାତ୍ରମାନେ ମଫସଲି ରାଇଚରଣ ସମ୍ବନ୍ଧରେ ସଦାବେଳେ ଥଟ୍ଟା ଉପହାସ କରନ୍ତି । ପିତାଙ୍କ ଅନୁପସ୍ଥିତିରେ ଫେଲନା ବି ଯେ ସେଇ ଟାହିଆ ଟାପରାରେ ଯୋଗଦିଏ ନାହିଁ, କହି ହେବ ନାହିଁ, ଅଥଚ ନିରୀହ ବତ୍ସଳ ସ୍ୱଭାବ ଦେଖି ରାଇଚରଣକୁ ଛାତ୍ରମାନେ ଖୁବ ଭଲ ପାଆନ୍ତି । ଫେଲନା ମଧ୍ୟ ଭଲ ପାଏ, କିନ୍ତୁ ଠିକ୍ ବାପକୁ ଭଲ ପାଇଲା ପରି ନୁହେଁ । ତହିଁରେ କିଛି ଅନୁଗ୍ରହ ମିଶି ରହିଥିଲା ପରି ମନେହୁଏ ।

ରାଇଚରଣ ବୁଢ଼ା ହୋଇଗଲାଣି । ତାହାର କାର୍ଯ୍ୟକଳାପରେ ମୁନିବ ସର୍ବଦା ଦୋଷ ବାଛି ବସେ । ବାସ୍ତବିକ ତାହାର ଶରୀର ଶିଥିଳ ହୋଇଆସିଲାଣି, କାର୍ଯ୍ୟରେ ସେପରି ମନ ଦେଇପାରେନା, କେବେ କେବେ ଭୁଲିଯାଏ । ହେଲେ ଯେଉଁ ମୁନିବ ପୂରା ଦରମା ଦେଇ ରଖିଛି, ସେ ତ ବୁଢ଼ା ବୟସର ଓଜରମାନ ଶୁଣିବାକୁ ଚାହେଁନା । ରାଇଚରଣ ସମ୍ପତ୍ତିବାଡ଼ି ବିକି ଯାହା ବା ନଗଦ ଟଙ୍କା ସଂଗ୍ରହ କରି ଆଣିଥିଲା ସେସବୁ ବି ଶେଷ ହେବାକୁ ବସିଲାଣି । ଫେଲନା ଆଜକାଲି ପୋଷାକପତ୍ରର ଅଭାବ ବିଷୟରେ ସବୁବେଳେ ଖିଟ୍ ଖିଟ୍ ହେବା ଆରମ୍ଭ କରିଛି ।

ଏବେ ରାଇଚରଣ ହଠାତ୍ ଚାକିରି ଛାଡ଼ିଦେଲା, ଆଉ ଫେଲ୍‌ନାକୁ କିଛି ଟଙ୍କା ଦେଇ କହିଲା; "ଦରକାର ପଡ଼ୁଛି, ମୁଁ ଦିନକ ପାଇଁ ଗାଁକୁ ଯାଉଛି ।" ଏହା କହି ସେ ବାରଣସୀ ସହରକୁ ଗଲା । ଅନୁକୂଳବାବୁ ସେଠାରେ ମୁନସିଫ ଚାକିରି କରୁଥିଲେ ।

ଅନୁକୂଳ ବାବୁଙ୍କର ଆଉ ଦ୍ୱିତୀୟ ସନ୍ତାନ ହୋଇ ନାହିଁ । ଏବେ ସୁଦ୍ଧା ସେହି ପୁତ୍ରଶୋକରେ ଗୃହିଣୀଙ୍କର ମନ ଭିତର ଘାଣ୍ଟି ଚକଟି ହେଉଛି ।

ଏବେ ସନ୍ଧ୍ୟାବେଳେ ବାବୁ କଚେରିରୁ ଫେରି ବିଶ୍ରାମ କରୁଛନ୍ତି ଏବଂ ଗୃହିଣୀ ସନ୍ତାନ କାମନାରେ ବହୁ ମୂଲ୍ୟ ଦେଇ ଜଣେ ସନ୍ୟାସୀଙ୍କଠାରୁ ଚେରମୂଳି ଆଣିଛନ୍ତି ଓ ତାଙ୍କର ଆଶୀର୍ବାଦ ଗ୍ରହଣ କରୁଛନ୍ତି, ଏତିକିବେଳେ ପ୍ରାଙ୍ଗଣରେ ଶବ୍ଦ ଶୁଭିଲା, "ଜୟ ହେଉ, ମା' ସାଆନ୍ତାଣୀ !"

ବାବୁ ପଚାରିଲେ, "କିଏ ରେ ?"

ରାଇଚରଣ ଆସି ପ୍ରଣାମ କରି କହିଲା, "ମୁଁ ରାଇଚରଣ, ବାବୁ !"

ବୃଦ୍ଧକୁ ଦେଖି ଅନୁକୂଳ ବାବୁଙ୍କର ହୃଦୟ କାନ୍ଦିଉଠିଲା । ତାହାର ବର୍ତ୍ତମାନର ଅବସ୍ଥା ସମ୍ପର୍କରେ ବହୁତ ପ୍ରଶ୍ନ କରି ପୁଣି ଥରେ ତାକୁ କାର୍ଯ୍ୟରେ ରଖିବାର ପ୍ରସ୍ତାବ କଲେ ।

ଫିକା ହସ ହସି ରାଇଚରଣ କହିଲା, "ମା ଠାକୁରାଣୀଙ୍କୁ ଥରେ ପ୍ରଣାମ କରିବାକୁ ଚାହୁଁଛି ବାବୁ !"

ଅନୁକୂଳ ବାବୁ ତାକୁ ଅନ୍ତଃପୁରକୁ ଡାକିନେଲେ । ମା' ସାନ୍ତାଣୀ ସେପରି ଆନନ୍ଦ ମନରେ ରାଇଚରଣକୁ ସମ୍ଭୋଳିଲେ ନାହିଁ – ରାଇଚରଣ ସେଥିକି ଲକ୍ଷ୍ୟ ନ କରି ହାତ ଯୋଡ଼ି କହିଲା,

'ମା, ତମର ପିଲାକୁ ଗ୍ଭେରିକରି ନେଇଯାଇଥିଲି । ପଦ୍ମା ନୁହେଁ ଆଜି ବି କେହି ନୁହେଁ—କୃତଘ୍ନ, ଅଧମ ଏଇ ରାଇଚରଣ – ।''

ଅନୁକୂଳ ବାବୁ କହି ଉଠିଲେ, କଣ କହିଲୁ ରେ ! କେଉଁଠି ଅଛି ସେ ?'' ''ମୋ ପାଖରେ ଅଛି ଆଜ୍ଞା । ମୁଁ କାଲେ ଆସି ଫେରେଇ ଦେଇଯିବି ।''

+ + +

ସେ ଦିନ ରବିବାର, କଚେରୀ ବନ୍ଦ, ସକାଳ ପହରୁ ସ୍ୱାମୀ ସ୍ତ୍ରୀ ଦୁହେଁ ଆବେଗରେ ବାଟ ଗ୍ଭହିଁ ବସିଛନ୍ତି । ଦଶଟା ବେଳକୁ ଫେଲନାକୁ ସାଙ୍ଗରେ ଧରି ରାଇଚରଣ ପହଞ୍ଚିଲା ।

ଅନୁକୂଳ ବାବୁଙ୍କ ସ୍ତ୍ରୀ କିଛି ବାଛ ବିଗ୍ଭର ନ କରି ତାକୁ କୋଳେଇ କାଖେଇ ଅତୃପ୍ତ ନୟନରେ ତାହାର ମୁଖମଣ୍ଡଳ ନିରୀକ୍ଷଣ କରି ହସି ବ୍ୟାକୁଳ ହୋଇଉଠିଲେ । ବାସ୍ତବିକ ପିଲାଟି ଦେଖିବାକୁ ତ ବେଶ—ବେଶଭୂଷା, ଆକାର ପ୍ରକାରରେ ଦାରିଦ୍ର୍ୟର କିଛି ଲକ୍ଷଣ ନାହିଁ । ଅତି କୋମଳ, ନମ୍ର ଆଉ ଲଜ୍ଜାଭରା ତାର ମୁଖର ସୌନ୍ଦର୍ଯ୍ୟ ଦେଖି ଅନୁକୂଳ ବାବୁଙ୍କ ହୃଦୟରେ ସ୍ନେହର ଧାରା ହଠାତ୍ ଉଚ୍ଛ୍ୱସିତ ହୋଇଉଠିଲା । ତଥାପି ବିଚଳିତ ନ ହୋଇ ସେ ପଗ୍ଭରିଲେ, ''କିଛି ପ୍ରମାଣ ଅଛି ?''

ରାଇଚରଣ କହିଲା, ଏପରି କାର୍ଯ୍ୟରେ ପ୍ରମାଣ କ'ଣ ଥାଏ ? ମୁଁ ତ ପିଲା ଗ୍ଭେରିକରି ନେଇଥିଲି । ଏକଥା କେବଳ ଭଗବାନ ଜାଣନ୍ତି । ପୃଥିବୀର ଆଉ ତ କେହି ଜାଣନ୍ତି ନାହିଁ ।

ଅନୁକୂଳ ବାବୁ ଭାବି ସ୍ଥିର କଲେ ଯେ, ପିଲାଟିକୁ ପାଇବା ମାତ୍ରେ ତାଙ୍କର ପତ୍ନୀ ଯେପରି ଆଗ୍ରହର ସହିତ ତାକୁ ଗ୍ରହଣ କରୁଛନ୍ତି, ସେଥିରେ ପ୍ରମାଣ ସଂଗ୍ରହପାଇଁ ଚେଷ୍ଟା କରିବା ସୁନ୍ଦର କି ଯୁକ୍ତିସଙ୍ଗତ ନୁହେଁ । ଯାହାହେଉ ପଛେ, ବିଶ୍ୱାସ କରିବା ହିଁ

ଭଲ । ତା ଛଡ଼ା ରାଇଚରଣ ଏପରି ପିଲା ବା କେଉଁଠାରୁ ପାଇବ ଏବଂ ନିଜର ଏତେ ଦିନର ବୁଢ଼ା ଭୃତ୍ୟର ଆକାରରେ ତାଙ୍କୁ ପ୍ରତାରଣା ବା କରିବ କାହିଁକି ?

ପିଲାଟି ସଙ୍ଗେ କଥାବାର୍ତ୍ତା କରି ଜାଣିଲେ, ସେ ପିଲାଦିନୁ ରାଇଚରଣ ସହିତ ରହିଅଛି ଏବଂ ରାଇଚରଣକୁ ବାପ ବୋଲି ଜାଣେ, ହେଲେ ରାଇଚରଣ କେବେହେଲେ ତା ପ୍ରତି ସାକ୍ଷାତ୍ ପିତାର ବ୍ୟବହାର ଦେଖାଇ ନାହିଁ, ବରଂ ଅନେକାଂଶରେ ଭୃତ୍ୟର ଭାବ ପ୍ରକାଶ କରିଥିଲା ।

ମନରୁ ସନ୍ଦେହ ଦୂରକରି ଅନୁକୂଳବାବୁ କହିଲେ, "କିନ୍ତୁ ରାଇଚରଣ, ତୁମେ ଆଉ ଆମର ଛାଇ ସୁଦ୍ଧା ମାଡ଼ିପାରିବ ନାହିଁ ।" ହାତ ଯୋଡ଼ି ଗଦ୍ ଗଦ୍ କଣ୍ଠରେ ରାଇଚରଣ କହିଲା, "ଏ ବୁଢ଼ା ବୟସରେ ଆଉ କୁଆଡ଼େ ଯିବି ବାବୁ ?"

ଗୃହପତ୍ନୀ କହିଲେ, "ଅହା ଥାଉ, ଆମ ପିଲାର କଲ୍ୟାଣ ହବ । ତାହାର ଦୋଷ ମୁଁ ଧରୁ ନାହିଁ ।" ନ୍ୟାୟପରାୟଣ ଅନୁକୂଳବାବୁ କହିଲେ, "ଯେଉଁ କାର୍ଯ୍ୟ ସେ କରିଛି, ତାହାର କ୍ଷମା ନାହିଁ ।

ରାଇଚରଣ ଅନୁକୂଳ ବାବୁଙ୍କ ପାଦ ଧରି କହିଲା, "ମୁଁ କରି ନାହିଁ, ଈଶ୍ୱର କରିଛନ୍ତି ଆଜ୍ଞା ।"

ନିଜର କରିଲା ପାପ ଈଶ୍ୱରଙ୍କ ନାଁରେ ବୋଲି ଦେବାକୁ ଚେଷ୍ଟା କରୁଛି ଦେଖି ଅନୁକୂଳବାବୁ ଆହୁରି ବିରକ୍ତ ହୋଇ କହିଲେ, "ଯେ ଏପରି ବିଶ୍ୱାସଘାତକର କାର୍ଯ୍ୟ ଥରେ କରିଛି ତାକୁ ତ ଦ୍ୱିତୀୟ ଥର ଲାଗି ବିଶ୍ୱାସ କରିବା ଉଚିତ ନୁହେଁ ।'

ରାଇଚରଣ ମୁନିବର ପାଦ ଛାଡ଼ିଦେଇ କହିଲା, "ମୁଁ ନୁହେଁ ଆଜ୍ଞା ।"

"ତେବେ କଏ ?"

"ମୋର ଅଦୃଷ୍ଟ ।"

"କିନ୍ତୁ ଏପରି କୈଫିୟତ କୌଣସି ଶିକ୍ଷିତ ଲୋକଙ୍କୁ ସନ୍ତୁଷ୍ଟ କରିପାରେ ନାହିଁ, ଜାଣ ?"

ରାଇଚରଣ କହିଲା, "ପୃଥିବୀରେ ମୋର ଆଉ କେହି ନାହିଁ"

ଫେଲନା ଯେତେବେଳେ ଦେଖିଲା ସେ ମୁନସିଫ ସାହେବଙ୍କ ସନ୍ତାନ, ରାଇଚରଣ ଏତେଦିନ ଚୋରିକରି ନେଇ ନିଜର ସନ୍ତାନ ବୋଲି କହି ତାକୁ ଅପମାନିତ କରିଛି, ତାର ମନରେ ରାଗହେଲା । ତଥାପି ଉଦାର ଭାବରେ ପିତାଙ୍କୁ କହିଲା, "ବାପା, ତାକୁ କ୍ଷମା କର । ଘରେ ରହିବାକୁ ନ ଦିଅ, ତା' ଲାଗି ମାସକୁ ମାସ କିଛି ଟଙ୍କାର ବ୍ୟବସ୍ଥା କରିଦିଅ ।"

ଏହାପରେ ରାଇଚରଣ କିଛି କଥା ନ କହି ଥରକପାଇଁ ପୁତ୍ରର ମୁଖ ନିରୀକ୍ଷଣ କଲା । ସମସ୍ତଙ୍କୁ ପ୍ରଣାମ କରିସାରି, ଘରୁ ବାହାରିଯାଇ ପୃଥିବୀର ଅଗଣ୍ୟ ଲୋକସ୍ରୋତ ମଧ୍ୟରେ ମିଶିଗଲା । ମାସ ଶେଷରେ ଅନୁକୂଳ ବାବୁ ରାଇଚରଣ ଗାଁ ଠିକଣାରେ କିଛି ଟଙ୍କା ପଠାଇଲେ । ସେ ଟଙ୍କା ଫେରିଆସିଲା । ସେଠାରେ ଲୋକର ପତ୍ତା ମିଳିଲା ନାହିଁ ।

———

# ଅନ୍ୱେଷଣ

ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

—ଏକ—

'ଅବନ୍ତୀ ରାଜକୁମାର !'

'ଅବନ୍ତୀ ?'

'ଆଜ୍ଞା ହଁ, ଅବନ୍ତୀ ।'

'ସ୍ୱୟମ୍ବର କେବେ ?'

'ଫାଲଗୁନ ପୂର୍ଣ୍ଣିମା ।'

'ଆଉ କେତେ ଦିନ ରହିଲା ?'

'ଆଠ ମାସ ଦଶ ଦିନ ଆଜକୁ ।'

'ଉତ୍ତମ ।'

* * *

'ଚିନୋଟି ?'

'ଚିନୋଟି ରତ୍ନ ମଣିମା ।'

'ହୁଁ ।'

'ପ୍ରଥମ ଦୁଇଟି ସ୍ୱର୍ଗର ଅପ୍ସରା ମାତ୍ର—'

'ମାତ୍ର — ?'

'କନିଷ୍ଠା କନ୍ୟାଟି ସାମାନ୍ୟ—'

କୁତ୍ସିତ ? ବେଶ୍, ଭଲ କଥା' ସେଥିରେ ମୋର ଯାଏ କେତେ, ଆସେ କେତେ ?'

* * *

ନ୍ତ (ରାଜକୋଷ ସାହାଯ୍ୟରେ ମନୁଷ୍ୟ କ୍ରୟ କରହୁଏ ରାଜକୁମାର, ମାତ୍ର ହୃଦୟ କ୍ରୟ କରହୁଏ ନାହିଁ ।)

ମୁଁ କ୍ରୟ କରିବ । ମନୁଷ୍ୟ କ୍ରୟ କରିବ—ହୃଦୟ କ୍ରୟ କରିବ । କଳିଙ୍ଗର ବିପୁଳ ଐଶ୍ୱର୍ଯ୍ୟ କ'ଣ ଯଥେଷ୍ଟ ହେବ ନାହିଁ ଏଥିପାଇଁ ?'

'କଳିଙ୍ଗ-ଐଶ୍ୱର୍ଯ୍ୟର ସହସ୍ରାଂଶ ମୂଲ୍ୟରେ ଶତ ଶତ ଦାସ କ୍ରୟ କରିବା ସମ୍ଭବ ହୋଇପାରେ କୁମାର, କିନ୍ତୁ—'

'କିନ୍ତୁ !'

ସହସ୍ର ଗୁଣ ମୂଲ୍ୟରେ ମଧ୍ୟ ଗୋଟିଏ ମାତ୍ର ହୃଦୟ କ୍ରୟକର-ହୁଏ ନାହିଁ । ହୃଦୟ କ୍ରୟ କରାଯାଏ ନାହିଁ ରାଜକୁମାର, ଜୟ କରାଯାଏ । ଆପଣ ଦାସୀ ଚାହାନ୍ତି, ନା ପ୍ରିୟା ଚାହାନ୍ତି ଯୁବରାଜ ?'

ଯୁବରାଜ ହସିଲେ ।

'ପାଗଳ ।'

ପାଗଳାମି ନୁହେଁ ଯୁବରାଜ ସତ୍ୟ ।'

ତୁମେ କ'ଣ କହିବାକୁ ଚାହଁ ବୟସ୍ୟ ଯେ ଐଶ୍ୱର୍ଯ୍ୟଶାଳୀ କଳିଙ୍ଗର ଯୁବରାଜ ସାମାନ୍ୟ ଗୋଟିଏ ନାରୀର ହୃଦୟ ଜୟ କରିବାକୁ ଅକ୍ଷମ ?'

କଳିଙ୍ଗର ଯୁବରାଜ ଅକ୍ଷମ ନୁହନ୍ତି କୁମାର, କଳିଙ୍ଗର ଐଶ୍ୱର୍ଯ୍ୟ ଅକ୍ଷମ ।'

'ଭାରତର ରାଜା ଚକ୍ରବର୍ତ୍ତୀ ଯଦି ପଥର ଭିକାରୀ ହୋଇ ବୁଲେ, ତେବେ କ'ଣ 'ଅବନ୍ତୀ'ର ରୂପଗୁଣସମ୍ପନ୍ନା କନ୍ୟାଗଣ ତାହାପ୍ରତି ଅଧିକ ଆକୃଷ୍ଟ ହେବେ ?'

'ମନର ଆସକ୍ତି ଓ ହୃଦୟର ମମତା ଦୁଇଟିକୁ ଏକ କରି-ଦେବେ ନାହିଁ ରାଜକୁମାର ! ମନେ ରଖିବେ, ଆସକ୍ତି କ୍ଷଣସ୍ଥାୟୀ କିନ୍ତୁ ମମତା ଚିରନ୍ତନ ।'

—ଦୁଇ—

ସୁନ୍ଦର, ସୁଗଠିତ ଶରୀର, ବିଶାଳ ବକ୍ଷ, ଆଜାନୁଲମ୍ବିତ ଭୁଜ, ଆକର୍ଣ୍ଣ ବିସ୍ତୃତ ଚକ୍ଷୁ, ସୁଦୀର୍ଘ ଲଲାଟ—କିନ୍ତୁ ପରିଧେୟ ଅତିଶୟ ଜୀର୍ଣ୍ଣ ଏବଂ ମ୍ଳାନ । ରାଜପଥରେ ଯେ ତାହାକୁ ଦେଖେ ଦୁଃଖ କରେ—'ହାୟ, ବିଧାତା ଏହାକୁ ରାଜକୁଳରେ ଜନ୍ମ ନ ଦେଲା କାହିଁକି ?'

ସେ ଥିଲା ଗୋଟିଏ ଭିକାରୀ ।

ଅବନ୍ତୀ ନଗର, ନଭସ୍ପର୍ଶୀ ବିଶାଳ ପ୍ରାସାଦାବଳୀ ଧନଶାଳୀ ଅବନ୍ତୀର ବିଜୟ ସ୍ତମ୍ଭ ସ୍ୱରୂପ ଦଣ୍ଡାୟମାନ । ତୁରସ୍କ ଦେଶୀୟ ଅସଂଖ୍ୟ ବାଜିରାଜିର କ୍ଷୁରୋତ୍‌ଥିତ ଧୂଳିପଟଳରେ ଆକାଶ ଆଚ୍ଛନ୍ନ । ମଦମତ୍ତ ପଦବ୍ରଜରେ ରାଜବଂଶଜ ଯୋଦ୍ଧୃବୃନ୍ଦ ଅବିରତ ପରିଭ୍ରମଣରତ ।

ସେହି ସୁମହାନ୍ ଧନଶାଳୀ ରାଜ୍ୟରେ ଭିକ୍ଷାପ୍ରଥା ସ୍ୱପ୍ନବତ୍ । କାରଣ ଏ ଦେଶର ଭିକ୍ଷାର୍ଥୀ ରାଜଦ୍ୱାରରେ ଦଣ୍ଡିତ ହୁଏ ।

'ଭିକ୍ଷାର୍ଥୀ !'

'ମହାରାଜ !'

'ଜାଣ, ଏ ଦେଶର ନିୟମାନୁଯାୟୀ ତୁମେ ଦଣ୍ଡନୀୟ ।'

'ଜାଣେ ।'

'ତୁମେ ଦଣ୍ଡ ନେବାକୁ ପ୍ରସ୍ତୁତ ?'

'ପ୍ରସ୍ତୁତ ମହାରାଜ ।'

'ତୁମର ଅପରାଧ ନିମନ୍ତେ କଠିନ ଦଣ୍ଡର ବ୍ୟବସ୍ଥା ଅଛି ।'

ଯେଉଁ ବ୍ୟକ୍ତି ଭିକ୍ଷାଭଳି ଜଘନ୍ୟ ଦଣ୍ଡକୁ ସ୍ୱେଚ୍ଛାରେ ବରଣ କରିପାରେ, ତା ପ୍ରତି ଆଉ କେଉଁ କଠିନତର ଦଣ୍ଡ ବିଧାନ କରିବେ ମହାରାଜ ?'

'ତୁମେ ଭିକ୍ଷାକୁ ଘୃଣା କର ?'

'ନରକଠାରୁ ଅଧିକ ଘୃଣା କରେ ।'

'ଶୁଣି ସୁଖୀ ହେଲି, ବିଧାନାନୁଯାୟୀ ଆଠ ମାସ ନିମନ୍ତେ ନିର୍ଜନ କାରାଦଣ୍ଡ ବିହିତ ହେଲା; ମାତ୍ର ତୁମେ ଭିକ୍ଷାପ୍ରଥାକୁ ଘୃଣ୍ୟ କରୁଥିବା ସ୍ଥଳେ ବୋଧହୁଏ କୌଣସି ବିଶେଷ ପରିସ୍ଥିତିରେ ଏ ଘୃଣ୍ୟ ପଥ ବାଛି ନେଇଥିବାରୁ ଏହି କାରାବାସ ସମୟ ମଧ୍ୟରେ ତୁମର ଇଚ୍ଛାନୁଯାୟୀ କାରାଗାରର ଶୃଙ୍ଖଳା ବହିର୍ଭୂତ କୌଣସି ଗୋଟିଏ ସୁବିଧା ଉପଭୋଗ ନିମନ୍ତେ ତୁମେ କ୍ଷମ ହେବ ।'

'ମହାରାଜ, ଆପଣଙ୍କର ଏ ଦୟା ନିମନ୍ତେ ମୁଁ ଆପଣଙ୍କଠାରେ କୃତଜ୍ଞ ରହିଲି । ତତ୍ ସଙ୍ଗେ ସଙ୍ଗେ ଆପଣଙ୍କର ମଙ୍ଗଳ-କାମନା କରି ଈଶ୍ୱରଙ୍କଠାରେ ପ୍ରାର୍ଥନା କରୁଅଛି ।'

'ତୁମେ ତୁମର ଇଚ୍ଛା ପ୍ରକାଶ କରିପାର ।'

'ମହାରାଜ, ମୁଁ ପ୍ରତିଦିନ ସନ୍ଧ୍ୟାରେ ଥରେ ମାତ୍ର କାରାଗାରର ବାହାରକୁ ଆସି ମୋହର ବଇଁଶୀଟି ଯେପରି ବଜାଇପାରିବି, ସେଥିପାଇଁ ଅନୁମତି ଚାହେଁ ।'

'ଗୋଟିଏ ପରିମିତ ସମୟ ଦେବାକୁ ହେବ ।'

'ଘଡ଼ିଏ ମାତ୍ର ।'

'ତଥାସ୍ତୁ ।'

ରାଜପ୍ରାସାଦରୁ ଅନତି ଦୂରରେ କେତେଗୁଡ଼ିଏ କ୍ଷୁଦ୍ର ପ୍ରସ୍ତର ନିର୍ମିତ ଗୃହ; ପ୍ରତ୍ୟେକ ପୃଥକ୍ ଭାବରେ ଅବସ୍ଥିତ । ଗୃହ ସମୂହର ପ୍ରାଚୀରଗୁଡ଼ିକ ଲୁପ୍ତ ଅତୀତର ଭିତ୍ତି ଉପରେ ଅବିଚଳିତ ସାକ୍ଷୀ ସ୍ୱରୂପ ଅତି ରୁକ୍ଷ ମୂର୍ତ୍ତି ଧରି ଦଣ୍ଡାୟମାନ । ଗୋଟାଏ ନରରକ୍ତ-ପିପାସୁ ଦୁର୍ବୃତ୍ତ ରାକ୍ଷସର ବିକଟ ଦାନ୍ତ—ଦାନବଙ୍କୁ ଅନୁକରଣ କରି ବଦ୍ଧଲୌହ କପାଟଚୟ ଅତି ଭୀଷଣ ଦୃଶ୍ୟ ସର୍ଜନା କରୁଥାଆନ୍ତି । ଯଥେଷ୍ଟ ବାତାଲୋକର ଯାତାୟାତ ନିମନ୍ତେ ଗୋଟିଏ ଗୋଟିଏ କ୍ଷୁଦ୍ର ଛିଦ୍ର ବ୍ୟତିରେକେ କୌଣସି ବାତାୟନର ବ୍ୟବସ୍ଥା ନ ଥିବାରୁ ପ୍ରତ୍ୟେକ ଗୃହର ସଂକୀର୍ଣ୍ଣ ଅଭ୍ୟନ୍ତର ଗୋଟାଏ ଗୋଟାଏ ପ୍ରକାଣ୍ଡ ଅନ୍ଧକୂପ ଭଳି ପ୍ରତୀୟମାନ ହେଉଥିଲା । ତନ୍ମଧ୍ୟରୁ ଗୋଟିଏ ଗୃହ ସହିତ ସଂଲଗ୍ନ ସୁଦୃଢ଼ ଲୌହ ଶଲାକା ପରିବେଷ୍ଟିତ ଅନୁର୍ବର ପ୍ରାଙ୍ଗଣ ମୃତ୍ୟୁର କରାଳ ହସ୍ତ ସଦୃଶ ପ୍ରସାରିତ । ପ୍ରତିଦିନ ସନ୍ଧ୍ୟାରେ ଅତି ସୁନ୍ଦର ସୁସ୍ଥ କୌଣସି ଏକ ଯୁବକ ଉକ୍ତ ପ୍ରାଙ୍ଗଣୋତ୍‌ଥିତ ଗୋଟିଏ ଭଗ୍ନ ପ୍ରସ୍ତର ଉପରେ ବସି ହସ୍ତସ୍ଥିତ ଶୁଷ୍କ ଛିଦ୍ରଯୁକ୍ତ ବଂଶଖଣ୍ଡ ଦେହରେ ଅତି ଧୀର ଭାବରେ ଗୋଟିଏ ନିବିଡ଼ ଚୁମ୍ବନ ଦିଏ······

ପ୍ରତିଦିନ ସନ୍ଧ୍ୟାରେ ରାଜପ୍ରାସାଦ ଗୋଟିଏ ଅନାଗତ ସ୍ୱରର ଗୁଞ୍ଜନରେ ଥରିଉଠେ । ଉଦ୍ୟାନସ୍ଥ ସହକାର ଶାଖାରୁ ଅସମୟରେ ଅଜଣା କାରଣରୁ ପିକର ପ୍ରକମ୍ପିତ କୁହୁସ୍ୱର ଶୁଣାଯାଏ । ସ୍ଫଟିକ-ନିର୍ମିତ ସ୍ନାନ-କୁଣ୍ଡର ସ୍ଥିର ଶୀତଳ ନିର୍ଝର-ଜଳ ହଠାତ୍ ଉତଳା ହୋଇଉଠେ । ଅନ୍ତଃପୁରର ପ୍ରତ୍ୟେକ ପ୍ରାଣରେ କ୍ଷଣକ ଲାଗି ଗୋଟିଏ ବିଦ୍ୟୁତ୍ ପ୍ରବାହ ଖେଳିଯାଏ ।

'ବନ୍ଧ !'

'କହନ୍ତୁ ।'

'ତମର ଘର ?'

'କଳିଙ୍ଗ ଦେଶରେ ।'

'ତୁମେ ଏ ବଂଶୀ କେଉଁଠାରୁ ପାଇଲ ?'

'କଳିଙ୍ଗର ରାଜକୁମାରଙ୍କଠାରୁ ।'

'ରାଜକୁମାରଙ୍କଠାରୁ ?'

'ଆଜ୍ଞା ହଁ ।'

'ଶୁଣିଛୁ, ରାଜକୁମାର ଖୁବ୍ ସୁନ୍ଦର, ନୁହେଁ ?'

'କାର୍ତ୍ତିକଙ୍କ ଭଳି ସୁନ୍ଦର ।'

'କହିପାରିବ ବନ୍ଧ, ସେ ଏ ଅବନ୍ତୀର ସ୍ୱୟମ୍ବରକୁ ଆସୁଛନ୍ତି କି ?'

ବୋଧହୁଏ ନା ।'

'ବନ୍ଧ !'

'କହନ୍ତୁ ।'

'ତୁମ ଘର କଳିଙ୍ଗ ଦେଶରେ ?'

'ଆଜ୍ଞା ।'

'ତୁମକୁ ବଂଶୀ ବଜାଇବା ଶିଖାଇଲା କିଏ ?'

'କଳିଙ୍ଗର ରାଜକୁମାର ।'

'କଳିଙ୍ଗର ରାଜକୁମାର ?'

'ଶୁଣିଛୁ । କଳିଙ୍ଗାଧିପତି ବିପୁଳ ଐଶ୍ୱର୍ଯ୍ୟର ଅଧିକାରୀ, ନୁହେଁ ?'

'କୁବେର ସଦୃଶ ।'

'କହିପାରିବ, ଅବନ୍ତୀର ସ୍ୱୟମ୍ବରକୁ ରାଜକୁମାର ଆସୁଛନ୍ତି କି ?'

'ବୋଧହୁଏ ନା ।'

'ବିଦେଶୀ !'

'କିଏ ?'

'ତୁମେ କ'ଣ କଳିଙ୍ଗରୁ—?'

'ଆଜ୍ଞା, କଳିଙ୍ଗ ଦେଶରେ ମୋର ଘର ।'

'ବିଦେଶୀ !'

'କହନ୍ତୁ ।'

'କହିବ ?'

'କ'ଣ ?'

'ଗୋଟିଏ କଥା ।'

'ପଚାରି ପାରନ୍ତି ।'

'ଏହି ଶୁଷ୍କ ଯନ୍ତ୍ରର ଧ୍ୱନିରେ ତୁମର ହୃଦୟର ସ୍ୱର ଏତେ କରୁଣ ଶୁଣାଯାଏ କାହିଁକି ?' ବନ୍ଦୀ ଚମକି ଉଠିଲା—ଆଶ୍ଚର୍ଯ୍ୟରେ ଗଭୀର ଅନ୍ଧକାର ମଧ୍ୟରେ ସେ ସେହି ପ୍ରଶ୍ନକର୍ତ୍ତାଙ୍କୁ କ୍ଷଣେ ନିରୀକ୍ଷଣ କରି ମଧ୍ୟ ଦେଖିବାକୁ ସମର୍ଥ ହେଲା ନାହିଁ ।...

'ବିଦେଶୀ !'

'କହନ୍ତୁ ।'

'କଳଙ୍ଗର ରାଜକୁମାର କ'ଣ ଏଭଳି କରୁଣ ସ୍ୱରରେ ବଂଶୀ ବଜାନ୍ତି ?'

'କରୁଣତର ସ୍ୱରରେ ।'

'ଶୁଣିଚ, ସେ ବଡ଼ ଦୟାଳୁ, ନୁହେଁ ?'

'ଅତିଶୟ ଦୟାଳୁ ।'

'ବଡ଼ ବିଦ୍ୱାନ ?'

'ଗଣେଶଙ୍କ ଭଳି ।'

'ବୀର ଯୋଦ୍ଧା ମଧ୍ୟ ?'

'ସାକ୍ଷାତ୍ ଅର୍ଜ୍ଜୁନ ପରି ।'

'ସେ ତେବେ ଅବନ୍ତୀର ସ୍ୱୟମ୍ବରକୁ··· ।'

'ଆସିପାରନ୍ତି ।'

—ପାଞ୍ଚ—

ପ୍ରାଙ୍ଗଣ ସଂଲଗ୍ନ ସେହି ଶ୍ୟାମ କାରାଗାର ପାର୍ଶ୍ୱରେ ଗୋଟାଏ ଯୋଡ଼ାଏ ସୂର୍ଯ୍ୟମୁଖୀ ଯେଉଁଠି ମଉଳି ପଡ଼ୁଥାଏ ସେଇଠି ।

ସନ୍ଧ୍ୟାର ଅନ୍ଧାର ଯେତେବେଳେ ସେହି ନିର୍ମମ ପାଷାଣ ପ୍ରାଚୀରକୁ ସମ୍ପୂର୍ଣ୍ଣ ଗ୍ରାସ କରିଦିଏ—ଯେତେବେଳେ ବନ୍ଦୀର ବଂଶୀ ନିସୃତ ଧ୍ୱନି ଆକାଶରେ ପ୍ରଥମ ପୁଲକ ସଞ୍ଚାର କରେ ସେତେବେଳେ···।

ଗୋଟିଏ ନାରୀ ମୂର୍ତ୍ତିର ଆବିର୍ଭାବ ହୁଏ । କିଛିକ୍ଷଣ ପରେ ସେ ପୁଣି ଅନ୍ତର୍ଦ୍ଧାନ ହୋଇଯାଏ ।

ଏପରି ପ୍ରତିଦିନ ।

ତାହାର ଅପର ପାର୍ଶ୍ୱରେ ଯେଉଁଠି ରଜନୀଗନ୍ଧାର ମଧୁର ଗନ୍ଧ ପାଗଳ ହୋଇ ବିଚରଣ କରୁଥାଏ, ସେଇଠି···

ଘନ ଅନ୍ଧକାରର ଗର୍ଭ ମଧ୍ୟରେ ସବୁଜ ପୃଥିବୀ ଓ ପାଷାଣ କାରା ଯେତେବେଳେ ଏକାକାର ହୋଇଥା'ନ୍ତି—ଯେତେବେଳେ ବଂଶୀର କରୁଣ ଧ୍ୱନି ଆକାଶର ସ୍ତର ସ୍ତର ଭେଦକରି କେଉଁଠି ସୁଦୂର ଅଜଣା ପଥରେ ଧାଇଁ ବୁଲୁଥାଏ ସେତେବେଳେ·

ଆଉ ଗୋଟିଏ ନାରୀମୂର୍ତ୍ତି ଦେଖାଦିଏ । ଉଚ୍ଚତାରେ ପୂର୍ବ ମୂର୍ତ୍ତିଠାରୁ କ୍ଷୁଦ୍ର, କିଛିକ୍ଷଣ ପରେ ସେ ପୁଣି ଲିଭିଯାଏ ।

ଏହିପରି ନିତ୍ୟପ୍ରତି ।

କାରାଗାରର ଅପର ଦିଗରେ ବାତାଲୋକର ଯାତାୟାତ ନିମନ୍ତେ ଯେଉଁ କ୍ଷୁଦ୍ର ଛିଦ୍ରଟି ଅଛି, ସେଇଠି···

ଗଭୀର ନିଶୀଥର ନିସ୍ତବ୍ଧତା ଭେଦକରି ଯେତେବେଳେ ପ୍ରାଚୀର ଛିଦ୍ର ଭିତରେ ପବନର ଶୀତ୍କାର ବନ୍ଦୀ ପ୍ରାଣରେ ଚମକ ଲଗାଇଦିଏ, ସେତେବେଳେ···

ଗୋଟିଏ କ୍ଷୀଣ ନାତିକ୍ଷୁଦ୍ର ନାରୀମୂର୍ତ୍ତି ଆସି ଠିଆ ହୁଏ । ଗୋଟିଏ ପାତ୍ରରେ ସାମାନ୍ୟ କେତୋଟି ଫଳମୂଳ ଭର୍ତ୍ତି ସେଇ ଛିଦ୍ର ଦ୍ୱାରରେ ଥୋଇଦିଏ ।

ବନ୍ଦୀ ପଚାରେ 'କିଏ ?'

ଉତ୍ତର ଆସେ 'ସେଇ ।'

ବନ୍ଦୀ ନିଃଶଙ୍କୋଚରେ ଆହାର କରେ । ଶୂନ୍ୟପାତ୍ର ନେଇ ନାରୀମୂର୍ତ୍ତି ଛାୟା ପରି ଲିଭିଯାଏ । କେହି କାହାକୁ ଦେଖନ୍ତି ନାହିଁ, ଦେଖିପାରନ୍ତି ନାହିଁ । ଗଭୀର ରଜନୀର ଘନ ଅନ୍ଧାରର ଯଦି ଚକ୍ଷୁ ଥାଏ, ତେବେ ତା ଛଡ଼ା ଆଉ କେହି ଦେଖେ ନାହିଁ—ଦୁଇ ଜଣଙ୍କ ନେତ୍ର ଅଶ୍ରୁଭରା ।

ଏହିପରି ସଂବୃଦ୍ଧନେ···

—ଛଅ—

ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀର ସନ୍ଧ୍ୟା ।

କାଲି ଅବନ୍ତୀର ରାଜକନ୍ୟାମାନଙ୍କର ସ୍ୱୟମ୍ବର – ଆଜ ।
କାଲି ବନ୍ଦୀର ଆଠ ମାସ କାରାଦଣ୍ଡ ଭୋଗ ପରେ ମୁକ୍ତ ହେବାର କଥା – ଆଜ ।

'ବନ୍ଧୁ, ବଂଶୀ ବଜାଅ ।'

'ବଂଶୀ ? ବଂଶୀ ଆଉ ବାଜିବ ନାହିଁ ।'

'କାରଣ ?'

'ଆଜକୁ ଦିନେ ଊଣା ଆଠ ମାସ ହେଲା । ମୁଁ ନିୟମିତ ଭାବରେ ବଂଶୀ ବଜାଇଛି । ବହୁ ଲୋକ ଏହି ପଥରେ ତାହାର ସ୍ୱର ଶୁଣିବାପାଇଁ ଯାଆନ୍ତି ଆସନ୍ତି । ମୁଁ ଦେଖେ । କିନ୍ତୁ– କିନ୍ତୁ—'

'କିନ୍ତୁ ?'

'ଯାହା ଉଦ୍ଦେଶ୍ୟରେ ମୁରଲୀ ବାଜେ, ତାହା ହୃଦୟରେ କେବେ ଆଘାତ କରିବାକୁ କ୍ଷମ ହୋଇ ନାହିଁ । ସେ ଶୁଣେ— ସ୍ୱରର ବିଳାସିତାରେ ଆମୋଦ ଉଠାଏ, କିନ୍ତୁ ମୋର ହୃଦୟ ବୁଝେ ନାହିଁ । ମୁଁ ବଂଶୀ ବଜାଏ, ସେ ହୁଏତ ପ୍ରଶଂସା କରେ, କିନ୍ତୁ ମୁଁ ଯେ କାନ୍ଦେ, ସେଥିପାଇଁ ତାହା ଆଖିରୁ କେବେ ଲୁହ ଝରେ ନାହିଁ । କାରଣ ମୁଁ ଭିକ୍ଷୁ– ମୁଁ ବନ୍ଦୀ—ସେ ମୁକ୍ତା –ସେ ରାଜକୁମାରୀ ।'

'କେଉଁ ରାଜକୁମାରୀ ?,

'ଏଇ ଅବନ୍ତୀର କୌଣସି ରାଜକୁମାରୀ ।'

'ଅବନ୍ତୀର !'

'ହଁ ଅବନ୍ତୀର । ଚମକିଉଠିଲେ ଯେ !'

'ତୋର ଏତେ ସ୍ପର୍ଦ୍ଧା ? ତୁ ଖଞ୍ଜହୋଇ ସୁରତରୁ-କୁସୁମକୁ ଇଚ୍ଛା କରୁଛୁ ? ଜାଣୁ ? କାଲି ଭାରତର ନାନା ପ୍ରଦେଶରୁ ରାଜଚକ୍ରବର୍ତ୍ତୀମାନେ ପାଟମଣିଙ୍କର ସ୍ୱୟମ୍ବର ଉଦ୍ଦେଶ୍ୟରେ ଆସିବେ । ହୁଏତ କିଛିଦିନ ପରେ ସେ ଛତ୍ରପତି କଳିଙ୍ଗାଧିପତିଙ୍କର ଅର୍ଦ୍ଧାଙ୍ଗିନୀ ହେବାର ଗୌରବ ଲଭ କରିବ ।'

'ବୁଝିଛି ।'

'ବନ୍ଧୁ, ଜାଣୁ ? ଏ ସମ୍ବାଦ ରାଜାଙ୍କ କର୍ଣ୍ଣରେ ପ୍ରବେଶ କଲେ ତୋର ପ୍ରାଣଦଣ୍ଡ ହୋଇପାରେ ।'

'ମୋର ଆଉ ଜୀବନରେ ପ୍ରୟୋଜନ ନାହିଁ । ସେ ଭୟ ମତେ ଦେଖାଇବା ଧୃଷ୍ଟତା ।'

'ଉତ୍ତମ, ଜାଣିରଖ ମୁଁ ପାଟମଣି ।

'ବନ୍ଧୁ, ଆଜି ତୁମର ବଂଶୀ ନୀରବ କାହିଁକି ?'

'ସେ ଆଉ ବାଜିବ ନାହିଁ ।'

'କାରଣ ?'

'ମୁଁ ତାକୁ ଭାଙ୍ଗି ଦେଇଛି ।'

'ଉଦ୍ଦେଶ୍ୟ ?'

'ଶିଳ୍ପୀର ଶ୍ରୋତାର ଅଭାବରେ ।'

'ବହୁ ଲୋକ ତ ତୁମର ବଂଶୀ ଶୁଣନ୍ତି ଓ ଶୁଣି ଆନନ୍ଦ ଲଭ କରନ୍ତି ।'

'କିନ୍ତୁ କେହି ବୁଝନ୍ତି ନାହିଁ ।'

'ବୁଝନ୍ତି କି ନାହିଁ ଜାଣିଲ କିପରି ?'

'ନିଜକୁ ନିଜେ ପଚାରି ।'

'ତାତ୍ପର୍ଯ୍ୟ ?'

'ଅର୍ଥାତ୍ ମୁଁ ଯେପରି ବୁଝାଏ, ସେପରି କେହି ବୁଝନ୍ତି ନାହିଁ ।

'କାହାରିକୁ ବୁଝାଇବାକୁ କେବେ –'

'ଯତ୍ନ ? ବହୁ ଯତ୍ନ କରିଛି ।'

'କେତେ ଦିନ ?'

'ଆଠ ମାସରୁ ଗୋଟିଏ ମାତ୍ର ଦିନ ଊଣା !'

'କାହାକୁ ?'

'ଯାହାକୁ ଅନ୍ତରରେ ଚାହେଁ ।'

'କିଏ ସେ ?'

'କହିବା ଅନ୍ୟାୟ ହେବ ।'

'ନା, କହ ।'

'ଗୁପ୍ତ ରଖିବେ ଏ କଥା ?'

'ରଖିବି ।'

'ଅବନ୍ତୀର ରାଜକୁମାରୀ ।'

'ଅବନ୍ତୀର ରାଜକୁମାରୀ ?'

'ହଁ, ଚମକିଉଠିଲେ ଯେ !'

'ଅର୍ବାଚୀନ ! ତୋର ଏଡ଼େ ସ୍ପର୍ଦ୍ଧା ? ତୁ ବାମନ ହୋଇ ଚନ୍ଦ୍ରମା କାମନା କରୁଛୁ ? କାଲି ପ୍ରଭାତରେ କଳିଙ୍ଗର ରାଜସିଂହାସନ ଯେ ଅଳଙ୍କୃତ କରିବ, ତୁ ତାହା ନିକଟରେ ପ୍ରଣୟ ଭିକ୍ଷା କରିବାର ବାସନା ପୋଷିଛୁ ? ଏ ସମ୍ବାଦ ରାଜାଙ୍କ କର୍ଣ୍ଣରେ ବାଜିଲେ ତୋର କି ଦଣ୍ଡ ବିଧାନ ହେବ ଜାଣୁ ?'

'ଜାଣେ । ମୃତ୍ୟୁଦଣ୍ଡ । ମୃତ୍ୟୁକୁ ଭୟ ନାହିଁ ମୋର । ଏ ନିର୍ମମ ସଂସାରରେ ଆଉ ବଞ୍ଚି ରହିବାକୁ ଚାହେଁ ନାହିଁ ମୁଁ ।'

'ଉତ୍ତମ, ତେବେ ସେଥିପାଇଁ ପ୍ରସ୍ତୁତ ହୋଇ ରହ । ଜାଣିରଖ । ମୁଁ ମଧ୍ୟମା ରାଜକୁମାରୀ ।'



'ଭିକ୍ଷୁ !'

'କହନ୍ତୁ ।'

'ଆଜ କାହିଁକି ଆହାର ଗ୍ରହଣ କରୁ ନାହଁ ?'

'ଇଚ୍ଛା ନାହିଁ ।'

'କାରଣ ?'

'କାରଣ, ଏଥିରେ ମୋର ଅନ୍ତରର କ୍ଷୁଧା ମେଣ୍ଟେ ନାହିଁ ।'

'ବନ୍ଧ ?'

'କଣ ?'

'ତମର ଏ କରୁଣ ମୁରଲୀ କଣ ତେବେ—'

'ହଁ; ତାରି ଉଦ୍ଦେଶ୍ୟରେ ।'

'ତମର ଆକୁଳ ଆହ୍ୱାନ କଣ ତା କାନରେ ବାଜେ ନାହିଁ ?'

'ନାଁ ।'

'କିପରି ଜାଣିଲ ?'

'ନିଜେ ମନକୁ ପ୍ରଶ୍ନ କର ।'

'ଭିକ୍ଷୁ, ରାଜକୁମାରୀର ହୃଦୟ କଣ ପଥର ?'

'ହୁଏତ ମୂଲ୍ୟବାନ ପଥର ହୋଇପାରେ ।'

'ସେ କ'ଣ ଗୁଣ ଚିହ୍ନେ ନାହିଁ ?'

'ରୂପ ଚିହ୍ନେ ।'

'ସେ କଣ ମନ ବୁଝେ ନାହିଁ ?'

'ଧନ ବୁଝେ ।'

'ସେ କଣ ପରର ଦୁଃଖ ଦେଖେ ନାହିଁ ?'

'ନିଜର ସୁଖ ଦେଖେ ।'

'ଭୁଲ୍—ଭୁଲ୍—ଭୁଲ୍ !!!'

—ସାତ—

'ବନ୍ଧ—ବନ୍ଧ – ବନ୍ଧ –'

'କିଏ ?'

'ଚୁପ୍ ।'

'ଓଃ, ମୋର ପ୍ରାଣଦଣ୍ଡ ହୋଇଛି ପରା ? ଚାଲନ୍ତୁ ମୁଁ ପ୍ରସ୍ତୁତ ଅଛି ।'

'ପାଟିକର ନାହିଁ ।'

'କାରଣ ?'

'ତୁମେ ବଞ୍ଚିବାକୁ ଚାହିଁ ତ ମୋ କଥା କର ।'

'ମୁଁ ବଞ୍ଚିବାକୁ ଚାହେଁନା ।'

'ନା – ନା —ତୁମକୁ ବଞ୍ଚିବାକୁ ହେବ ।'

'କାରଣ ?'

'ଜଣକ ଲାଗି ତୁମକୁ ବଞ୍ଚିବାକୁ ହେବ ।'

'କାହାଲାଗି ?'

'କହିବାର ସମୟ ଏ ନୁହେଁ । କାରାର ଦ୍ୱାର ଉନ୍ମୁକ୍ତ । ଦ୍ୱାର ଦେଶରେ ସଜ୍ଜିତ ଅଶ୍ୱ ରହିଛି । ତୁମେ ଶୀଘ୍ର ସ୍ୱଦେଶ ପ୍ରସ୍ଥାନ କର ନତୁବା କାଲି ତୁମକୁ ଶୂଳରେ ବସିବାକୁ ହେବ ।'

'କିଏ ତୁମେ ? ଏ କାରାଗୃହକୁ କିପରି ଆସିଲ – କାହିଁକି ? କାହା ଆଜ୍ଞାରେ ଆସିଲ ?'

'ବର୍ତ୍ତମାନ କହୁ କହିବାର ସମୟ ନାହିଁ । ତେବେ ଏତିକି କହିପାରେ ଯେ ଯିଏ ତମର ଗୁଣ ଚହ୍ନେ, ତମର ମନ ବୁଝେ, ତମର ଦୁଃଖ ଦେଖି କାନ୍ଦେ, ତାହାର ଆଜ୍ଞାରେ ଆସିଛୁ ।'

'ତାଙ୍କୁ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ । କନ୍ତୁ ମୋ ପାଇଁ ଯାର ଏତେ ମମତା ଜାଣିପାରିବ କ ସେ କଏ ?'

'ମୁଁ ତାଙ୍କୁ ଭଲକର ଚହ୍ନେ ନାହିଁ । ତେବେ ମୁଁ ଏତିକ ଜାଣେ ଯେ ତୁମର କରୁଣ ବଂଶୀଧ୍ୱନତ ଆକୁଳ ଗୁଞ୍ଜରଣ ତାଙ୍କ କାନରେ ବାଜେ । କନ୍ତୁ ଭକ୍ଷୁ; ରାଜକୁମାରୀମାନଙ୍କ ପର ସେ କେବେ ତୁମକୁ ବଜାଇବାକୁ ଅନୁରୋଧ କରେ ନାହିଁ—କାରଣ ସେ କାନ୍ଦେ, ତୁମକୁ କନ୍ଦାଇବାକୁ ଚାହେଁ ନାହିଁ ।'

'ମୁଁ ବଡ଼ ବମୀତ ଭାବରେ ଜଣାଉଛୁ ଯେ ପ୍ରାଣଭୟରେ ପଳାୟନ କରିବା କଳଙ୍ଗ ସନ୍ତାନ ପକ୍ଷରେ ସମ୍ଭବ ନୁହେଁ । କରିବା ପୂର୍ବରୁ ଯଦ ପ୍ରକୃତରେ ତାର ମୋ ପ୍ରତ ସହାନୁଭୂତ ଥାଏ, ତେବେ କହିପାରିବେ କ, ଏହି ଧନହୀନ ଭକ୍ଷାର୍ଥୀ ପ୍ରତ ଏତେ ଦୟା ଯାହାର, ସେ କଏ ?

'କହିଲେ କଣ ବଶ୍ୱାସ କରିବ ଭକ୍ଷୁ ?'

'କାହିଁକ ନ କରିବ ?'

'କରିବ ତ ?'

'ନଶ୍ଚୟ କରିବ ।',

'ସେ—ସେ—'

'ରହିଗଲ ଯେ ?'

'କନଷ୍ଠା ରାଜଜେମା ।'

❃

'ମହାରାଜ !'

'ଆଜ୍ଞା ହେଉ ।'

'ଆପଣଙ୍କର ପ୍ରଥମା ଏବଂ ଦ୍ୱିତୀୟା କନ୍ୟା ମୋର ଅନୁପସ୍ଥିତିରେ ମୋର ପ୍ରତିମୂର୍ତ୍ତି କଣ୍ଠରେ ବରଣମାଳା ଦେଇଛନ୍ତି । କିନ୍ତୁ ମୋ କଣ୍ଠରେ ନୁହେଁ । ମୁଁ ଯେତେବେଳେ ବନ୍ଧ ଅବସ୍ଥାରେ··· ।

'ଅପରାଧ କ୍ଷମା କରିବେ, ଆପଣ ଛଦ୍ମ ବେଶରେ ଥିବାରୁ ସେମାନେ ଆପଣଙ୍କୁ ଚିହ୍ନିପାରି ନାହାନ୍ତି ।'

"ଆପଣ କଣ କହିବାକୁ ଚାହାନ୍ତି ଯେ ଆପଣଙ୍କର ତୃତୀୟା କନ୍ୟା ଚିହ୍ନିପାରିଥିଲେ ? ମହାରାଜ କଳିଙ୍ଗର ଐଶ୍ୱର୍ଯ୍ୟଶାଳୀ ରାଜକୁମାର ହେଲେ ହେଁ ମୁଁ କଳିଙ୍ଗର ଦରିଦ୍ରତମ ପ୍ରଜାଠାରୁ ମଧ୍ୟ ହୀନ । ସେହି ନିଃସ୍ୱ ବ୍ୟକ୍ତିର କଣ୍ଠରେ ଯେ ବରଣମାଳା ଦେଇଛନ୍ତି, ସେଇ କେବଳ ମୋର ପତ୍ନୀ ହୋଇପାରନ୍ତି । ଆମ୍ଭ-ମାନଙ୍କୁ ଆଶୀର୍ବାଦ କରନ୍ତୁ, ଆମ୍ଭେମାନେ ପ୍ରଜାଙ୍କ ପାଇଁ ଯେପରି ପ୍ରାଣପାତ କରିପାରୁଁ ।"

# କଫି ହାଉସ୍

[ ଲିଓ ଟଲଷ୍ଟୟ ]

**ଅନୁବାଦକ—ସାମ୍ବାଦିକ ଶ୍ରୀ ସତ୍ୟନାରାୟଣ ମହାପାତ୍ର**

ଭାରତବର୍ଷର ସୁରତ ସହରରେ କଫିହାଉସଟିଏ ଥିଲା । ସେଠାରେ ବହୁ ପରିବ୍ରାଜକ, ବିଶ୍ୱର ବିଭିନ୍ନ ଦେଶରୁ ଆଗତ ବିଦେଶୀମାନେ ପରସ୍ପର ସହିତ ସାକ୍ଷାତ ଆଲୋଚନା କରିବାର ସୁଯୋଗ ପାଉଥିଲେ ।

ଥରେ ପାରସ୍ୟର ଜଣେ ପ୍ରସିଦ୍ଧ ଧର୍ମଜ୍ଞ ପଣ୍ଡିତ ଏହି କଫି-ହାଉସକୁ ଆସିଥିଲେ । ନିଜ ଜୀବନକୁ ସେ ଧର୍ମସମ୍ପର୍କୀୟ ଶାସ୍ତ୍ର-ଆଲୋଚନାରେ ବିନିଯୋଗ କରିଥିଲେ । ଏକନିଷ୍ଠ ଭାବରେ ଧ୍ୟାନ, ଶାସ୍ତ୍ର ପଠନ ଓ ଲିଖନରେ ଈଶ୍ୱରଙ୍କ ସମ୍ପର୍କରେ ଏତେଦୂର ମଗ୍ନଥିଲେ ଯେ ସେ ନିଜର ସ୍ଥିର ବୁଦ୍ଧି ହରାଇ ବସିଥିଲେ । ତାଙ୍କର ଚିନ୍ତାଧାରା ବିକ୍ଷିପ୍ତ ହୋଇଯାଇଥିଲା । ସେଥିଯୋଗୁଁ ଶେଷରେ ସେ ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ପର୍କରେ ସନ୍ଦେହ କରି ବସିଲେ । ଏହା ଶୁଣି ରାଜ୍ୟର ଶାସକ ତାଙ୍କୁ ପାରସ୍ୟରୁ ବିତାଡିତ କରିଦେଇଥିଲେ ।

ସାରାଜୀବନ ଅଦୃଶ୍ୟ ଶକ୍ତି ସମ୍ପର୍କରେ ଯୁକ୍ତିତର୍କ ଓ ଆଲୋଚନା କରି କରି ଏହି ହତଭାଗ୍ୟ ଧର୍ମତତ୍ତ୍ୱବିତ୍‌ଙ୍କର ବୁଦ୍ଧି ବିବେକ ଲୋପ ପାଇଲା । ନିଜର ବୁଦ୍ଧି ବିଦ୍ୟା ହରାଇଛନ୍ତି ବୋଲି ବୁଝିପାରିବା ପରିବର୍ତ୍ତେ, ସେ ଚିନ୍ତା କରିବାକୁ ଆରମ୍ଭ କଲେ ଯେ ବିଶ୍ୱ-ନିୟନ୍ତ୍ରଣକାରୀ କୌଣସି ମହାନ୍ ଶକ୍ତିର ଅସ୍ତିତ୍ୱ ନାହିଁ ।

ଏହି ବ୍ୟକ୍ତିଙ୍କର ଆଫ୍ରିକା ଦେଶୀୟ କ୍ରୀତଦାସଟିଏ ଥିଲା । ସେ ସବୁବେଳେ ମୁନିବ ସହିତ ଯାତାୟାତ କରୁଥିଲା । ଧର୍ମଜ୍ଞାନୀ

ମହାଶୟ ଯେତେବେଳେ କଫିହାଉସ୍ ଭିତରକୁ ପ୍ରବେଶ କଲେ, ଏହି ଭୃତ୍ୟଟି ଦ୍ୱାରଦେଶରେ ସୂର୍ଯ୍ୟକିରଣରେ ଗୋଟିଏ ପ୍ରସ୍ତରଖଣ୍ଡ ଉପରେ ବସି ଗୁଣୁଗୁଣୁ ହୋଇ ସାଲୁସାଲୁ ହେଉଥିବା ମାଛିମାନଙ୍କୁ ଘଉଡ଼ାଇବାକୁ ଲାଗିଲା । ପଣ୍ଡିତ ମହାଶୟ କଫି ହାଉସ୍‌ରେ ଗୋଟିଏ ଆସନ ଦଖଲ କରିସାରି କପେ ଗୋଳା ଅଫିମ ପାଇଁ ଆଦେଶ କଲେ । ପାଣୀୟର ସଦ୍‌ବ୍ୟବହାର ପରେ ମସ୍ତିଷ୍କରେ ଅଫିମ ତାହାର କ୍ରିୟା ଆରମ୍ଭ କରିଦେଲା । ସେ କ୍ରୀତଦାସକୁ ସମ୍ବୋଧନ କରି କହିଲେ—

"ରେ ହତଭାଗା କ୍ରୀତଦାସ, ଈଶ୍ୱର ଅଛନ୍ତି ନା ନାହାନ୍ତି ? ଏ ବିଷୟରେ ତୁ କ'ଣ ଭାବୁଛୁ କହିଲୁ ?"

କ୍ରୀତଦାସଟି ଉତ୍ତର ଦେଲା, "ନିଶ୍ଚୟ ଅଛନ୍ତି ।" କାଠ ତିଆରି ଗୋଟିଏ ପିତୁଳାଟିଏ ସେ ଅଣ୍ଟାରୁ ବାହାର କରି କହିଲା, "ଦେଖନ୍ତୁ ଆଜ୍ଞା, ଏଇ ଈଶ୍ୱର ଜନ୍ମାବଧି ମୋର ନିର୍ଦ୍ଦେଶକ ହୋଇ ଆସିଛନ୍ତି । ଫେଟିସ୍ ଗଛର କାଠରେ ଏହି ଈଶ୍ୱର ନିର୍ମିତ । ତେଣୁ ଆମ ଦେଶର ପ୍ରତ୍ୟେକ ପ୍ରାଣୀ ସେହି ଗଛକୁ ପୂଜା କରନ୍ତି ।"

ଧର୍ମତାତ୍ତ୍ୱିକ ଓ ତାଙ୍କ କ୍ରୀତଦାସଙ୍କର ଏହି କଥାବାର୍ତ୍ତା କଫି ହାଉସର ଅନ୍ୟାନ୍ୟ ସମବେତ ଅତିଥିମାନେ ବିସ୍ମୟ ସହିତ ଶ୍ରବଣ କରୁଥିଲେ । ସେମାନେ ପଣ୍ଡିତଙ୍କ ପ୍ରଶ୍ନରେ ଯେତିକି ଆଶ୍ଚର୍ଯ୍ୟାନ୍ୱିତ ହେଲେ, କ୍ରୀତଦାସର ଉତ୍ତରରେ ସେତିକି ବିସ୍ମିତ ହେଲେ ।

ସମାଗତଙ୍କ ମଧ୍ୟରୁ ଜଣେ ବ୍ରାହ୍ମଣ କ୍ରୀତଦାସକୁ ପଚାରିଲେ, "ତୁମେ ଘୋର ମୂର୍ଖ, ତୁମେ କିପରି ବିଶ୍ୱାସ କରୁଛ ଯେ ମଣିଷର ଅଣ୍ଟାରେ ବିଶ୍ୱର ଭଗବାନ ପରିବହିତ ହେବେ ? ବିଶ୍ୱର ଭଗବାନ ଏକ—ବ୍ରହ୍ମ, ସମଗ୍ର ବିଶ୍ୱଠାରୁ ସେ ମହତ୍ତର । ସେହି ବିଶ୍ୱସ୍ରଷ୍ଟା ଶ୍ରେଷ୍ଠଶକ୍ତି ବ୍ରହ୍ମଙ୍କର ସମ୍ମାନ ଓ ରକ୍ଷାପାଇଁ ଗଙ୍ଗାକୂଳରେ ମନ୍ଦିର

ନିର୍ମିତ ହୋଇଅଛି । ପ୍ରକୃତ ଭକ୍ତ ବ୍ରାହ୍ମଣମାନେ ତାଙ୍କର ପୂଜା କରନ୍ତି । ସେମାନେ କେବଳ ପ୍ରକୃତ ଈଶ୍ୱରଙ୍କୁ ଜାଣନ୍ତି । ହଜାର ହଜାର ବର୍ଷ ଅତୀତ ହେଲାଣି, ବିପ୍ଳବ ପରେ ବିପ୍ଳବ ଆସିଛି, ତଥାପି ଏହି ଯାଜକମାନେ ସେମାନଙ୍କର ଗରିମା ବଜାୟ ରଖି ପାରିଛନ୍ତି । କାରଣ ପ୍ରକୃତ ଈଶ୍ୱର ବ୍ରହ୍ମ ସେମାନଙ୍କୁ ରକ୍ଷା କରି ଆସିଛନ୍ତି ।"

ବ୍ରାହ୍ମଣ ମହାଶୟ ତାଙ୍କ ବକ୍ତୃତାକୁ ସମସ୍ତଙ୍କର ହୃଦୟଙ୍ଗମ କରାଇ ପାରିଛନ୍ତି ବୋଲି ଆତ୍ମ ପ୍ରସାଦ ଅନୁଭବ କରୁ କରୁ ଜଣେକ ଇହୁଦୀ ବ୍ୟବସାୟୀ ତାଙ୍କୁ ଉତ୍ତର ଦେବା ଛଳରେ ଆରମ୍ଭ କଲେ—

"କଦାପି ନୁହେଁ । ପ୍ରକୃତ ଈଶ୍ୱରଙ୍କର ମନ୍ଦିର ଭାରତ-ବର୍ଷରେ ନାହିଁ । ଈଶ୍ୱର କଦାପି ବ୍ରାହ୍ମଣମାନଙ୍କୁ ରକ୍ଷାକରି ନାହାନ୍ତି କି ସେ ବ୍ରାହ୍ମଣମାନଙ୍କର ଆପଣାର ନୁହନ୍ତି । ସେ ଆବ୍ରାହମ୍, ଆଇଜାକ ଓ ଜାକବଙ୍କର । ସେ ତାଙ୍କର ପରୀକ୍ଷିତ ଜାତି ଇସ୍ରାଏଲମାନଙ୍କୁ ରକ୍ଷାକରନ୍ତି । ଯଦି ଆମ୍ଭେମାନେ ବର୍ତ୍ତମାନ ସାରା ବିଶ୍ୱରେ ଇତସ୍ତତଃ ହୋଇ କାଳାତିପାତ କରୁଛୁ ତେବେ ତାହା କେବଳ ଆମ୍ଭମାନଙ୍କର ପରୀକ୍ଷାପାଇଁ । ଈଶ୍ୱର ପ୍ରତିଶ୍ରୁତି ଦେଇଛନ୍ତି ଯେ ସେ ଦିନେ ଜେରୁଜେଲମରେ ଆମ୍ଭମାନଙ୍କୁ ଏକତ୍ର କରିବେ । ପ୍ରାଚୀନ ପୃଥିବୀର ଆଶ୍ଚର୍ଯ୍ୟ ଜେରୁଜେଲମ୍ ମନ୍ଦିରଠାରେ ଲୁପ୍ତ ଅତୀତ ଗୌରବ ଫେରିଆସିବ । ଇସ୍ରାଏଲମାନେ ବିଶ୍ୱର ପ୍ରତ୍ୟେକ ଜାତିର ଶାସକ ଗାଦିରେ ପ୍ରତିଷ୍ଠିତ ହେବେ ।" ଏହା କହି ଇହୁଦୀ ମହାଶୟ କାନ୍ଦି ପକାଇଲେ । ଆହୁରି କହିବା ପାଇଁ ତାଙ୍କର ଇଚ୍ଛା ଥିଲା; କିନ୍ତୁ ଜଣେକ ଇଟାଲୀୟ ଧର୍ମପ୍ରଚାରକ ତାଙ୍କୁ ବାଧାଦେଇ କହିଲେ—

"ଆପଣ ଅସତ୍ୟ ଭାଷଣ କରୁଛନ୍ତି । ଈଶ୍ୱରଙ୍କ ପ୍ରତି ଅନ୍ୟାୟ ଆଚରଣ କରୁଛନ୍ତି ।" ସେ ଇହୁଦୀ ବ୍ୟବସାୟୀଙ୍କୁ ଏପରି ଉତ୍ତର ଦେଇ ପୁଣି କହିଲେ, "ଅନ୍ୟମାନଙ୍କଠାରୁ ସେ ଆପଣଙ୍କ ଜାତିକୁ କଦାପି ଅଧିକ କୃପା କରି ନ ପାରନ୍ତି । ଏହା ହୁଏତ ଗୋଟିଏ ପୁରୁଣା କାଳର ଧାରଣା ଯେ, ସେ ଇସ୍ରାଏଲମାନଙ୍କୁ କୃପା କରିଥିଲେ । ତଥାପି ସେମାନେ ଊଣେଇଶ ଶହ ବର୍ଷ ହେଲା ତାଙ୍କର ବିରାଗଭାଜନ ହୋଇଛନ୍ତି । ସେମାନଙ୍କୁ ଧ୍ୱଂସ କରି ବିଶ୍ୱ ବକ୍ଷରେ ଇତସ୍ତତଃ କରି ଦେଇଛନ୍ତି, ଯେପରି ସେମାନେ ଅନ୍ୟ କାହାକୁ ତାଙ୍କ ବିଶ୍ୱାସରେ ପ୍ରଭାବିତ କରିବେ ନାହିଁ । ଏହି ବିଶ୍ୱାସ ବର୍ତ୍ତମାନ ମୃତପ୍ରାୟ ସଙ୍କୁଚିତ । ଈଶ୍ୱର କୌଣସି ଜାତିପ୍ରତି ପକ୍ଷପାତ ବିଚାର କରି ନାହାନ୍ତି । କେବଳ ସେ ରୋମ୍‌ର କ୍ୟାଥଲିକ୍ ଚର୍ଚ୍ଚକୁ ମୁକ୍ତିକାମୀମାନଙ୍କୁ ଆହ୍ୱାନ କରିଛନ୍ତି । ଏହାର ବ୍ୟତିକ୍ରମରେ ମୁକ୍ତିର ସନ୍ଧାନ ମିଳେ ନାହିଁ ।"

ଇଟାଲୀୟଙ୍କ ଏହି ଭାଷଣରେ ବିବ୍ରତ ହୋଇ ଉପସ୍ଥିତ ଜନୈକ ପ୍ରୋଟେଷ୍ଟାଣ୍ଟ ମନ୍ତ୍ରୀ କ୍ୟାଥଲିକ୍ ଧର୍ମପ୍ରଚାରକଙ୍କୁ ଚିତ୍କାର କରି କହିଲେ—

"ଆପଣ କିପରି କହିପାରୁଛନ୍ତି ଯେ, ଆପଣଙ୍କ ସମ୍ପ୍ରଦାୟ ପାଇଁ ମୁକ୍ତି ଅଭିପ୍ରେତ ? ସୁସମାଚାର ଧର୍ମ ଓ ସତ୍ୟ ଅନୁଯାୟୀ ଈଶ୍ୱର-ଉପାସକମାନେ ହିଁ କେବଳ ସୁରକ୍ଷିତ ହେବେ ।"

ତତ୍‌କ୍ଷଣାତ୍ ସୁରତ କଷ୍ଟମ୍‌ହାଉସ୍‌ର ଜନୈକ ତୁର୍କୀ କର୍ମଚାରୀ ଧୂଆଁ ଖାଉଥିବା ନଳୀକୁ ରଖିଦେଇ ସ୍ୱୀୟ ଆଭିଜାତ୍ୟ ପ୍ରକାଶ କରି ଉପରୋକ୍ତ ଖ୍ରୀଷ୍ଟୀୟଦ୍ୱୟଙ୍କୁ ଉତ୍ତର କଲେ—

ଆପଣମାନଙ୍କର ରୋମୀୟ ଧର୍ମବିଶ୍ୱାସ ବୃଥା । ପ୍ରକୃତରେ ବାର ଶହ ବର୍ଷ ପୂର୍ବେ ସତ୍ୟ ଉପରେ ପ୍ରତିଷ୍ଠିତ ମହମ୍ମଦଙ୍କ ପ୍ରଚାରିତ

ପ୍ରକୃତ ଧର୍ମମାର୍ଗଦ୍ୱାରା ଏହା ପରୀକ୍ଷିତ । ଆପଣମାନେ ନିରୀକ୍ଷଣ କରନ୍ତୁ, କପରି ମୁସଲମ୍ ଧର୍ମବିଶ୍ୱାସ ଇଉରୋପ, ଏସିଆ ଏପରିକି ସୁସଭ୍ୟ ଚୀନ ଦେଶରେ ବ୍ୟାପିଯାଇଛି । ଆପଣମାନେ ତ କହୁଛନ୍ତି ଯେ ଈଶ୍ୱର ଇହୁଦୀମାନଙ୍କୁ ଗ୍ରହଣ କରି ନାହାନ୍ତି । ପ୍ରମାଣସ୍ୱରୂପ ଆପଣମାନେ କହୁଛନ୍ତି ଯେ, ଇହୁଦୀମାନେ ଆଜି ଲାଞ୍ଛିତ ଏବଂ ସେମାନଙ୍କ ଧର୍ମବିଶ୍ୱାସର ବ୍ୟାପ୍ତି ନାହିଁ । ଆପଣମାନେ ମୁସଲମ୍ ଧର୍ମର ସତ୍ୟକୁ ସ୍ୱୀକାର କରନ୍ତୁ । ଏହା ବିଜୟୀ ଏବଂ ଚତୁର୍ଦ୍ଦିଗରେ ପ୍ରସାରିତ । ଈଶ୍ୱରଙ୍କ ସର୍ବଶେଷ ଦୂତ ମହମ୍ମଦଙ୍କର ଅନୁଗାମୀ ବ୍ୟତୀତ ଆଉ କେହି ମୁକ୍ତି ପାଇବେ ନାହିଁ । ଅଲ୍ଲୀଙ୍କର ଅନୁଗାମୀମାନେ ଧର୍ମବିଶ୍ୱାସ ପ୍ରତି ଛଦ୍ମ ଭାବ ପ୍ରକାଶ କରିଥିବାରୁ କେବଳ ଓମାରଙ୍କ ଶିଷ୍ୟମାନେ ଏହି ସୁଯୋଗର ଅଧିକାରୀ ।"

ଅଲ୍ଲୀ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ପୂର୍ବୋକ୍ତ ପାରସୀ ପଣ୍ଡିତ ଉତ୍ତର ଦେବାକୁ ଇଚ୍ଛା ପ୍ରକାଶ କରୁଥିଲେ; କିନ୍ତୁ ସେତେବେଳକୁ ଉପସ୍ଥିତ ବିଭିନ୍ନ ଧର୍ମବିଶ୍ୱାସ ଓ ଗୋଷ୍ଠୀସମ୍ପର୍କୀୟ ବହୁ ଲୋକଙ୍କ ମଧ୍ୟରେ ତୁମୁଳ ମତଭେଦ ଓ ବାଦାନୁବାଦର ସୃଷ୍ଟି ହୋଇଯାଇଥିଲା । ସେଠାରେ ଆବିସିନିଆର ଖ୍ରୀଷ୍ଟିୟାନ, ତିବ୍ବତର ଲାମା, ଇସ୍ମାଇଲ୍ ମତାବଲମ୍ବୀ ଅଗ୍ନିପୂଜକମାନେ ମଧ୍ୟ ଉପସ୍ଥିତ ଥିଲେ । ସମସ୍ତେ ଈଶ୍ୱରଙ୍କ ସ୍ୱରୂପ ଓ ଉପାସନାର ପଦ୍ଧତି ସମ୍ପର୍କରେ ଯୁକ୍ତିତର୍କ କଲେ । ସମସ୍ତଙ୍କଦ୍ୱାରା କେବଳ ତାଙ୍କ ଦେଶରେ ପ୍ରକୃତ ଈଶ୍ୱରଙ୍କର ନ୍ୟାୟୋଚିତ ଉପାସନା ହୁଏ ବୋଲି ଦୃଢ଼ ଯୁକ୍ତି ଉପସ୍ଥାପିତ ହେଲା ।

କନ୍‌ଫୁସିଅସ୍‌ଙ୍କ ଶିଷ୍ୟ ଚୀନର ଜଣେ ଯୁବକଙ୍କ ବ୍ୟତୀତ ସମସ୍ତେ ଯୁକ୍ତିତର୍କ ଓ ପାଟିଗୋଳରେ ଅଂଶ ଗ୍ରହଣ କରିଥିଲେ । କେବଳ ସେ କଫି ହାଉସ୍‌ର ଗୋଟିଏ କୋଣରେ ନୀରବ ରହି

ଏ ସନ୍ଦର୍ଭରେ ଯୋଗଦେଇ ନ ଥିଲେ । ସେ ସେଠାରେ ଗୁଡ଼ ପାନ କରୁଥିଲେ ଏବଂ ଅନ୍ୟମାନଙ୍କ ବକ୍ତୃତା କେବଳ ଶୁଣୁଥିଲେ; କିନ୍ତୁ ପାଟି ଫିଟାଇ ସେ ପର୍ଯ୍ୟନ୍ତ ପଦେ କହି ନ ଥିଲେ ।

ତୁର୍କ ଦେଶୀୟ ମହାଶୟଙ୍କର ଏହା ଦୃଷ୍ଟିଗୋଚର ହେଲା । ସେ ତାଙ୍କୁ ପ୍ରାର୍ଥନା କରି କହିଲେ—

"ଚୀନ ଦେଶର ସାଧୁ ମହାଶୟ; ଆପଣ ମୋ ସହିତ ନିଶ୍ଚୟ ଏକମତ ହେବେ । ଆପଣ ନିଶ୍ଚିନ୍ତରେ ବସିଛନ୍ତି, କିନ୍ତୁ ଆଶାକରେ ଆପଣ ମୋ ମତକୁ ସମ୍ମାନ କରନ୍ତୁ । ଆପଣଙ୍କ ଦେଶର ଯେଉଁ ବ୍ୟବସାୟୀମାନେ ମୋର ସହଯୋଗ ନିମିତ୍ତ ଆସନ୍ତି, ସେମାନେ କହନ୍ତି ଯେ ଯଦିଓ ଅନେକ ଧର୍ମମତ ଚୀନ ଦେଶରେ ପ୍ରଚଳିତ, ତଥାପି ଆପଣ ଚୈନିକମାନେ ମୁସଲମ୍ ଧର୍ମମତକୁ ଶ୍ରେଷ୍ଠ ଆସନ ଦେଇ ସ୍ୱେଚ୍ଛାରେ ଅନୁସରଣ କରନ୍ତି । ତେଣୁ ମୋ ସହିତ ଏକମତ ହୋଇ ଆମମାନଙ୍କ ସମକ୍ଷରେ ଈଶ୍ୱର ଓ ତାଙ୍କ ଦୂତ ସମ୍ପର୍କରେ ଆପଣଙ୍କ ଅଭିମତ ପ୍ରକାଶ କରନ୍ତୁ ।"

କନ୍‌ଫ୍ୟୁସିଅସ୍‌ଙ୍କ ଛାତ୍ର ଚୈନିକ ଆଖି ବନ୍ଦକରି ମୁହୂର୍ତ୍ତେ ଚିନ୍ତାକଲେ । ସେ ଆଖି ଖୋଲି ତାଙ୍କ ପ୍ରଶସ୍ତ ଗୁଣ୍ଡ ଉପରେ ହାତ ରଖି ଧୀର-ଶାନ୍ତ ଗଳାରେ ପ୍ରକାଶ କଲେ—

"ମହାଶୟ, ମୋର ଧାରଣା, ଧର୍ମବିଶ୍ୱାସରେ ମନୁଷ୍ୟ ମଧ୍ୟରେ ମତଭେଦର କାରଣ ଗର୍ବ । ଆପଣ ଯେବେ ମୋ କଥା ଶୁଣିବାକୁ ଇଚ୍ଛା କରନ୍ତି; ମୁଁ ଆପଣମାନଙ୍କୁ ଗୋଟିଏ କାହାଣୀ କହିବି । ଏହି କାହାଣୀ ମୋର ବକ୍ତବ୍ୟର ଏକ ଉଦାହରଣ ମାତ୍ର ।

"ମୁଁ ଚୀନ ଦେଶରୁ ଇଂଲଣ୍ଡ ଦେଶର ଗୋଟିଏ ଷ୍ଟିମରରେ ବିଶ୍ୱ ପରିକ୍ରମା କରି ଆସିଲି । ଆମେମାନେ ପାଣି ପାଇଁ ସୁମାତ୍ରା ଦ୍ୱୀପର ପୂର୍ବ ଉପକୂଳରେ ଓହ୍ଲାଇଲୁ । ମଧ୍ୟାହ୍ନ ସମୟ ।

ଆମମାନଙ୍କ ମଧ୍ୟରୁ କେତେକ ସ୍ଥଳଭାଗରେ ସାଗର ବନ୍ଦରରେ ଜନପଦଠାରୁ ଅଳ୍ପ ଦୂରରେ ନଡ଼ିଆଗଛ ବା ତାଳଗଛ ଛାଇରେ ବସିଲୁ । ଆମ ଯାତ୍ରୀଦଳରେ ବିଭିନ୍ନ ଜାତିର ଯାତ୍ରୀ ଥିଲେ ।

"ବସିଥିଲା ବେଳେ ଅନ୍ଧ ଟିଏ ଆମ ନିକଟକୁ ଆସିଲା । ଆମେ ପରେ ବୁଝିଲୁ ଯେ ସେ ଏକାଗ୍ର ମନରେ ବହୁକ୍ଷଣଧରି ସୂର୍ଯ୍ୟମଣ୍ଡଳକୁ ଚାହିଁ ଚାହିଁ ସୂର୍ଯ୍ୟ କଣ ଓ ସୂର୍ଯ୍ୟାଲୋକ ସମ୍ପର୍କରେ ଜାଣିବାକୁ ଚେଷ୍ଟା କରୁଥିଲା । ବହୁଦିନ ଧରି ସେ ନିଜର ଗବେଷଣା କରିଥିଲା । କିନ୍ତୁ ଏକମାତ୍ର ପୁରସ୍କାର ସ୍ୱରୂପ ସୂର୍ଯ୍ୟାଲୋକର ପ୍ରଖରତାରେ ସେ ଅନ୍ଧ ହୋଇଯାଇଛି । ତା'ପରେ ସେ କହିଚାଲିଲା—

'ସୂର୍ଯ୍ୟାଲୋକ ତରଳ ନୁହେଁ । ଯଦି ଏହା ତରଳ ହୋଇଥାନ୍ତା, ଏକ ପାତ୍ରରୁ ଅନ୍ୟ ପାତ୍ରକୁ ତ ଢାଳିହୁଅନ୍ତା ଏବଂ ପବନରେ ଜଳର ଗତି ପରି ଏହାର ଗତି ଥାଆନ୍ତା । ଆଉ ମଧ୍ୟ ଏହା ଅଗ୍ନି ହୋଇ ନ ପାରେ । ଅଗ୍ନି ହୋଇଥିଲେ ଜଳଦ୍ୱାରା ତ ନିର୍ବାପିତ ହୋଇପାରନ୍ତା । ଏହା ମଧ୍ୟ କୌଣସି ଭୌତିକ ବ୍ୟାପାର ନୁହେଁ, କାରଣ ଆଖିକୁ ତ ଦେଖାଯାଉଛି । ଏହା କୌଣସି ଦ୍ରବ୍ୟ ନୁହେଁ, କାରଣ ଏହାର ଗତି ନାହିଁ । ସୁତରାଂ ସୂର୍ଯ୍ୟାଲୋକ ତରଳ ପଦାର୍ଥ, ଅଗ୍ନି, ଭୌତିକ ବସ୍ତୁ ବା ଦ୍ରବ୍ୟ ନୁହେଁ । ଏହା ବିରାଟ ନାସ୍ତି ।'

"ମନରେ ତାର ଏଇ ଯୁକ୍ତି ଆନ୍ଦୋଳିତ ହେଲା । ଫଳରେ ସର୍ବଦା ସୂର୍ଯ୍ୟାଲୋକକୁ ଚାହିଁ ଓ ସେ ସମ୍ପର୍କରେ ଗଭୀର ଚିନ୍ତା କରି ସେ ଦୃଷ୍ଟିଶକ୍ତି ଓ ଯୁକ୍ତିଶକ୍ତି ଉଭୟ ହରାଇଲା । ସେ ଯେତେବେଳେ ପୂର୍ଣ୍ଣ ଅନ୍ଧତ୍ୱ ଲାଭ କଲା, ତାର ଦୃଢ଼ ବିଶ୍ୱାସ ହେଲା ଯେ, ସୂର୍ଯ୍ୟର ସ୍ଥିତି ନାହିଁ ।"

''ଏହି ଅନ୍ଧ ସନ୍ଥତ ଗୋଟିଏ ଙ୍କୀତଦାସ ଆସିଥିଲି । ସେ ତାର ମୁନିବଙ୍କୁ ନଡ଼ିଆ ଗଛର ଗ୍ଗୁଡ଼ିରେ ବସାଇ ଦେଇ ରାତିରେ ନିଆଁ କରିବାକୁ ଡାଳ ଶୁଖିଲା କାଠ ଗୋଟେଇ ଆଣିଲା । ନଡ଼ିଆ ପାରୁକୁ ସଳିତା କରି ସଡ଼େଇରେ ନଡ଼ିଆ ତେଲ ପୂରାଇ ଅଗ୍ନିର ଯୋଗାଡ଼ କଲା । ଙ୍କୀତଦାସର ଏହି କାର୍ଯ୍ୟ ସମୟରେ ଦୀର୍ଘ ନିଶ୍ୱାସ ପକାଇ ଅନ୍ଧ ଲୋକଟି ତାକୁ କହିଲା, 'ମୁଁ ଠିକ୍ କହୁ ନ ଥିଲି କି, ସୂର୍ଯ୍ୟ ବୋଲି ଗୋଟାଏ କିଛି ନାହିଁ । ତୁ କଣ ଦେଖିପାରୁନୁ କିପରି ଘନ ଅନ୍ଧାର ମାଡ଼ି ଆସୁଛି । ତଥାପି ଲୋକେ କହନ୍ତି ସୂର୍ଯ୍ୟ ଅଛି । ଯଦି ଅଛି ସେଇଟା ତେବେ କିଭଳି ବସ୍ତୁ ?'

ଙ୍କୀତଦାସ ଉତ୍ତର କଲା, ''ସୂର୍ଯ୍ୟ କଣ ମୁଁ ଜାଣେ ନାହିଁ । ମୋର ଜାଣିବାର କିଛି ଆବଶ୍ୟକତା ନାହିଁ । ହେଲେ ଆଲୁଅ କ'ଣ—ମୁଁ ଜାଣେ । ରାତିରେ ଜାଳିବାଲାଗି ମୁଁ ବତି ତିଆରି କରିଛି । ଏହା ସାହାଯ୍ୟରେ ମୁଁ କାମ କରିପାରିବି ।' ନଡ଼ିଆ ସଡ଼େଇକି ହାତରେ ଧରି ଙ୍କୀତଦାସଟି କହିଲା, 'ଏଇ ତ ମୋ ସୂର୍ଯ୍ୟ ।'

ଖ୍ଣେଟା ଲୋକଟିଏ ଆଶାବାଡ଼ିଟିଏ ଧରି ପାଖରେ ବସିଥିଲା । ସେ ଏକଥା ଶୁଣି ହସି କହିଲା, 'ମହାଶୟ, ଆପଣ ସାରାଜୀବନ ପାଇଁ ଦୃଷ୍ଟିଶକ୍ତି ହରାଇଛନ୍ତି । ସୂର୍ଯ୍ୟ କ'ଣ ଜାଣି ନାହାନ୍ତି । ମୁଁ ଆପଣଙ୍କୁ କହିଦେଉଛି ଯେ, ସୂର୍ଯ୍ୟ ଗୋଟିଏ ଅଗ୍ନି-କନ୍ଦୁକ । ପ୍ରତି ପ୍ରତ୍ୟୁଷରେ ସାଗର ଗର୍ଭରୁ ଉଦିତ ହୋଇ ଏହି ଉପଦ୍ୱୀପର ପର୍ବତମାଳାରେ ପ୍ରତି ସନ୍ଧ୍ୟାରେ ଅସ୍ତ ହୁଏ । ଆମେ ଏହା ସମସ୍ତେ ଦେଖିଆସୁଛୁଁ, ଆପଣଙ୍କର ଦୃଷ୍ଟିଶକ୍ତି ଥିଲେ ଆପଣ ମଧ୍ୟ ଦେଖିପାରନ୍ତେ ।'

ଧୀବର ଜଣେ ଏ କଥୋପକଥନ ଶୁଣି କହିଲା, 'ମହାଶୟ, ସତ କଥା, ଆପଣ କେବେହେଲେ ଏହି ଉପଦ୍ୱୀପ ବାହାରକୁ

ଯାଇ ନାହାନ୍ତି । ଆପଣ ଶ୍ରେଷ୍ଠୀ ହୋଇ ନ ଥିଲେ ଏବଂ ଆମମାନଙ୍କ ସହିତ ସମୁଦ୍ର ବିହାର କରିଥିଲେ ଅବଶ୍ୟ ଜାଣିପାରିଥାନ୍ତେ ଯେ, ସୂର୍ଯ୍ୟାସ୍ତ ଏହି ଉପଦ୍ୱୀପରେ ଏହି ପର୍ବତମାଳାରେ ହୁଏ ନାହିଁ । ପ୍ରତି ପ୍ରତ୍ୟୁଷରେ ଯେପରି ସାଗର ଗର୍ଭରୁ ଏହାର ଉଦୟ, ପ୍ରତି ସନ୍ଧ୍ୟାରେ ସେହିପରି ସାଗରରେ ତାର ଅସ୍ତ । ମୁଁ ଆପଣଙ୍କୁ ନିରାଟ ସତ୍ୟ କହୁଛି । ପ୍ରତିଦିନ ନିଜ ଆଖିରେ ଏହା ଦେଖିଆସୁଛି ।'

ଆମ ଯାତ୍ରୀଦଳର ଜଣେ ହିରଣ୍ୟୁ କହିଉଠିଲେ, 'ଆଶ୍ଚର୍ଯ୍ୟର କଥା ଯେ, ଜଣେ ଜ୍ଞାନୀ ଲୋକ ଏପରି ବାଜେ କଥା କହିପାରନ୍ତି । ଅଗ୍ନି-କନ୍ଦୁକ କିପରି ଜଳଗାମୀ ହୁଏ ଓ ତାହାର ପୁଣି ବିନାଶ ନାହିଁ ! ସୂର୍ଯ୍ୟ ଅଗ୍ନି-କନ୍ଦୁକ ନୁହନ୍ତି । ସେ ଦେବତା, ଅନନ୍ତକାଳ ପାଇଁ ରଥରେ ସେ ସୁବର୍ଣ୍ଣ ପର୍ବତ 'ମେରୁ' ପରିକ୍ରମା କରନ୍ତି । ସମୟେ ସମୟେ ମନ୍ଦସର୍ପ ରାହୁ ଓ କେତୁ ଏହି ଦେବତାଙ୍କୁ ଆକ୍ରମଣ କରି ତିରସ୍କାର କରନ୍ତି । ପୃଥିବୀ ସେତେବେଳେ ଅମାଚ୍ଛନ୍ନ ହୁଏ । ଆମ ଧର୍ମଯାଜକମାନେ ଦେବତାଙ୍କ ମୁକ୍ତିପାଇଁ ପ୍ରାର୍ଥନା କରନ୍ତି ଓ ତାଙ୍କର ମୁକ୍ତି ହୁଏ । ଆପଣଙ୍କ ପରି ଅଜ୍ଞ ଲୋକ ଯେଉଁମାନେ ନିଜର ଉପଦ୍ୱୀପ ବାହାରକୁ ଯାତ୍ରା କରି ନାହାନ୍ତି ସେହିମାନେ ହିଁ କେବଳ କଳ୍ପନା କରିପାରନ୍ତି ଯେ, ସୂର୍ଯ୍ୟ କେବଳ ତାଙ୍କର ଦେଶଲାଗି ଉଦିତ ହୁଅନ୍ତି ।'

ଗୋଟିଏ ଇଜିପ୍‌ଟ ଜାହାଜର ଜଣେ ମାଲିକ ଉପସ୍ଥିତ ଥିଲେ । ସେ କହିଲେ, 'ଆପଣ ମଧ୍ୟ ଭୁଲ କହୁଛନ୍ତି ମହାଶୟ, ସୂର୍ଯ୍ୟ ଦେବତା ନୁହନ୍ତି । ସେ କେବଳ ଭାରତବର୍ଷ ବା ତାହାର ସୁବର୍ଣ୍ଣ ପର୍ବତ ପରିକ୍ରମା କରନ୍ତି ନାହିଁ । କୃଷ୍ଣସାଗର, ଆରବ ମହାଦେଶର ଉପକୂଳ, ମାଡ଼ାଗାସ୍କାର ଏବଂ ଫିଲିପାଇନ୍‌ସ ଦ୍ୱୀପପୁଞ୍ଜ ମୁଁ ଭ୍ରମଣ କରିଛି । ସୂର୍ଯ୍ୟ କେବଳ ଭାରତ ନୁହେଁ ସମଗ୍ର ବିଶ୍ୱକୁ

ଆଲୋକିତ କରେ । ସେ ଗୋଟିଏ ପର୍ବତ ପରିକ୍ରମା କରେ ନାହିଁ । ସୁଦୂର ପ୍ରାଚୀ ଦିଗରେ ଜାପାନ ଦେଶର ଅଧିବାସୀମାନେ ନିଜ ମାତୃଭୂମିକୁ 'ନିପନ୍' ବୋଲି କହିଥାନ୍ତି । ତାହାର ଅର୍ଥ ହେଉଛି 'ସୂର୍ଯ୍ୟର ଜନ୍ମ ଦେଶ' । ମୁଁ ତ ନିଜେ ବହୁତ ଦେଖିଛି ଓ ସମୁଦ୍ରର ସୁଦୂର ଯାତ୍ରୀ ମୋର ପିତାମହ ମଧ୍ୟ ଏ ବିଷୟରେ ମୋତେ ଯଥେଷ୍ଟ କହିଛନ୍ତି । ତେଣୁ ମୁଁ ଏହା ଭଲ ଭାବରେ ଜାଣେ ।'

ଆମ ଜାହାଜର ଜଣୈକ ଇଂରେଜ ନାବିକ ବାଧା ଦେଇ କହି ଉଠିଲେ, 'ଇଂଲଣ୍ଡ ଛଡ଼ା ସୂର୍ଯ୍ୟର ଗତିବିଧି ସମ୍ପର୍କରେ ବିଶଦ ଭାବରେ ଜାଣିଥିବା ଦେଶ ଆଉ ନାହିଁ । ପ୍ରତ୍ୟେକ ଇଂରେଜ ନାଗରିକ ଜାଣନ୍ତି ଯେ ସୂର୍ଯ୍ୟର ଉଦୟ ନାହିଁ ବା ଅସ୍ତ ନାହିଁ । ଏହା ସର୍ବଦା ପୃଥିବୀ ପରିକ୍ରମା କରେ । ଆମର ଧାରଣା ନିଶ୍ଚିତ । କାରଣ ଆମେ ଏବେ ବିଶ୍ୱ-ପର୍ଯ୍ୟଟନରୁ ଫେରିଛୁ । କୌଣସି ସ୍ଥାନରେ ସୂର୍ଯ୍ୟ ସହିତ ଧକ୍କା ହୋଇ ନାହିଁ । ସର୍ବତ୍ର ଆମେ ଦେଖିଛୁ ସୂର୍ଯ୍ୟର ଉଦୟ ପ୍ରତ୍ୟୁଷରେ, ଅସ୍ତ ସନ୍ଧ୍ୟାରେ । ହାତରେ ବାଡ଼ିଟିଏ ଧରି ବାଲିରେ ବୃତ୍ତ କାଟି ଇଂରେଜ ନାବିକ ଜଣକ ଆକାଶରେ ସୂର୍ଯ୍ୟର ଗତି ସମ୍ପର୍କରେ ବୁଝାଇବାକୁ ଚେଷ୍ଟାକଲେ । ସେ ଅକ୍ଷମତା ଅନୁଭବ କରି ଜାହାଜର କାପ୍ତାନଙ୍କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, ଏହି ଭଦ୍ରବ୍ୟକ୍ତି ମୋ ଠାରୁ ଅଧିକ ଜାଣନ୍ତି । ସେ ଯଥାଯଥ ଭାବରେ ବୁଝାଇ ପାରିବେ ।''

''ବୁଦ୍ଧିମାନ କପ୍ତାନ ଏପର୍ଯ୍ୟନ୍ତ ନୀରବରେ ସମସ୍ତ ଆଲୋଚନା ଶୁଣୁଥିଲେ । ତାଙ୍କଆଡ଼େ ସମସ୍ତଙ୍କ ଦୃଷ୍ଟି ପଡ଼ିବାରୁ ସେ କହିଲେ, 'ଆପଣମାନେ ସମସ୍ତେ ଭୁଲ ବିଚାର କରିଛନ୍ତି । ସୂର୍ଯ୍ୟ ପୃଥିବୀ

ପରିକ୍ରମା କରେ ନାହିଁ । ପୃଥିବୀ ସୂର୍ଯ୍ୟମଣ୍ଡଳ ପରିକ୍ରମା କରେ । ଏହି ପରିକ୍ରମା ସମୟରେ କେବଳ ଜାପାନ, ଫିଲିପାଇନ୍‌ସ ବା ସୁମାତ୍ରା ନୁହନ୍ତି, ଆଫ୍ରିକା, ଇଉରୋପ, ଆମେରିକା ମଧ୍ୟ କ୍ରମାନ୍ୱୟରେ ସୂର୍ଯ୍ୟ ଦର୍ଶନ କରନ୍ତି । ସୂର୍ଯ୍ୟ କୌଣସି ପର୍ବତ, ଉପଦ୍ୱୀପ, ସମୁଦ୍ର ବା କେବଳ ପୃଥିବୀପାଇଁ ଉଦିତ ହୁଏ ନାହିଁ; ପୃଥିବୀ ସମେତ ସମଗ୍ର ଗ୍ରହମଣ୍ଡଳ ପାଇଁ ତାର ସୃଷ୍ଟି । ଆକାଶ ସମ୍ବନ୍ଧୀୟ ଶାସ୍ତ୍ର ପର୍ଯ୍ୟାଲୋଚନା କଲେ ଆପଣମାନେ ଜାଣିପାରିବେ ଯେ କେବଳ ବ୍ୟକ୍ତିବିଶେଷ ବା ଦେଶ ପାଇଁ ସୂର୍ଯ୍ୟୋଦୟ ହୁଏ ନାହିଁ ।"

ପ୍ରବୀଣ ବିଶ୍ୱପର୍ଯ୍ୟଟକ ଓ ପର୍ଯ୍ୟବେକ୍ଷକ ଏହି ବୁଦ୍ଧିମାନ କପ୍ତାନ ମହାଶୟ ଏହିପରି ତାଙ୍କ ବକ୍ତବ୍ୟ ସାଙ୍ଗ କଲେ ।

କନ୍‌ଫୁସିଅସଙ୍କ ଶିଷ୍ୟ ଚୈନିକ ମହାଶୟ ପୁଣି କହିଲେ, "ଧର୍ମବିଶ୍ୱାସ ସମ୍ପର୍କୀୟ ବ୍ୟାପାରରେ ଗର୍ବ ହିଁ ଭ୍ରମ ଓ ମତ ବିଭିନ୍ନତାର କାରଣ । ସୂର୍ଯ୍ୟଙ୍କ ସମ୍ପର୍କରେ ଯେପରି, ଈଶ୍ୱରଙ୍କ ସମ୍ପର୍କରେ ମଧ୍ୟ ଠିକ୍ ସେହିପରି । ପ୍ରତ୍ୟେକ ବ୍ୟକ୍ତି ନିଜପାଇଁ ଓ ମାତୃଭୂମି ପାଇଁ ଗୋଟିଏ ଅଲଗା ଈଶ୍ୱର ଚାହାନ୍ତି । ପ୍ରତ୍ୟେକ ଜାତି ନିଜ ଉପାସନା ମନ୍ଦିରରେ ଈଶ୍ୱରଙ୍କୁ ବନ୍ଦୀ କରିବାକୁ ଚାହାନ୍ତି ।"

"କୌଣସି ଧର୍ମ ମନ୍ଦିର କଣ କେବେହେଲେ ସମୁଦାୟ ମାନବ ସମାଜପାଇଁ ଏକ ବିଶ୍ୱାସ ଓ ଏକ ଧର୍ମରେ ପରିଚାଳିତ ଉଦ୍ଦେଶ୍ୟରେ ଈଶ୍ୱର ସୃଷ୍ଟି ମନ୍ଦିର ସହିତ ତୁଳନୀୟ ହୋଇପାରେ ?'

'ମନୁଷ୍ୟଦ୍ୱାରା ନିର୍ମିତ ପ୍ରତ୍ୟେକ ମନ୍ଦିର ବିଶ୍ୱ ବ୍ରହ୍ମାଣ୍ଡରୂପୀ ମନ୍ଦିରର ଆଦର୍ଶରେ ଅନୁପ୍ରାଣିତ । ପ୍ରତ୍ୟେକ ମନ୍ଦିରରେ ମୁଖଶାଳା, ଛାତ, ଦୀପ, ଛବି, ଚିତ୍ରପଟ୍ଟ, ଖୋଦିତ ମନ୍ତ୍ର, ଧର୍ମଗ୍ରନ୍ଥ, ପୂଜାବିଧି, ଧର୍ମବେଦୀ, ଧର୍ମଯାଜକ ଅଛନ୍ତି; କିନ୍ତୁ କେଉଁ ମନ୍ଦିରର ସାଗର ପରି ମୁଖଶାଳା, ଆକାଶ ପରି ଛାତ, ସୂର୍ଯ୍ୟ, ଚନ୍ଦ୍ର, ତାରା ପରି ଦୀପ ଏବଂ

ଜୀବନ୍ତ ପ୍ରେମବନ୍ଧନ ପରସ୍ପର ସାହାଯ୍ୟକାରୀ ମନୁଷ୍ୟ ପରି କିଛି ଅଛି ? ମାନବ ସମାଜର ଆନନ୍ଦ ପାଇଁ ଏହି ନିଖିଳ ସୃଷ୍ଟି ପରି ଈଶ୍ୱରଙ୍କ ଶ୍ରେଷ୍ଠ ଆଶୀର୍ବାଦର ନମୁନା କେଉଁ ଜୀବ.ସନାଳୟରେ ମିଳିବ ? ମନୁଷ୍ୟହୃଦୟ ଓ ଦେବଦତ୍ତ ବିବେକ ପରି କେଉଁ ଧର୍ମ-ଗ୍ରନ୍ଥ ଏତେ ସ୍ୱଚ୍ଛ—ଏତେ ପବିତ୍ର ? ଈଶ୍ୱରପରାୟଣ ନରନାରୀ ପାଇଁ ଆତ୍ମୋତ୍ସର୍ଗ ସଦୃଶ କେଉଁ ଉତ୍ସବ ତୁଳନୀୟ ? ଈଶ୍ୱର ଭୋଗ ଗ୍ରହଣ କରୁଥିବା ଉତ୍ତମ ମନୁଷ୍ୟର ହୃଦୟ ବେଦୀ ସଦୃଶ କେଉଁ ଧର୍ମବେଦୀ ସମାନ ?'

'ଈଶ୍ୱରଙ୍କ ସମ୍ପର୍କରେ ଯେଉଁ ମନୁଷ୍ୟର ବିଚାରଧାରା ଯେତେ ଉଚ୍ଚ, ସେ ସେତିକି ତାଙ୍କ ବିଷୟରେ ଜାଣିପାରିବ । ଯେତେ ଅଧିକ ସେ ତାଙ୍କ ସମ୍ପର୍କରେ ଜାଣିବ, ସେତିକି ସେ ତାଙ୍କର ସାଧୁତା, ଦୟା ଓ ମାନବ ପ୍ରେମର ଅନୁକରଣ, ଅନୁସରଣ କରିପାରିବ ।'

'ସୁତରାଂ ବିଶ୍ୱବକ୍ଷକୁ ପ୍ଲାବିତ କରୁଥିବା ସମଗ୍ର ସୂର୍ଯ୍ୟାଲୋକ ସମ୍ପର୍କରେ ଯେ ଜାଣନ୍ତି, ସେ ପିତୁଳାରେ ସେହି ସୂର୍ଯ୍ୟାଲୋକ ବା ଏକ ଆଲୋକ ରେଖାର ପ୍ରତିଫଳନ ଦେଖୁଥିବା ଅନ୍ଧବିଶ୍ୱାସୀ ମନୁଷ୍ୟକୁ ଘୃଣା ବା ଦୋଷାରୋପ କରିବାରୁ କ୍ଷାନ୍ତ ହୁଅନ୍ତୁ । ଏପରିକି ଆଦୌ ସୂର୍ଯ୍ୟବିମ୍ବ ଦେଖିପାରୁ ନ ଥିବା ଅନ୍ଧ ଓ ଅବିଶ୍ୱାସୀ ଲୋକଙ୍କୁ ମଧ୍ୟ ଘୃଣା କରନ୍ତୁ ନାହିଁ ।'

କନ୍‌ଫୁସିଅସ୍‌ଙ୍କ ଶିଷ୍ୟ ଚୈନିକ ଯୁବକ ତାଙ୍କର ଭାଷଣ ଶେଷ କଲେ । କଫି ହାଉସ୍‌ରେ ଉପସ୍ଥିତ ସମସ୍ତେ ନୀରବ ହେଲେ । ସେମାନେ କାହାର ଧର୍ମ ଶ୍ରେଷ୍ଠ ବୋଲି ଆଉ ଯୁକ୍ତିତର୍କ କଲେ ନାହିଁ ।

---

# ୮. ଶିଷ

[ ଶ୍ରୀ ଅନନ୍ତପ୍ରସାଦ ପଣ୍ଡା ]

ଚଇତର କଅଁଳ ପାହାନ୍ତ । ବାଡ଼ ଆଗରେ ମଲ୍ଲୀ ବୁଦାଟିରେ ଅସଂଖ୍ୟ ଫୁଲ ଫୁଟି ଲଦି ହୋଇପଡ଼ିଛି । ଆଉ ତାର ସୁବାସ ଝିଲକେ ଝିଲକେ ଦକ୍ଷିଣ ପବନ ଖୋଲା ଝରକା ଭିତରେ ଦେଇ ବୋହିଆଣି ସୁରଖିର ଶେଯ ଉପରେ ଅଜାଡ଼ି ଦେଇଛି । ସୁରଖି ଶୋଇଛି ବେଶ୍ ଆରାମରେ, ଅବଶ୍ୟ ନିଦ ତାର ଟିକିଏ ହାଲୁକା ହୋଇ ଆସିଲାଣି; କିନ୍ତୁ ସମ୍ପୂର୍ଣ୍ଣ ଭାଙ୍ଗିଯାଇ ନାହିଁ । ତନ୍ଦ୍ରାର ଆବେଶରେ ସୁରଖିର ଆଖି ଯୋଡ଼ିକ ମୁଦିଯାଇଛି, ଆଉ ମନ ତାର ଉଡ଼ି ବୁଲୁଛି କେଉଁ ଅଜ୍ଞାତ ସ୍ୱପ୍ନ ରାଇଜରେ ସପନର କୁହୁକ ଛାଟି ସ୍ପର୍ଶରେ ।

ହଠାତ୍ ପଛପଟ ରୋମାନ୍ କାଥଲିକ ଗୀର୍ଜାଟାର ବିଶାଳ ଘଣ୍ଟାଟା ଢଂ ଢଂ ଢଂ କରି ବାଜିଉଠିଲା । ତାପଛକୁ ଲାଗି ଲାଗି ମସଜିଦ୍‌ଟାର ମଞ୍ଚା ଉପରୁ ଦାଢ଼ିଆ ମୋଲ୍ଲା ଅତି ବଡ଼ ପାଟିରେ ଚିତ୍କାର କରି ଉଠିଲା—'ଆଲ୍ଲା ହୋ ଆକବର ।' ଖାଲି ସେତିକି ନୁହେଁ; ଦକ୍ଷିଣ ଦିଗରେ ଥିବା ରସିକ ରାୟଙ୍କ ମନ୍ଦିରରେ ପ୍ରଭାତୀ କୀର୍ତ୍ତନ ଉଚ୍ଛୁଳି ପଡ଼ିଲା । ତା ସଙ୍ଗେ ସଙ୍ଗେ ପଡ଼ୋଶୀ ଘର ବୁଢ଼ା ରାମ ରଥ ଦାଣ୍ଡ ପିଣ୍ଡାରେ ବସି 'ହରେ ମୁରାରେ ମଧୁକୈଟଭାରେ, ଗୋବିନ୍ଦ ଗୋପାଳ ମୁକୁନ୍ଦ ସୌରେ' ପ୍ରଭୃତି ପ୍ରଭାତୀ ସ୍ତୁତି ଖୁବ୍ ଜୋର ଗଳାରେ ଗାଇଉଠିଲେ । ବାଡ଼ପଟ ଭାଡ଼ି ଭିତରୁ ସେଇସ ଆଇଲାଣ୍ଡ ଗଞ୍ଜାଟା ଚିତ୍କାର କରିଉଠିଲା 'ରଖ୍ୟା ମୋ ଚକ୍ ।'

ସୁରେଶର ନିଦଟା ଗୁଡ଼ିକିନା ଭାଙ୍ଗିଗଲା । ମନରେ ଗୋଟାଏ ବିରକ୍ତ ଭାବ ମଧ୍ୟ ଜାଗିଉଠିଲା। ତାର ମନେ ହେଲା ସତେ ଯେମିତି ଦୁନିଆଟା ସାରା ତାର ଏ ସୁଖ ନିଦ୍ରା ଭାଙ୍ଗିଦେବାପାଇଁ ଗୋଟାଏ ମେଣ୍ଟ ବାନ୍ଧିଛନ୍ତି !

ଠିକ୍ ଏତିକବେଳେ ଭୋର ଗାଡ଼ିକୁ ନେଇଯିବା ପାଇଁ କଣ୍ଟ ଦେଇଥିବା ରିକ୍ସାବାଲାଟା ଆସି ପଡ଼ୋଶୀ ଘରେ ଚିତ୍କାର କରି ଉଠିଲା — ବାବୁ ଉଠ, ଯିବ ପରା । ବେଳ ହୋଇଗଲା ଯେ । ଦାଣ୍ଡ ଆଗ ସଡ଼କରେ ଟାଉନ ବସ୍‌ଟା ମଧ୍ୟ ପେଁ ପେଁ ହର୍ଣ୍ଣ ବଜାଇ ଧାଇଁଗଲା । ସୁରେଶ ଆଉ ଶାନ୍ତିରେ ଶୋଇପାରିଲା ନାହିଁ । ମୁଣ୍ଡଟେକି ବାହାରକୁ ଚାହିଁଲା—ଏବେ ସୁଦ୍ଧା ଅନ୍ଧାର ସମ୍ପୂର୍ଣ୍ଣରୂପେ କଟିଯାଇ ନାହିଁ । ରାସ୍ତାଘାଟ ଭଲ ଦିଶୁନାହିଁ । ଆକାଶର କୁଆଁ ତାରାଟା ଖାଲି ଜକ ଜକ ଜଳୁଛି । ଆଉ ଦାଣ୍ଡ ଆଗରେ ଠିଆ ହୋଇଥିବା ବୁଢ଼ା ଶିମିଳି ଗଛଟାରେ ଚଢ଼େଇ କେତେଟା ଚେଁ ଚୁଁ କଟର ମଟର ଲଗାଇଛନ୍ତି । ରଥ ବୁଢ଼ା ଇତି ମଧ୍ୟରେ ନିତ୍ୟକର୍ମ ସାରିଦେଇ ଦାଣ୍ଡପିଣ୍ଡାରେ ବସି ଗଗନଭେଦୀ ସ୍ୱରରେ ଛାଡ଼ିଦେଲେଣି ଶରୀରଭେଦୀ ଭଜନ—'କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଠ; କି ଯେନିଯିବୁ ତୋର ଛୁଟିଲେ ଘଟ ରେ; ଖଟ ପଲଙ୍କେ ମନ ଶେଯାଇ ଶୋଉ, ଖାଲି ଦୁର୍ଗନ୍ଧ ହେବ ଏ ତୋର ଦେହ ରେ—'

ରଥ ବୁଢ଼ାଙ୍କର ଏ ବୈରାଗ୍ୟବ୍ୟଞ୍ଜକ ଗୀତ ଶୁଣି ସୁରେଶର ଶରୀର ଘୃଣାରେ ରୋମାଞ୍ଚିତ ହୋଇଉଠିଲା । ଯୌବନର ତଟଦେଶରେ ମାତ୍ର ପାଦ ଦେଇଛି ସେ । ଆଗରେ ରଙ୍ଗିନ୍ ଜୀବନର ମଧୁର ସ୍ୱପ୍ନ । ଏତେବେଳକୁ କି ଏସବୁ ବୈରାଗ୍ୟ-ବ୍ୟଞ୍ଜକ କବିତା ଭଲ ଲାଗେ ? ସୁରେଶ ମନେ ମନେ ବୁଢ଼ା ଉପରେ

ଖୁବ୍ ଘଟିଗଲା । ମନକୁ ମନ କହି ପକାଇଲା—ବାସ୍ତବିକ୍ କେତେ ସ୍ୱାର୍ଥପର ଏମାନେ । ନିଜର ଆତ୍ମପ୍ରସାଦ ପାଇଁ ବା ପରମାର୍ଥ ଲାଭ ଆଶାରେ ଏପରି ଉତ୍କଟ ଉପଦ୍ରବର ସୃଷ୍ଟି କରୁଛନ୍ତି, ଅଥଚ ତଦ୍ଦ୍ୱାରା ପ୍ରତିବେଶୀଙ୍କ କି ଅସୁବିଧା ହେଉଛି, ତାହା ଟିକିଏ ହେଲେ ଏମାନେ ଭାବୁ ନାହାନ୍ତି ।

ସୁରଭିର ଏ ସ୍ୱଗତୋକ୍ତି ଶୁଣି ପାଖ ଖଟରେ ଶୋଇଥିବା ସୁରଭିର ସ୍ୱାମୀ ସୁରେଶ ପଚାରିଲେ—'ସୁରଭି, ଏତେ ଶୀଘ୍ର ଉଠି ପଡ଼ିଲ ଯେ ? ଦେଖୁନାହଁ ରାସ୍ତାଘାଟ ଏ ପର୍ଯ୍ୟନ୍ତ ସଫା ହୋଇ ଦିଶି ନାହିଁ କୁଆଁ ତାରା ଲୁଚି ନାହିଁ । ସୁରଭି ବିରକ୍ତିଭରା ସ୍ୱରରେ କହିଲା—'ଏମାନେ କ'ଣ ମଣିଷକୁ ଟିକିଏ ଶାନ୍ତିରେ ଶୁଆଇ ଦେଉଛନ୍ତି ?

ସୁରଭି ଗିର୍ଜା, ମସ୍‌ଜିଦ୍ ଓ ମନ୍ଦିରରେ ହେଉଥିବା ଲୋକଦେଖାଣିଆ କଥା କହିଲା । ସୁରେଶ ସହାନୁଭୂତିସୂଚକ ଗଳାରେ କହିଲେ—ହଁ, ଠିକ୍ କହିଲ ସୁରଭି, ଯେଉଁପର୍ଯ୍ୟନ୍ତ ମନୁଷ୍ୟ ସମାଜ ଏସବୁ ଆତ୍ମପ୍ରତାରଣାରୁ ମୁକ୍ତ ନ ପାଇଛି ଓ ସେ ପର୍ଯ୍ୟନ୍ତ ମନୁଷ୍ୟ ପ୍ରତି ମନୁଷ୍ୟର କର୍ତ୍ତବ୍ୟ ବୁଝି ନ ପାରିଛି, ସେ ପର୍ଯ୍ୟନ୍ତ ଜଗତରେ ସୁଖ ଶାନ୍ତି ଆସିପାରିବ ନାହିଁ । ହେଇ ଦେଖୁନା, ମନ୍ଦିର କହ, ମସଜିଦ୍ କହ ବା ଗୀର୍ଜା କହ, ଏସବୁ ତ ସେଇ ଏକ ପରମାତ୍ମା ପରମେଶ୍ୱର ବା ବିଶ୍ୱସ୍ରଷ୍ଟାଙ୍କର ଆରାଧନା ପାଇଁ ସୃଷ୍ଟି । ସମଗ୍ର ମାନବ ସମାଜ ତ ସେଇ ପରମ ପିତାଙ୍କର ସନ୍ତାନ । ଏ ଭାବ ଯଦି ମନୁଷ୍ୟ ମନରେ ଜାଗି ଉଠନ୍ତା, ତେବେ ପୃଥିବୀ ସିନା ସ୍ୱର୍ଗରେ ପରିଣତ ହୋଇପାରନ୍ତା; କିନ୍ତୁ ଦୁନିଆରେ ଦେଖୁଛ କଣ ? ଧର୍ମ ନାମରେ ସାମ୍ପ୍ରଦାୟିକତା, ସଂକୀର୍ଣ୍ଣତା ମନୁଷ୍ୟକୁ ପଶୁସ୍ତରକୁ ଟେକି ଯାଉଛି । ମନୁଷ୍ୟ ଧର୍ମାନ୍ଧ ହେଲେ ନ କରିପାରେ କଣ ? ହେଇ କାଲି ସକାଳେ ପାକିସ୍ଥାନରୁ ପଳାଇ ଆସିବାର ସେଇ ବୁଢ଼ୀଟିକୁ

ଦେଖିଲ ତ ? କଣ ପାଇଁ ଆଜ ସେ ସବଦ୍ୱାର ହୋଇ ଭିକ ମାଗି ବୁଲୁଛି ? ମାନବର ଏଇ ଧର୍ମାନ୍ଧତା ଯୋଗୁଁ ନୁହେଁ କି ? ସେଇ ଧର୍ମାନ୍ଧତାର ମୂଳରେ ମାନବର ସଂକୀର୍ଣ୍ଣ ସ୍ୱାର୍ଥପରତା ନୁହେଁ କାହିଁକି ?

ସୁରଶ୍ମି ଦୀର୍ଘଶ୍ୱାସ ପକାଇ କହିଲା—ହଁ, ଠିକ୍ କହିଲ । ଆମ ଦେଶର ମନୁଷ୍ୟ ଯଦି ମନୁଷ୍ୟ ଭାବରେ ବଞ୍ଚି ରହି ମନୁଷ୍ୟୋଚିତ କାର୍ଯ୍ୟ କରନ୍ତେ, ତେବେ ଦୁନିଆଟା ସ୍ୱର୍ଗରେ ପରିଣତ ହୋଇପାରନ୍ତା ସିନା । ସମାଜର ପ୍ରତ୍ୟେକ ଲୋକ ଯଦି ପରସ୍ପରର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସହଯୋଗ ସୂତ୍ରରେ ଆବଦ୍ଧ ହୁଅନ୍ତେ, ତେବେ ଦୁନିଆରେ ଦୁଃଖ ଦୁର୍ଦ୍ଦଶା ରହନ୍ତା କାହିଁକି ? ସୁରଶ୍ମିର ଆଖି ଛଳ ଛଳ ହୋଇଉଠିଲା । ଜୀବନରେ ବାଇଶଟି ବର୍ଷ ଭୋଗ କରିଛି ସେ । କିନ୍ତୁ ଏଇ ଅଳ୍ପ ସମୟ ମଧ୍ୟରେ ତାର ଭାବପ୍ରବଣ ମନ ଦୁନିଆର ଦୁଃଖ ଦୁର୍ଦ୍ଦଶାରେ ଭକ୍ତ ହୋଇଉଠିଛି । ସେ ଦେଖିଛି ଏଇ ଧର୍ମାନ୍ଧତାର ସଂକୀର୍ଣ୍ଣତା କିପରି ଲକ୍ଷ ଲକ୍ଷ ମହାପ୍ରାଣୀଙ୍କୁ ଆଜ ସବଦ୍ୱାର ପଥର ଭିକାରି କରି ବୁଲାଇଛି, ହଜାର ହଜାର ନିରୀହ ମାନବ ଶିଶୁର କଅଁଳ ଗ୍ରୀବାରେ କ୍ରୂର ରାକ୍ଷସର ଶାଣିତ ଛୁରିକା ଭୁଷିଦେଇ—ଅସଂଖ୍ୟ ତରୁଣୀର ନଗ୍ନ ମାଂସ ଉପରେ ହିଂସ୍ର କ୍ଷୁଧିତ ବ୍ୟାଘ୍ର ପରି ଲମ୍ଫ ଦେଇଉଠିଛି । ଏସବୁ ଦେଖି ତାର ପ୍ରାଣ ହାହାକାର କରିଉଠିଛି । ସେଥିପାଇଁ ସେ ଲୋଡ଼େ ନାହିଁ କୌଣସି ସାମ୍ପ୍ରଦାୟିକତାର ଧାର ଧାରିବାପାଇଁ । ସେ ଲୋଡ଼େ ସହଜ ସରଳ ସହାନୁଭୂତିଭରା ମାନବ ଜୀବନ ।

ଗୋଟିଏ ନୈଷ୍ଠିକ ଖ୍ରୀଷ୍ଟୀୟ ପରିବାରରେ ଜନ୍ମ ହୋଇଥିଲା ସୁରଶ୍ମି । ପିଲାଦିନୁ ସେ ବାପା ମା'ଙ୍କ ସଙ୍ଗରେ ପ୍ରତି ରବିବାରରେ ଯାଉଥିଲା ଗୀର୍ଜାକୁ । ସେଠାରେ ପାଦ୍ରି ସାହେବ ଧର୍ମଗ୍ରନ୍ଥ ପଢ଼ି ପ୍ରାର୍ଥନା କରୁଥିଲେ । ସୁରଶ୍ମି ସମସ୍ତଙ୍କ ସଙ୍ଗରେ ଆଣ୍ଠୁ ମାଡ଼ି ବସି

ପ୍ରାର୍ଥନାରେ ଯୋଗ ଦେଉଥିଲା, ଗୀତ ଗାଉଥିଲା, କିନ୍ତୁ ତାର ଅର୍ଥ କିଛି ବୁଝି ନ ଥିଲା । ବୟସର ବୃଦ୍ଧି ସଙ୍ଗେ ସଙ୍ଗେ ସେ ବୁଝି-ପାରିଲା ଯେ ଯେଉଁମାନେ ଗୀର୍ଜାକୁ ଯା'ନ୍ତି, ସେମାନଙ୍କ ମଧ୍ୟରୁ ଅତି ଅଳ୍ପ ଲୋକ ପ୍ରକୃତ ଧର୍ମରେ ଅନୁପ୍ରାଣିତ ହୋଇ ପ୍ରାର୍ଥନା କରନ୍ତି; କିନ୍ତୁ ଅଧିକାଂଶ ଗୀର୍ଜାକୁ ଯାନ୍ତି ଖାଲି ଗୋଟିଏ ମିଳାମିଶା ବା ଆସଙ୍ଗଲିପ୍ସା ନେଇ ।

ମେଡ଼ିକାଲ କଲେଜରେ ପଢ଼ୁଥିବାବେଳେ ସୁରଶ୍ମିର ପରିଚୟ ହେଲା ତାର ପଢ଼ାସାଥି ସୁରେଶ ସଙ୍ଗରେ । ସୁରେଶ ଥିଲା ନୈଷ୍ଠିକ ହିନ୍ଦୁ ପରିବାରର ସନ୍ତାନ । ଉଭୟଙ୍କର ପରିଚୟ କ୍ରମଶଃ ଅନୁ-ରାଗରେ ପରିଣତ ହେଲା । ଉଭୟେ ପରସ୍ପର ପ୍ରତି ପ୍ରଣୟାସକ୍ତ ହୋଇପଡ଼ିଲେ; କିନ୍ତୁ ଏ ଦୁଇଟି ପ୍ରେମାସକ୍ତ ପ୍ରାଣର ମଝିରେ ଏକ ଅଲଙ୍ଘ୍ୟ ମେଘନାଦ ପ୍ରାଚୀର ସୃଷ୍ଟି କଲା ଧର୍ମଗତ ପାର୍ଥକ୍ୟ ।

ସୁରଶ୍ମିର ପିତାମାତା ଯେତେବେଳେ ସୁରଶ୍ମିର ମନୋଭାବ ଜାଣିଲେ, ସେତେବେଳେ ସହାନୁଭୂତିସୂଚକ କଣ୍ଠରେ କହିଲେ—ମା, ତୋର ପସନ୍ଦରେ ଆମର ଅସମ୍ମତି ନାହିଁ, ତେବେ ସୁରେଶକୁ ଜୀବନ ନେଇ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ହେବ । ପିତାମାତାଙ୍କର ଏ ସର୍ତ୍ତ-ସମ୍ବଳିତ ସମ୍ମତି ସୁରଶ୍ମି କୌଣସିମତେ ଗ୍ରହଣ କରିପାରିଲା ନାହିଁ । ସେ ଯୁକ୍ତି କରି କହିଲା—ତୁମେ ଯେପରି କହୁଛ, ତାଙ୍କୁ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାପାଇଁ, ତାଙ୍କର ପିତାମାତା ସେହିପରି ମୋତେ ହିନ୍ଦୁଧର୍ମ ଗ୍ରହଣ କରିବାପାଇଁ କହିବେ ! କାହିଁକି ? ଧର୍ମ ତ ହେଲା ମନର ଗୋଟାଏ ବିଶ୍ୱାସ । ଯେ ଯେପରି ପାରୁଛି ଭଗବାନଙ୍କୁ ପ୍ରାର୍ଥନା କରିପାରେ । ତା ଉପରେ ଏତେ ଜୋର ଦେବା କଣ ଉଚିତ ?

ସୁରଶ୍ମିର ଏ ଯୁକ୍ତି ସମକ୍ଷରେ ତାର ପିତାମାତା କୌଣସି ଯୁକ୍ତି ଦେଖାଇ ପାରିଲେ ନାହିଁ ସିନା; କିନ୍ତୁ ସେମାନଙ୍କର ଜନ୍ମଗତ

ସଂସ୍କାର ଧର୍ମାନ୍ତର ଗ୍ରହଣ ବିନା ଏ ବିବାହରେ ସମ୍ମତି ଦେଇ ପାରିଲ ନାହିଁ । ସୁରେଶର ପିତାମାତା ଏ ସମ୍ବାଦ ପାଇ ଏକବାରେ ଆତଙ୍କି ଉଠିଲେ । ସେମାନେ ଭାବିଥିଲେ ପୁଅକୁ ବିଭା କରାଇ ଘରକୁ ଆଣିବେ ଗୋଟିଏ ପାଲଙ୍କାର ସୁନାଖଣ୍ଡିଆ ପରି ବୋହୂ । ବୋହୂ ଆସିଲେ ଘର ପୂରିଉଠିବ, ବୁଢ଼ୀଙ୍କ ହାତରୁ କାମ ପାଇଟି ଛଡ଼େଇ ନେବ, ଏମିତି କେତେ କଣ । ତା ପରିବର୍ତ୍ତେ ପୁଅ ଯେତେବେଳେ ପ୍ରସ୍ତାବ କଲା ଯେ କଲେଜ ପଢ଼ୁଆ ଗୋଟାଏ ଖ୍ରୀଷ୍ଟାନ ଝିଅକୁ ବିବାହ କରିବ, ସେତେବେଳେ ସେମାନେ ଆତଙ୍କି ଉଠିଲେ । କିନ୍ତୁ ଗୋଟିଏ ବୋଲି ପୁଅ । କଣ କରିବେ ଆଉ ! ଶେଷରେ କେତେ ସମାଜ ସଂସ୍କାରକ ପ୍ରସ୍ତାବ କଲେ ଯେ କନ୍ୟାକୁ ଶୁଦ୍ଧି କରାଇ ହିନ୍ଦୁ ଧର୍ମକୁ ନେଇ ଆସିଲେ ବିବାହ କରିବାରେ ଆଉ କୌଣସି ଅସୁବିଧା ନ ଥିବ । ସୁରେଶ ମନକୁ କିନ୍ତୁ ଏ କଥା ପାଇଲା ନାହିଁ । ସେ ଭାବିଲା ଏ ସବୁ ଶୁଦ୍ଧି ଫୁଦ୍ଧି କେବଳ ଆତ୍ମ-ପ୍ରବଞ୍ଚନା ଛଡ଼ା ଆଉ କିଛି ନୁହେଁ । ସେ ଯୁକ୍ତି କରି କହିଲା—(ମନୁଷ୍ୟ ସହିତ ମନୁଷ୍ୟର ସମ୍ବନ୍ଧ । ଏହା ପ୍ରକୃତିର ଇଙ୍ଗିତ । ଏଥିରେ ଧର୍ମ ବା ସମ୍ପ୍ରଦାୟର ସ୍ଥାନ ନାହିଁ) ।

ବହୁ ବାଧାବିଘ୍ନ ସତ୍ତ୍ୱେ ଉଭୟ ସମ୍ପ୍ରଦାୟର ଧର୍ମଧ୍ୱଜାମାନଙ୍କର ଆପତ୍ତି ସତ୍ତ୍ୱେ ପ୍ରକୃତି ହିଁ ଜିଣିଲା । ସୁରେଶ ଓ ସୁରଭିଙ୍କ ମଧ୍ୟରେ ଗୋଟିଏ ମାତ୍ର ଫୁଲମାଲାର ବିନିମୟରେ ବିବାହ ହୋଇଗଲା । ସେତେବେଳକୁ ସୁରେଶ ଓ ସୁରଭି ଦୁଇଜଣଯାକ ମେଡ଼ିକେଲ ଗ୍ରାଜୁଏଟ ହୋଇ ସାରିଥିଲେ । ସେମାନେ ଚାଲି ଆସିଥିଲେ ଏ ସୁଦୂର ସ୍ଥାନକୁ ଆପଣାର କର୍ମଜୀବନ କଟାଇବା ପାଇଁ । —

ସେମାନେ ଆଜ ହିନ୍ଦୁ ନୁହନ୍ତି କି ଖ୍ରୀଷ୍ଟାନ ନୁହନ୍ତି । ଯୋଡ଼ିଏ ଉଚ୍ଛ୍ୱଳିତ ମାନବ ହୃଦୟର ମିଳନରେ କୌଣସି ସାମ୍ପ୍ରଦାୟିକ

ବିଭେଦର ସ୍ଥାନ ନାହିଁ । ସେମାନେ ସେବାଭାବକୁ ଆପଣାର ଧର୍ମ ରୂପେ ଗ୍ରହଣ କରିଛନ୍ତି । ଉଭୟେ ମିଳି ସ୍ଥାପନ କରିଛନ୍ତି ଏକ ଆଦର୍ଶ ସେବାସଦନ ଯେଉଁଠାରେ କି ଜାତି-ଧର୍ମ-ବର୍ଣ୍ଣ-ସମ୍ପ୍ରଦାୟ-ନିର୍ବିଶେଷରେ ଆର୍ତ୍ତ ପୀଡ଼ିତର ଚିକିତ୍ସା କରାହୁଏ ।

ଆଦର୍ଶ ସେବାସଦନର ସୁନାମ ନାନା ସ୍ଥାନରେ ପରିବ୍ୟାପ୍ତ ହେବାକୁ ଲଗିଲା । କାରଣ ସେଠାରେ ଯେଉଁ ଚିକିତ୍ସା କରାଯାଏ ତାହା ମାନବିକତା ଓ ଆନ୍ତରିକତା ଉପରେ ପ୍ରତିଷ୍ଠିତ ।

ସୁରେଶ ଦିନେ ଖବର ପାଇଲା ଯେ ତାର ମା କଠିନ ରୋଗା-କ୍ରାନ୍ତ ହୋଇପଡ଼ିଛନ୍ତି । ସେ କାଳବିଳମ୍ବ ନ କରି ଗାଁକୁ ଦୌଡ଼ିଯାଇ ଅଜ୍ଞାନ ଅବସ୍ଥାରେ ମା'ଙ୍କୁ ଚିକିତ୍ସା ପାଇଁ ନେଇ ଆସିଲା ସେବା ସଦନକୁ । ସୁରେଶର ଚିକିତ୍ସା ଓ ସୁରକ୍ଷାର ସେବା ଫଳରେ ବୃଦ୍ଧା କ୍ରମଶଃ ରୋଗମୁକ୍ତ ହୋଇଉଠିଲେ । ଯେତେବେଳେ ତାଙ୍କର ଜ୍ଞାନର ସଞ୍ଚାର ହେଲା ସେତେବେଳେ ସେ ଦେଖିଲେ ଯେ ଜଣେ ନାରୀ ଅକ୍ଳାନ୍ତ ଭାବରେ ତାଙ୍କର ସେବା କରୁଛନ୍ତି । ବୃଦ୍ଧା ପ୍ରଥମେ କିଛି ବୁଝିପାରି ନ ଥିଲେ । ତା'ପରେ ଯେତେବେଳେ ସେ ସୁରେଶଠାରୁ ବୁଝିଲେ ଯେ ଶୁଶ୍ରୂଷାକାରିଣୀ ତାଙ୍କର ପୁତ୍ରବଧୂ, ସେତେବେଳେ, ଜାଗିଉଠିଲା ତାର ବଦଳରେ ମାତୃହୃଦୟର ସ୍ୱାଭାବିକ ବାତ୍ସଲ୍ୟ । ସେ ସୁରକ୍ଷାକୁ କୁଣ୍ଢାଇପକାଇ କହିଲେ – ମା, ତୋ ପରି ଲକ୍ଷ୍ମୀକୁ ପାଇ ସୁଦ୍ଧା ମୁଁ ଏପର୍ଯ୍ୟନ୍ତ କାଙ୍ଗାଳଣୀ ହୋଇ ବସିଥିଲି ।

ତାପରେ ସୁରେଶକୁ ପାଖକୁ ଡାକି କହିଲେ—ବାପା, ମୋର ଭ୍ରମ ଆଜି ତୁଟିଯାଇଛି । ମୁଁ ଆଶୀର୍ବାଦ କରୁଛି, ଭଗବାନ ତୁମ୍ଭମାନଙ୍କର ମଙ୍ଗଳ କରନ୍ତୁ ।

———

After the second world year

# ସ୍ୱପ୍ନ ମୁହୂର୍ତ୍ତର ପତର

[ ଶ୍ରୀ ପ୍ରାଣବନ୍ଧୁ କର ]

ଅପର୍ତ୍ତି କ୍ଷେତ୍ରରେ ହଳ କରୁଚି—ତାର ଚିକ୍କଣା କଳା ବଳଦ ଦେହରୁ ଝାଳ ପାଣି ଭଳି ବୋହି ଯାଉଚି—ହଳ କରୁ କରୁ ଅପର୍ତ୍ତି କେତେ କଣ ଭାବି ଯାଉଚି—ଭାବୁ ଭାବୁ ଲଙ୍ଗଳ କଣ୍ଟି ଉପରେ ତା ହାତ କୋହଳ ହୋଇଗଲେ ବଳଦ ଦି'ଟା ଧିମେଇ ଚାଲୁଛନ୍ତି—ଅପର୍ତ୍ତି ଡାହାଣ ହାତରେ ପାଞ୍ଚଣଟିରେ ବଳଦ ଦି'ଟାକୁ ପିଟୁ ପିଟୁ କହୁଉଠେ—'ରାଣ୍ଡର ବଅଳ—ଚଲୁ ନାହାନ୍ତି ମୋଟେ—'

ବଳଦ ଦି'ଟା ଟିକିଏ ଜୋରରେ ଚାଲିବାକୁ ଆରମ୍ଭ କଲେ ଅପର୍ତ୍ତି ପୁଣି ତା ଭାବନା ରାଜ୍ୟକୁ ଫେରିଯାଏ—ତାର ଭାବିବାକୁ ଆଜି ଅନେକ କଥା—ଆଠ-ନ' ବର୍ଷର ଘଟଣା—ଛବି ଭଳି ସେଗୁଡ଼ା ତା ଆଖି ଆଗରେ ଭାସିଯାଉଚି—କାଲି ଭଳି ମନେ ହଉଚି ସେସବୁ କଥା—ଅପର୍ତ୍ତିକୁ ଆଶ୍ଚର୍ଯ୍ୟ ଲାଗୁଛି—ଏଇ ଆଠ ନଅଟା ବର୍ଷ ଆଗରୁ ସବୁ ଯେମିତି ଭଲ ଥିଲା—ଲୋକେ ଦୁଃଖେ ସୁଖେ ଶାଗ୍ ପେଜ ଖାଇ ଆରାମରେ ଚଳିଯାଉଥିଲେ—

କୁଆଡ଼ୁ ଅସିଲା ଏ ହିନମାନଆ ଲଢ଼େଇ—ସବୁ ବଦଳେଇ ଦେଇଗଲା—ଇଂରାଜୀ ସରକାରର ସିଆଡ଼େ କୋଉ ଜରମାନୀ ନା କଅଣ ତା ସାଙ୍ଗରେ ଯୁଦ୍ଧ ଲାଗିଲା—ଆମର କଅଣ ଗଲା ସେଇଠୁଁ ?

କହୁଥିଲେ କିଏ ନା --ଜାପାନୀ ମାଡ଼ି ଆସୁଛି—ଆମ ଦେଶକୁ ନେଇଯିବ—ଲଢ଼େଇକୁ ବାହାରିପଡ଼—

କିଏ ନା—ଜାପାନୀ ନେଲେ କେତେ—ଇଂରେଜୀ ନେଲେ କେତେ । ଆମର କୋଉ ଦୁଃଖ ଯାଉଛି—ଯିଏ ଆମ ଉପରେ ରଜା ହେବ ସିଏ ତା ଦେଶକୁ ସବୁ ଲୁଟ୍ କରି ବୋହିନେବ—

ଏବେ ଯୁଦ୍ଧ ସରିଲାଣି ତିନି କି ଚାରି ବର୍ଷ ହେଲା—ଜିନିଷ-ପତ୍ରର ଦରଦାମ କମିନା କଅଣ ନା ଆହୁରି ବଢ଼ୁଚି ।

ଅପର୍ତ୍ତିକୁ ବଡ଼ ଆଶ୍ଚର୍ଯ୍ୟ ଲାଗେ—ଯୁଦ୍ଧ ହଉଚି କୋଉଁଠି, ଜିନିଷ ମହଙ୍ଗା ହଉଚି କୋଉଁଠି—

ଆଗ ଆଗ ଅପର୍ତ୍ତି ଆଉ ଅପର୍ତ୍ତିଭଳି ଲକ୍ଷ ଲକ୍ଷ ଚାଷୀ ଇଯ୍ୟାର ଭେଦ ପାଇଲେନି—ଲଢ଼େଇ ହବାର କେତେ ମାସ ପରେ ଯେତେବେଳେ ଉଡ଼ାଜାହାଜଗୁଡ଼ାକ ଅପର୍ତ୍ତି ହଳ କଲାବେଳେ ତା ମୁଣ୍ଡ ଉପର ଦେଇ ଉଡ଼ିଯାନ୍ତି ଘଁ ଘଁ କରି, ସେ ହଳ ଛାଡ଼ିଦେଇ ହିଡ଼ ପାଖ ବୁଦାମୂଳେ ଲୁଚିଯାଇ ଭୟାର୍ତ୍ତ ଆଖିରେ ସେଗୁଡ଼ାକ ଆଡ଼େ ଚାହିଁ ରହେ—ବଳଦ ଦି'ଟା ବି କାନ ଟେକିଟି ଅଟକିଁଆ ଅମୁହାଁ ଦୌଡ଼ନ୍ତି ହଳ ଜୁଆଳି ସାଥିରେ—

କିଛିଦିନ ପରେ ତା ଭୟ କଟିଗଲା—ଏକସାଙ୍ଗେ ଆଠ ଦଶଟା ଉଡ଼ାଜାହାଜ ତା କ୍ଷେତ ଉପର ଦେଇ ଉଡ଼ିଗଲାବେଳେ ତାକୁ ଭାରି ଖୁସି ଲାଗେ ତାର ମନେ ହୁଏ, ଉଡ଼ାଜାହାଜଗୁଡ଼ାକ ତାଙ୍କ ଗାଁ ଉପର ଦେଇ ଯେତେବେଳେ ଉଡ଼ିଯାଉଛନ୍ତି, ନିଶ୍ଚୟ ଏଇ ପାଖରେ କେଉଁଠି ଯୁଦ୍ଧ ଲାଗିଚି—ଆଉ ସେ ଯୁଦ୍ଧରେ ତାଙ୍କ ଗାଁ, ସେ ସମସ୍ତେ ନିଶ୍ଚିତ ଭାଗ ନେଇଛନ୍ତି ।

ଯୁଦ୍ଧର ଏଇ କାଳ୍ପନିକ ଅନୁଭୂତି ତା ମନରେ ଖୁବ୍ ଉତ୍ତେଜନା ଆଉ ଆନନ୍ଦ ଖେଳେଇ ଦେଇଚି—

କ୍ରମେ ସେ ଉତ୍ତେଜନା ତାର ସ୍ୱାଭାବିକ ଗତିରେ କମି ଆସିଛି—ଦିନେ ନୁହେଁ, ଅଧେ ନୁହେଁ, ବର୍ଷ ବର୍ଷ ଧରି ଯୁଦ୍ଧ ଲାଗିଛି କିନ୍ତୁ ଯୁଦ୍ଧର ଛବି ଅପର୍ତ୍ତି ଦେଖିବାକୁ ପାଉନି—କେତେ ଦିନ ବା ଆଉ ସେ ଉତ୍ତେଜନା ରହନ୍ତା !

ଲଢ଼େଇ ଯୋଉଠି ଲାଗୁ—ଅପର୍ତ୍ତି ମନରେ ଆସିଛି ବିଷାଦ—ସବୁ ଜିନିଷର ଦାମ୍ ବଢ଼ିଗଲା—କିରାସିନି, ଚାଉଳ, ଲୁଗା ତ ଆଉ ମିଳିବାକୁ ନାହିଁ—ଚାଉଳ ଟଙ୍କାକୁ ତି ସେର—ସେ ବି ଘୋଡ଼ାଦାନା—ସେଥିରେ ବି କଳାପୋକେଇ—ଡିବିରି ଖଣ୍ଡିକରେ ଧୂଳି ଆଙ୍ଗୁଠି ବହଳରେ ଜମିଗଲାଣି—ଟୋପେ କିରାସିନି ବି ତାକୁ ମିଳୁନି—ରାତି ଅନ୍ଧାରରେ ଯିବା ଆସିବା କରିବାକୁ ତ ନିଜର କିଛି କଷ୍ଟ ହେଉନି—କିନ୍ତୁ ତା ବୁଢ଼ୀମା—ଦିନବେଳେ ବି ଆଖିକି ଭଲ ଦିଶୁନି—ସନ୍ଧ୍ୟା ହେଲା ପରେ କୁଆଡ଼େ ଟିକିଏ ଗୋଡ଼ ବଢ଼େଇଲେ କଚଡ଼ା ଖାଏ । ଅପର୍ତ୍ତି କେତେ ଥର ବୁଢ଼ୀମାକୁ ଉଠେଇ ଧରିଛି—ଦେହର ପୀଡ଼ା ଖାଇବାକୁ ତେଲ ମାଲିସ କରିଦେଇଛି—

ତା ବୁଢ଼ୀମାର ଏଇ ଦୁଃଖ ସେ ଆଉ ସହିପାରେନି—ଧନୀ ସାହୁ ପାଖରେ ଟୋପେ କିରାସିନିପାଇଁ କେତେ ନେହୁରା ହୁଏ—କିନ୍ତୁ ପାଏନି—

ଦିନେ ଅନ୍ଧାରରେ ଯେମିତି ଗୋଡ଼ ଖସି ତା ବୁଢ଼ୀମା ଆଖି ବୁଜିଲା—

ଅପର୍ତ୍ତିର ଶାନ୍ତ ନିରୀହ ମନ ବିଦ୍ରୋହ କରିଉଠିଲା—ଅବାରିତ ଅଶ୍ରୁ ବର୍ଷଣ କରି ସେ ତାର ଉଦ୍‌ବେଳିତ ଚିତ୍ତକୁ ଲଘୁ କରିବାକୁ ଚେଷ୍ଟା କଲା—

ଅପର୍ତ୍ତିର ଭାରି କ୍ଷୋଭ—ସେ ଯେଉଁ ଭୂଇଁରେ ଫି ବର୍ଷ ସୁନା ଫଳାଏ, ସେ ଭୂଇଁର ଫସଲ ଖାଏ ତା ସାଉକାର—ତା ଉପାସିଆ ପେଟକୁ କିଛି ଯୋଗାଏନି ।

ସମସ୍ତେ କହନ୍ତି ଅପର୍ତ୍ତିକୁ 'ବାହା ହ'—

ଅପର୍ତ୍ତି ବି ଭାବୁଥିଲା ସେଇଆ । ବୁଢ଼ୀ ମା ଆଖି ବୁଜିଲାଦିନୁ ଗଣ୍ଡେ ଫୁଟେଇ ଦେବାକୁ କେହି ନାହାନ୍ତି

କିନ୍ତୁ ଯୁଦ୍ଧବେଳେ ଚଳପାଣ୍ଡି ମହଙ୍ଗାରେ ତାର ସାହସ ହେଲାନି— କେହି କହିଲେ ଉତ୍ତର ଦିଏ—ଲଡ଼େଇଟା ସରିଯାଉ— ନିଜେ ଖାଇବାକୁ ପାଉନି— ଘରେ ହାଣ୍ଡି ବାନ୍ଧିବ ?

ମୁହଁ ଜୋରରେ କହୁଥିଲେ ଏମିତି ମାଡ଼ିନେଲା ପିନା—କିନ୍ତୁ ମନର ଗୋଟିଏ ନିଭୃତ କୋଣରେ ଗୁରେଇର ଛବି ମଝିରେ ମଝିରେ ଝଲସିଉଠି ତାକୁ ଅସ୍ଥିର କରିପକାଏ ।

ସବୁଦିନେ ବଡ଼ ଭୋରରୁ ହଳବଳଦ ଧରି ଅପର୍ତ୍ତି ବିଲକୁ ଗଲାବେଳେ ଗୁରେଇ "ସାନ ସାଆନ୍ତ"ଙ୍କ ପୋଖରୀରୁ ଗାଧୋଇ ଫେରୁଥାଏ— ମୁଣ୍ଡରେ ଟୋକେଇ ପାଣିଭର୍ତ୍ତି ଗରା— କ୍ଷୀଣ କଟି ଓ ବାଁ ହାତର ବେଷ୍ଟନୀ ଭିତରେ ଆଉ ଗୋଟିଏ ଗରା ଧରି ଗୁରେଇ ତା ପାଖ ଦେଇ ଚାଲିଯାଏ । ଅପର୍ତ୍ତିର ଅବାଧ ଆଖି ଗୁରେଇର ସିକ୍ତ ବସନ ଭେଦ କରିଯାଏ —ଅଣ୍ଟା ପାଖ ଗରାରୁ ପାଣି ଚହଲି ଗୁରେଇର ଲୁଗା ଦେହରେ ଜଡ଼ିଯାଇଥାଏ—ଅପର୍ତ୍ତି ମୁହଁ ଫେରେଇ ନିଏ—

କେତେ ଥର ସେ ଗୁରେଇ ପାଖରେ ଧରା ପଡ଼ିଯାଇଛି— କିନ୍ତୁ ଗୁରେଇ ଭର୍ତ୍ସନା କରିବା ବଦଳରେ ତାର ସ୍ମିତ ହସଦ୍ୱାରା ତାକୁ ବରଂ ଉତ୍ସାହିତ କରିଛି—

ଅପର୍ତ୍ତି ଆଉ ବେଶୀ ଦିନ ଏକା ଚଳିପାରିଲା ନାହିଁ— ଦିନେ ଗୁରେଇ ଗାଧୋଇ ଫେରିଲାବେଳେ ସେ ତାକୁ ଅଟକେଇ ପଚାରିଲା—

ଗୁରେଇ କୌଣସି ଆପତ୍ତି ନ କରି ହଁ ଭରିଲା···ଘମାଘୋଟ ଯୁଦ୍ଧବେଳେ ଅପର୍ତ୍ତି ବାହାହେଲା—ଯେତେବେଳେ ପେଟକୁ ଦାନା କ ପିଠିକୁ କନା ମିଳୁନ—ଜାପାନ ମାଡ଼ ଆସିବ ସିଆଡୁ -

ବାହାଘରର ପ୍ରଥମ ନିଶା କଟିଯାଏ - ତାଙ୍କର ଦରିଦ୍ର ସଂସାରର ଅଭାବଗୁଡ଼ିକ କ୍ରମେ ସ୍ପଷ୍ଟତର ହୋଇଉଠେ । କିଛିଦିନ ପରେ ଅପର୍ତ୍ତି ଦେଖିଲା ଗୁରେଇର ଖଦଡ଼ ଦ'ଖଣ୍ଡି କେତେଠେଇଁ ଚିରି ଚିରି ଗଲାଣି—କେତେ ଚେଷ୍ଟାକରି ମଧ୍ୟ ଅପର୍ତ୍ତି ଗୁରେଇ ପେଇଁ ଖଣ୍ଡେ ଖଦଡ଼ କିଣିପାରେନି—

ଯୁଦ୍ଧ ବଜାରରେ କଳାପୋତେଇ କରି ଧନ ସାହୁ କୋଠା ବାଡେଇବାକୁ ବସିଲାଣି—ପଇସା ଯାଚି ମଧ୍ୟ ଧନ ସାହୁଠୁ ସେ ଖଦଡ଼ ଖଣ୍ଡେ ପାଇପାରିଲା ନାହିଁ । କେତେ ନେହୁରା ହେଲେ ବି— କଳାପୋତେଇ ଦବାକୁ ତାର ବା ପଇସା କାହିଁ ?

ଗୁରେଇ ଚିରା ଶାଢୀରେ ତା ପୂର୍ଣ୍ଣ ଅବୟବରେ ଲଜ୍ଜା ଆଉ ଢାଙ୍କି ପାରୁନି—ନିଜେ ଅପର୍ତ୍ତି ବି ଗୁହିଁ ପାରୁନି ଗୁରେଇ ଆଡ଼େ—

ବେଳେ ବେଳେ ଅପର୍ତ୍ତି ମନରେ ଭାରି ରାଗ ହୁଏ । ଭାବେ— ଧନ ସାହୁ ଦୋକାନରେ ନିଆଁ ଲଗାଇଦେବ - କିନ୍ତୁ କଅଣ ଲାଭ ପୁଣି ହବଯାଏ—

ଦିନେ ଗାଁର ସମସ୍ତେ ଖବର ପାଇଲେ ସରକାର ଜାଡିଛନ୍ତି— ସରକାରୀ କର୍ମଚାରୀମାନେ ଗାଁ ଗାଁ ବୁଲି ଖବରଟା ଶୁଣେଇ ଦେଇଗଲେ—

ପ୍ରତ୍ୟେକ ଲୋକର ଲଜ୍ଜା ଘୋଡ଼େଇବା ପାଇଁ ସରକାର ଗାଁ ଗାଁ ରେ ଲୁଗା ଦୋକାନ ଖୋଲିବେ—ଟିକେଟ ପଦ୍ଧତିରେ ଲୁଗା ବଣ୍ଟାଯିବ—

ସମସ୍ତେ ଶୁଣି ଖୁସି ହେଲେ - ଅପର୍ତ୍ତି ଖୁସି ହୋଇ ଭାବିଲା, ଏଥର ନିଶ୍ଚେ ତା ଦୁଃଖ ଯିବ—ଲୁଗାପଟା ଶସ୍ତା ହବ - ତା

ଗୁଡ଼େଇ ଆଉ ସତର ଗଣ୍ଠି ଖଦ ପିନ୍ଧିବନି ଗୁଡ଼େଇର ଖଦରେ ନଖ ବନ୍ଧନରେ ମଇଳା ଜମିଲାଣି କିନ୍ତୁ କିଏ କାଟିଦବ— ସଫା କରିବାକୁ ବସିଲେ ତ ଖଦଟି ପୁର୍ ପୁର୍ ହୋଇ ଚିରିଯିବ—

ସରକାର ଜାଣିଛନ୍ତି ବୋଲି ଗରିବଗୁଡ଼ିକଙ୍କୁ ଲୁଗା ବଣ୍ଟା ହେବାପାଇଁ ଡ଼େଙ୍ଗୁରା ଦିଆହେଲା— ଅପର୍ତ୍ତି ପଚାରିଲା ଗୁଡ଼େଇକୁ—

ଗୁଡ଼େଇ ଲୋ ଯିବୁ ? ଲୁଗା ବଣ୍ଟା ହଉଚି—ଏତେ ଦୁଃଖରେ ବି ଅପର୍ତ୍ତି ଉପରେ ଟିକିଏ ହେଲେ ବିରକ୍ତ ନ ହୋଇ ଗୁଡ଼େଇ କହିଲା—ମୁଁ କେମିତି ଯିବି ମ, ଏଇ ଛିଣ୍ଡା ଲୁଗା ପିନ୍ଧି ? ମୁଣ୍ଡ ଛିଡ଼ପଡ଼ିବ ଏତେ ଲୋକଙ୍କ ଭିତରେ—

ଅପର୍ତ୍ତି ବୁଝିଲା—ତେଣୁ ସେ ଏକା ଗଲା—ଖଣ୍ଡିଏ ଷ୍ଟାଣ୍ଡାର୍ଡ ଧୋତି ମିଳିଲା ତାକୁ—

ଫେରିଆସି ଗୁଡ଼େଇକୁ ଧୋତିଟି ଦେଇ କହିଲା— ଯାଇଥିଲେ ଖଣ୍ଡେ ଲୁଗା ପାଇଥାନ୍ତୁ—ନେ, ପିନ୍ଧ୍ ଏଇଟାକୁ— ମୋର ଚଳିଯିବ ।

ଯୁଦ୍ଧ ସରିଗଲା—ସାଉକାର କ୍ଷେତରେ ହଳ କଲାବେଳେ ଅପର୍ତ୍ତି ଆଉ ଜଙ୍ଗାଜାହାଜର ଘଁ ଘଁ ଶବ୍ଦ ଶୁଣିବାକୁ ପାଇଲା ନାହିଁ— ଦିନ ଗଡ଼ି ଚାଲିଲା—କିନ୍ତୁ ଚାଉଳ, ଲୁଗା, କିରାସିନି ଦର ଆଉ କମିଲା ନାହିଁ ।

ଅନାହାର, ଅର୍ଦ୍ଧାହାର ଓ ଅଯତ୍ନରେ ଗୁଡ଼େଇର ସୁନ୍ଦର-ପଣିଆ କମି ଆସିଲାଣି ।

ଦେଢ଼ବର୍ଷ ଆଗରୁ ଯେଉଁ ଟିଣିପି ପିନ୍ଧା ଖଦ ଖଣ୍ଡିକ ଅପର୍ତ୍ତି ଦେଇଥିଲା ଗୁଡ଼େଇକୁ, ସେ ଖଣ୍ଡ ବି ଚିରି ଆସିଲାଣି ।

କେତେଥରେ ଫେରେ ସିଏ ପଇସା ଧରି ଯାଇ ଧନ ସାହୁ ଦୋକାନ ମୁହଁରେ ଠିଆହେଲା—

ଧନ ସାହୁ କହିଲା—ଯା, ଯା ଲୁଗା ନାହିଁ । ତିନିଟା ଟଙ୍କାରେ ଶାଢ଼ୀ କିଣିବ !

ଅପର୍ତ୍ତି ନମ୍ର ସ୍ୱରରେ କହିଲା—ସାହୁଏ, କେତେ ଥର ଫେରେଇ ଦେଲଣି—ଘରେ ସିଆଡ଼େ ଉଧୁଳଙ୍ଗଳା—ପାଣି-ମାଠିଏ ଆଣିବାକୁ ପଦାକୁ ବାହାରିପାରୁ ନାହାନ୍ତି ।

ଧନ ସାହୁ ଓଲଟି ଥଟ୍ଟାକରି କହିଲା—ପଠେଇ ଦଉନୁ କାହା ପାଖକୁ—ସେ ଲୁଗା ପିନ୍ଧେଇ ଛାଡ଼ିଦେବ—

ଅପର୍ତ୍ତିର ଶିରା ପ୍ରଶିରାଗୁଡ଼ାକ ରାଗରେ ଫୁଲିଉଠିଲା—ଆଖି ଯୋଡ଼ାକ ଜଳିଉଠିଲା—

ଏଇ ଧନ ସାହୁ—ଯୁଦ୍ଧ ଆଗରୁ ବ୍ରାହ୍ମଣ ଯାଇ, କେଉଟ ଯାଇ, ସାଇକି ସାଇ, ଘର ଘର ବୁଲି ପାଟଫୁଲ, କୁଙ୍କୁ, ସୂତା, ଗନ୍ଧକର୍ପୂର ବିକୁଥିଲା । ତାର ଫେର୍ ମୁହଁ ଉପରକୁ ହେଲାଣି ! ଦାନ୍ତ ଚିପି ରାଗ ବନ୍ଦ କରି ଫେରି ଆସିଲା ଅପର୍ତ୍ତି—

ଗାଁ ଗାଁ ବୁଲି ଦେଶସେବକମାନେ ପ୍ରଚାର କଲେ—ସୂତା-କାଟି ଲୁଗା ଅଭାବ ଦୂର କର—ନିଜ ଗୋଡ଼ରେ ନିଜେ ଠିଆ ହୁଅ—ତା ନ ହେଲେ ଦାସତ୍ୱର ବେଡ଼ିରୁ ମୁକ୍ତି ଲାଭ କରିପାରିବ ନାହିଁ—

କେଉଁଠେ କେଉଁଠେ କୃଷୀ ମୂଲିଆ ସଭା ହେଲା । କିଏ କହିଲା—ଜମିଦାରକୁ କର ଦିଅନି'—କିଏ କହିଲା 'ଧର୍ମଘଟ କର' ।

ଅପର୍ତ୍ତି ସବୁ ଶୁଣେ—କିନ୍ତୁ କେହି ତାର ଖାଦ୍ୟ ପୋଷାକର କାର୍ଯ୍ୟକାରୀ ସମାଧାନର ପନ୍ଥା ଦେଖାନ୍ତି ନାହିଁ । ବିଭିନ୍ନ ରାଜନୈତିକ

ଦଳର ବିଭିନ୍ନ ମତବାଦ ପ୍ରସ୍ତୁତ ହୁଏ—ଅପାତ୍ରୀ ଅଳ୍ପଜ୍ଞାନୀ ଅପର୍ତ୍ତୀ ମୁଣ୍ଡରେ ସେ ସବୁ ଢୁକେନା ।

ଗୁରେଇର କଷ୍ଟ ଉଲଗ୍ନ ଦେହ ତାକୁ ଅହରହ ପୀଡ଼ାଦିଏ - ଲ୍‌ଟେଇ ରଖେ —ସନ୍ଧ୍ୟା ହେଲେ ସେ ଯାଏ ଘଡ଼ିଆକୁ କମ୍ପା କୂଅରୁ ପାଣି ଆଣିବାକୁ ଅତି ସନ୍ତର୍ପଣରେ—

ଅପର୍ତ୍ତୀ କଲ ଭଲ ତା ସାଉକାର ପେଇଁ ହାଲକରେ— ପରସ୍ପରରେ ଅପର୍ତ୍ତୀ ଶୁଣିପାରେ ତା ଦେଶ ସ୍ୱାଧୀନ ହେବ - କିଛି ବୁଝିପାରେନା—

ମାତ୍ର ତାକୁ ପସନ୍ଦ କେବଳ ଏତିକି ବୁଝେ—ଆଉ କେଇଟା ଦିନ ଗଲେ ଗୋରା ଲୋକେ ଆମ ଦେଶରେ ଆଉ ରହିବେନି । ଆମରି ଦେଶ ଲୋକେ ଆମ ରାଇଜ ଚଳେଇବେ । କଳାପୋଟେଇ ଗୋରବଜାର ବନ୍ଦ ହୋଇଯିବ—ଲୁଗା, କିରାସିନି, ଚାଉଳ ଶସ୍ତା ହବ - ଲାଞ୍ଚ ମିଛ ଆଉ ଦେଶରେ ରହିବନି -

ଅପର୍ତ୍ତୀ ଭାରି ଖୁସି ହୋଇଯାଏ ।

ଆନନ୍ଦରେ ଗୁରେଇକୁ ଯାଇ କହେ—ଗୁରେଇ ଲୋ, ଆମ ଦୁଃଖ ଏଇଥର ଯିବ—ଆମ ଲୋକମାନେ ଆମକୁ ଚଳେଇବେ ଏଥର—ଗୋରା ଲୋକମାନେ କୁଆଡ଼େ ତାଙ୍କ ନିଜ ଦେଶକୁ ଗଣ୍ଠିଲି ବୁଜୁଳା ବାନ୍ଧି ପଳେଇବେ···

ଅପର୍ତ୍ତୀ ଉତ୍ସୁକ ହୋଇ ଗୁଣିହୁଏ ସେଇ ଦିନକୁ—

ସତଚାଳିଶ ସାଲ ଅଗଷ୍ଟ ପନ୍ଦର—ଉତ୍ସବ ହୁଏ—ଘରେ ଘରେ ତିରଙ୍ଗୀ ଚକ୍ରଚିହ୍ନିତ ପତାକା ଉଡ଼େ ସ୍ୱାଧୀନ ଜୀବନର ଉଦ୍ଦାମ ପ୍ରବାହର ସଙ୍କେତ ଦେଇ—ସାମ୍ୟ ମୈତ୍ରୀର ସଙ୍କେତ ଦେଇ—

ଅପର୍ତ୍ତି ହୃଦୟରେ ବି ଖଣ୍ଡିଏ ତ୍ରିରଙ୍ଗୀ ପତାକା ଉଡ଼େ । ଅପର୍ତ୍ତି ହସି ହସି ସେଇ ପତାକା ଅଡ଼େ ଚାହିଁ ରହେ ଅପଲକ ଆଖିରେ—

ସେ ଯେପରି ଦେଖିପାରେ - ସେଇ ପତାକା ଭିତରେ ତା ଗୁରୁଭାଇ ଭଲ ଭଲ ଖଦଡ଼ମାନ ପିନ୍ଧି ହସି ହସି ତା ଆଡ଼େ ଚାହିଁଛି··· ପୁଞ୍ଜିପତି ଧନ ସାହୁ ହାତରେ ପଡ଼ିଛି ବେଡ଼ି, କଳାପୋତେଇ କରି ଧରାପଡ଼ିବାକୁ—

ଧନ ଗଡ଼ ଗଲେ ଗାନ୍ଧି ବୁଢ଼ାକୁ ଦେଶ ଭୁଲିଯାଏ—ତାର ମହତ୍ ଆଦର୍ଶକୁ ବି ଭୁଲିଯାଏ । ତିରଙ୍ଗୀ ପତାକାଟିର କରୁ ରଙ୍ଗ ବାୟୁ ସଙ୍ଘାତରେ ଫିକା ପଡ଼ିଆସେ—

ଅପର୍ତ୍ତି ସ୍ପଷ୍ଟ ଭାବରେ ବୁଝିପାରେନ ଦେଶର କି ପରିବର୍ତ୍ତନ ହେଲା—ଗାଁଟା ତ ଠିକ୍ ଯିମିତି ଥିଲା ସେମିତି ଅଛି—

ତା ଗୁରୁଭାଇ ତ ସେମିତି ଛିଣ୍ଡାକନା ପିନ୍ଧୁଛି—କାନସିର କଇଁବେଣ୍ଟ ସିଝା ଖାଉଛି ପରିବର୍ତ୍ତନ ତେବେ ହେଲା କେଉଁଠି ?

ହଳ ଗୁଡ଼ାଦେଇ ଅପର୍ତ୍ତି ଆଣ୍ଠୁ ଉପରେ କହୁଣୀ ରଖି ହିଡ଼ ଉପରେ ବସି ଭାବେ କନ୍ଟୁ କାହିଁକି ? ପରିବର୍ତ୍ତନ ତ କେଉଁଠି ଦେଖେନ ? ଧନ ସାହୁର କଳାବଜାର ତ ଠିକ୍ ସେମିତି ଚାଲିଛି—ତାଙ୍କ ଗାଁ ପୋଖରୀଗୁଡ଼ାକରେ ତ ଦଳ ସେମିତି ଭର୍ତ୍ତି ହୋଇଛି—ମେଲେରିଆ, ହଇଜାରେ ଲୋକ ସେମିତି କି ମରୁଛନ୍ତି—ଗୁରୁଭାଇର ଛିଣ୍ଡା ଖଣ୍ଡିଟା ତ ସେମିତି ଦେଖାଯାଉଛି ।

କେବଳ ଗୋଟାଏ ବିଷୟରେ ଅପର୍ତ୍ତି ପରିବର୍ତ୍ତନ ଲକ୍ଷ୍ୟ କରେ—ଦେଶ ସ୍ୱାଧୀନ ହେବା ଆଗରୁ ଯେଉଁ ଲୋକମାନେ ଏଇ ଗାଁକୁ ମାସ ଭିତରେ ଅନ୍ତତଃ ଦି' ଥର ଆସି ସଭା ସମିତି କରି

ସେମାନଙ୍କୁ ସ୍ୱପ୍ନରାଜ୍ୟର କଳ୍ପନାପୁରୀକୁ ଘେନି ଯାଉଥିଲେ, ସ୍ୱାଧୀନତା ପରେ ଆଜି ସେମାନେ ଦେଖା ନାହାନ୍ତି—ଯେଉଁ କର୍ମୀ ଜଣକ ଖାଲି ପାଦରେ ଆଣ୍ଠୁ ଉପରକୁ ମୋଟା ଖଦଡ଼ ଖଣ୍ଡିଏ ପିନ୍ଧି କାନ୍ଧରେ ଝୁଲାମୁଣି ଝୁଲେଇ ଏ ଗାଁରେ କେତେ ଥର ସଭାସମିତି କରି ଗାନ୍ଧିଙ୍କର ଅହିଂସା ନୀତି, ସରଳ ଜୀବନ ଯାପନର ଆଦର୍ଶ ପ୍ରଚାର କରିଯାଇଛନ୍ତି, ସିଏ କେବଳ ଥରେ ଏଇ ବାଟ ଦେଇ ଗୋଟିଏ ବଡ଼ ମଟର ଭିତରେ ବସି ଯାଉଥିବାର ଅପର୍ତ୍ତି ଦେଖିଛି —

ବେଦନା ଓ ନୈରାଶ୍ୟରେ ଅପର୍ତ୍ତିର ହୃଦୟତନ୍ତ୍ରୀଗୁଡ଼ିକ ଛିଡ଼ିଯିବାର ଉପକ୍ରମ କରନ୍ତି—

ଗୁରେଇର ଅନାହାରକ୍ଲିଷ୍ଟ, ଉଲଗ୍ନ, ଝାଉଁଳା ତନୁ-ଲତାଟିଆଡ଼େ ଚାହିଁ ତା ଆଖି ଜକେଇ ଆସେ—

ଆଦରରେ ଗୁରେଇକୁ କୋଳ ଭିତରକୁ ଟାଣିଆଣି ଧନେ ଧନେ ଅପର୍ତ୍ତି କହେ—ମତେ ବାହା ହେଇ କେତେ ଦୁଃଖ ପାଇଲୁ ଗୁରେଇ—ଉଧୁନଙ୍ଗଳା ହୋଇ ଦିନ ବିତେଇଲୁ—

ଅନ୍ୟ ଆଡ଼କୁ ମୁହଁ ବୁଲେଇ ପୁଣି କହେ ତୁ ଯଦି କାହାକୁ ଦୁଷ୍ଣପୂ ହବାକୁ ଚାହୁଁ ମୋର କିଛି ଆପତ୍ତି ନାହିଁ—

ଅଭିମାନ ଓ ରାଗରେ ଗୁରେଇର ଆଖି ଦୁଇଟା ଦପ୍ କରି ଜଳିଉଠେ — ଅପର୍ତ୍ତି ମୁହଁକୁ ଚାହିଁ ଦୃପ୍ତ ଗଳାରେ କହେ — ମତେ ଗୁଡ଼ପସ ଦବାକୁ ଯଦି ତମର ଇଚ୍ଛା ହଉଚି ଦଉନ ? ମୋର କଅଣ ହେଉଚି ଯେ ମୁଁ ଦୁଷ୍ଣପୂ ହେବି — ମୁଁ ଲଙ୍ଗଳା ହେଉଛି — ତମେ କେଞ୍ଚୁତା ହେଉଚ ?

ଗୁରେଇ ଅପର୍ତ୍ତିର ଦୁଇ ବାହୁ ମଝି ଭିତରେ ନିଜର ମୁହଁକୁ ମାଡ଼ି ରଖି କହିଁ କହିଁ ହୋଇ କାନ୍ଦିଉଠେ — ଅପର୍ତ୍ତି ଏଇ ବିରାଟ ନଗ୍ନ ଦାରିଦ୍ର୍ୟ ଭିତରେ ବି ଏଇ ଯେଉଁ ଗୌରବଟିକ

ଲଭ କରେ ସେଥିରେ ତାର ମୁଖରେ ଫୁଟେ ପୁଲକର ପଦ୍ମ – ଗୁରେଇର ଲୁଖୁରା ଘଞ୍ଚ କେଶଗୁଚ୍ଛକୁ ଧରି ସେ ଆଦରରେ ଝିଙ୍କି ଦେଇ କହେ – ଗୁରେଇ, ତୁ କଅଣ ମୋ କଥାକୁ ସତ ଗଲୁ ? – ଗୁରେଇ କିଛି ଉତ୍ତର ନ ଦେଇ ମୁହଁ ଲୁଚେଇ ବସି ରହେ –

ଅପର୍ତ୍ତି ଭାବି ବସେ – ଏଇ କେତେ ବର୍ଷ ଧରି ସେ ଗୁରେଇକୁ କେତେ ଆଶା ଆଶ୍ୱାସନା ନ ଦେଇଛି ? ଉଜ୍ଜ୍ୱଳ ଭବିଷ୍ୟତର କେତେ ଚିତ୍ର ତା ଆଖି ଆଗରେ ନ ଦେଖେଇଛି – ସରଳ ମନରେ ଗୁରେଇ ସେସବୁକୁ ବିଶ୍ୱାସ କରିଛି –

ଅପର୍ତ୍ତି ଭାବେ ତାର ଏ ଦୈନ୍ୟ ପାଇଁ ସେ ପ୍ରତିଶୋଧ ନେବ କାହା ଉପରେ ?

ଅପର୍ତ୍ତି ଠିକ୍ କଲା ନିଜ ଦୁଃଖ ତାକୁ ନିଜେ ଘୁଞ୍ଚେଇବାକୁ ହେବ –

ନୈଶ ଅନ୍ଧକାର ଭିତରେ ସେ ଜଣେ ସ୍ମଗଲର ଧନ ସାହୁ ଦୋକାନ ଆଡ଼େ –

ନିଦ ମଳମଳ ଆଖିରେ ଗୁରେଇ ଉଠି ବସି ଦେଖିଲା ଅପର୍ତ୍ତି ଦ୍ୱିଖଣ୍ଡି ମାଇପିପିନ୍ଧା ଖଦି ଧରି ତା ପାଖରେ ବସିଛି – କିଛି ବୁଝି ନ ପାରି ପଚାରିଲା··· ଖଦି କେଉଁଠୁ ଆଣିଲ ?

ଅପର୍ତ୍ତି ହସି ହସି କହିଲା – ଯୋଉଠୁ ଆଣିଲି – ତୁ ଗାଧୋଇ-ପାଧୋଇ ପିନ୍ଧିବୁଟି ଆଗେ ଖଣ୍ଡେ ବେଇଗି – ମୁଁ ଆଜି ତୋ ଆଡ଼େ ଅନେଇ ପାରୁନି –

ସନ୍ଦିଗ୍ଧ ଦୃଷ୍ଟିରେ ଗୁରେଇ ତା ଆଡ଼େ ଚାହିଁ କହିଲା – ଯୋଉଠୁ ଆଣିଲ କଣ ମ ? ବ୍ରତି ଖ୍ରତି କଣ ଗୁଳ ବାଟ ଦେଇ ଆଣିଲ – ?

ଅପର୍ତ୍ତି ଇତସ୍ତତଃ ହୋଇ ଶେଷକୁ କହିଲା – ଧନ ସାହୁ ଦୋକାନରୁ ଚୋରି କରିଚି –

ଚମକିପଡ଼ି ଗୁରେଇ କହିଲା – ଚୋରି ?

ହଁ, ଚୋରି···କଅଣ ହୋଇଗଲା ସେଇଠୁ ? କିଏ ନ କରୁଚି ଚୋରି ? ଧନ ସାହୁ ଜଳାପୋଡ଼େଇ କରି ଟଙ୍କାକ ଜାଗାରେ ପାଞ୍ଚ ଟଙ୍କା ନଉଚି – ସେଇଟା କଅଣ ଚୋରି ନୁହେଁ ? ଯୋଉ ବାବୁମାନେ ଜାଣିଶୁଣି ତାକୁ ଛାଡ଼ି ଦଉଛନ୍ତି ସେମାନେ ସବୁ କଅଣ ଭଲ ଲୋକ ? ଯୋଉ ସାହୁକାର ଆମକୁ ଖଟେଇ ଆମ ଉଣ୍ଟିଟପି ଖଜଣା ଅସୁଲ କରୁଚି ସିଏ କଅଣ ଚୋର ନୁହେଁ ? ଆଉ ମୁଁ ଖାଇବାକୁ ପାଉନି, ପିନ୍ଧିବାକୁ ପାଉନି – ଚୋରି କଲି ତ କଅଣ ହେଲା ?

ଗୁରେଇ ଭୟାତଙ୍କ ଗଳାରେ କହିଲା – ଯଦି ଧରାପଡ଼ୁ ?

ଅପର୍ତ୍ତି ନିର୍ଭିକ ଭାବରେ ଉତ୍ତର ଦେଲା – ଧରାପଡ଼ିଲେ ପଡ଼ିବା – ତା ଆଗରୁ ତୁ ଖଣ୍ଡେ ଲୁଗା ହେଲେ ପିନ୍ଧି ପକେଇଥା – ଛିଣ୍ଡା ଲୁଗାଗୁଡ଼ିକ ଏଇ ଅଗଣାରେ ପକେଇ ଦେ – ଆଉ ଏଇ ଶାଢ଼ୀ ଖଣ୍ଡ ପାଉଁଶ ଗଦା ଭିତରେ ଲୁଚେଇ ଦେଇ ଆ – ଯା – ବେଇଗି ସବୁ କରି ପକା –

ଗୁରେଇ ଅପର୍ତ୍ତି କହିଲା ପ୍ରକାରେ ସବୁ କରିଗଲା ଶଙ୍କିତ ଚିତ୍ତରେ –

ବାରଟା ବେଳକୁ ପୁଲିସ ଆସି ଅପର୍ତ୍ତି ଘର ଖାନତଲାସ କଲା –

ଗୁରେଇ ନୂଆ ଶାଢ଼ୀଟା ପିନ୍ଧି ଲଜ୍ଜାବନତ ମୁଖରେ ଠିଆ ହେଲା ପୁଲିସ ସାମନାରେ –

ଗୁରେଇ ପିନ୍ଧା ଶାଢ଼ୀକୁ ଦେଖେଇ ପୁଲିସ ପଚାରିଲା ଅପର୍ତ୍ତିକୁ — ଏ ଶାଢ଼ୀ କେଉଁଠୁ ପାଇଲୁ ?

ଟିକିଏ ବି ଶଙ୍କି ନ ଯାଇ ଅପର୍ତ୍ତି ଉତ୍ତର ଦେଲା — କିଣିଛି —

ପୁଲିସ ପଚାରିଲା — କୋଉଠୁ କିଣିଲୁ ?

ହେଇ ସିଏ ଆପଣଙ୍କ ସାଥିରେ ଆଇଚି — ଧନ ସାହୁ — କିଣିଚି ଏଇ ରବିବାର ଦିନ —

ଧନ ସାହୁ ଆଡ଼େ ଚାହିଁ ପୁଲିସ ପଚାରିଲା — କଣ ବିକିଚ ?

ଆଖି ଦି'ଟା ବଡ଼ ବଡ଼ କରି ହାତଯୋଡ଼ି ଧନସାହୁ କହିଲା — ନାଇଁ ଆଜ୍ଞା ! ଖାତା ଦେଖନ୍ତୁ ତା ଦସ୍ତଖତ ନ ଥିବ —

ଅପର୍ତ୍ତି ଶ୍ଳେଷମିଶା ଗଳାରେ କହିଲା — ଦସ୍ତଖତ ଆସିବ କୋଉଠୁ ସାହୁଏ ? ରାତି ବାରଟା ବେଳେ ଚୋରଙ୍କ ଭଳି ବାଡ଼ିପଟେ ତ ଲୁଗା ବିକିବ କଳାପୋତେଇରେ — ଅଢ଼େଇ ଟଙ୍କାର ଖଧା ଖଣ୍ଡିକୁ ତ ମୋଠୁ ପାଞ୍ଚ ଟଙ୍କା ସୁକାଏ ନେଲ — ଅନ୍ଧାରିଆ ବେଉସା — ଅଭିକା ମତେ ଚୋର କରିବାକୁ ବସିଛ କଅଣ କିଏ ସାହୁ ?

ପୁଲିସ ଆଡ଼େ ଚାହିଁ ପଚାରିଲା — ଆଜ୍ଞା, ମୁଁ ଚୋର କି ନୁହେଁ ପଚାରନ୍ତୁ ସବୁ ଗାଁବାଲାଙ୍କୁ — ଆଉ ସେମାନଙ୍କୁ ପଚାରନ୍ତୁ ଧନ ସାହୁ କଳାପୋତେଇରେ ଲୁଗା ବିକେ କି ନାହିଁ — ତାଙ୍କର ହାତରୁ ବି କେତେ କିଣିଥିବେ ।

ପୁଲିସ ଧନ ସାହୁକୁ ପଚାରିଲା — ତମର କେତେ ଯୋଡ଼ା ଲୁଗା ଚୋରି ଯାଇଛି ?

ଧନ ସାହୁ ଥେଙ୍ଗେଇ ଥେଙ୍ଗେଇ ମନେ ପକାଇବା ଭଳି ଆଖି ଉପରକୁ କରି କହିଲା ଆଜ୍ଞା ଦଶ ପନ୍ଦର ବୋଡ଼ା ।

ଧମକ ଦେଇ ସବ୍‌ଇନ୍‌ସପେକ୍ଟର କହିଲେ – ଠିକ୍ କେଇଟା ଜାଣିନ ? କଣ୍ଟ୍ରୋଲ ଦୋକାନ ତମର---ଲଗା ହିସାବ ଠିକ୍ ରଖିନ ?

ଧନ ସାହୁ ପାଟି ଫାକୁଫାକୁ କଲା—ପୁଲିସ ଅପର୍ତ୍ତିର ଘରବାଡ଼ି, ସବୁ ଟିକିନିଖି କରି ଖୋଜି କେଉଁଠି କିଛି ନ ପାଇ ଧନ ସାହୁକୁ ଗୁହିଁ କହିଲେ – ଏପ୍ୟାଡ଼େ ରେଡ଼୍ ଯିବା ବାହାନା ଦେଖେଇ ସିଆଡ଼େ କଳାପୋତେଇ ଗଲେଚ, ନାଇଁ ଆସ—ତମ ଦୋକାନ ଖାନତଲାସ କରିବ – ତମେ ବଡ଼ ସୁବିଧା ଲୋକ ନୁହଁ ଭ ?

ପୁଲିସ ଆଗେଇ ଗଲେ—ପଛେ ପଛେ ଧନ ସାହୁ ଲୋକଙ୍କ ଭଳି ଥରି ଥରି ହାତ ଯୋଡ଼ି ଗଲା –

ଅପର୍ତ୍ତି ରହିଲା ଗୁରେଇ ଆଡ଼େ ହସି ହସି –

ଗୁରେଇ ପଚାରିଲା ଆଶ୍ଚର୍ଯ୍ୟ ହୋଇ—ତମେ ଏତେଗୁଡ଼ାଏ ମିଛ କହିଗଲ ପୁଲିସ ଆଗରେ ? ମୋ ଛାତି ଥରୁଥିଲା ଖାଲି ।

ଅପର୍ତ୍ତି କହିଲା—ନେଇ ଆଣି ଥୋଇ ଜାଣିଲେ ବେପାର ଭବ୍ୟା ଭଲ –

ଗୁରେଇ ବ୍ୟସ୍ତ ହୋଇ କହି ଉଠିଲା— ନାଇଁ—ନାଇଁ— ଆମ୍ଭେ ଖୁଣି ଖୁଣି ନଙ୍ଗଳା ହୋଇ ମରିବା ଭଲେ – ତମେ ଏମିତି କୋଉଠୁ ବେପାର କରନି—ମୋ ଛାତି ଧଡ଼ ଧଡ଼ ହଉଛି –

ଅପର୍ତ୍ତି କିଛି ସମୟ ଚୁପ୍ ହୋଇ ବସି ରହିଲା ତାପରେ ଆଖି ଛଳ ଛଳ କରି ବ୍ୟଥାତୁର କଣ୍ଠରେ କହିଲା—ଗୁରେଇ—

ଚୋରି କଅଣ ମୁଁ ସଉକରେ କଲି ? ବଡ଼ଲୋକମାନେ ସଉକରେ ହଜାର ହଜାର ଚୋରି କରୁଛନ୍ତି—ଆମେ ନଙ୍ଗଳା ହଉଚେ—ଲୁଗା ବି ଆମେ ଚୋରି କରିପାରିବାନି ଖାଲି ନିଜର ମାନ ମହତ ଘୋଡ଼ାଇବା ପାଇଁ ?

ସମସ୍ତେ କହିଲେ ଆମ ଦେଶ ସ୍ୱାଧୀନ ହେଲେ ଆମ ଦୁଃଖ ପାଣି ପରି ବୋହିଯିବ – କିନ୍ତୁ କାହିଁ ?

ଗୁରେଇ ଉତ୍ତ୍ୟକ୍ତ ଅପର୍ତ୍ତି କାନ୍ଧରେ ହାତ ରଖି କହିଲା—ନାଇଁ ତମେ ମୋ ମୁଣ୍ଡ ଖାଅ – ଯିଏ ଯାହା କରୁ—ତମେ ସେସବୁ ନଉଛୁଣା କାମ ଆଉ କରିବନି । ଦୁଃଖ ଆମର ଦିନେ ନା ଦିନେ ଘୁଞ୍ଚିବ—ସବୁ ଦିନ କଣ ଆଉ ଏକା ଯାଉଥିବ ?

ଅପର୍ତ୍ତି ଗୁରେଇ ଆଡ଼େ ଚାହିଁ କହିଲା—ଗୁରେଇ, ଭଲ ଲୋକ ହେଲେ ଦୁଃଖ ଭୋଗିବାକୁ ହୁଏ –

ଗୁରେଇ କହିଲା—ହଉ ଦୁଃଖ ।

— – —

# ପିତା ଓ ପୁତ୍ର (X)

[ ଶ୍ରୀ ସୁରେନ୍ଦ୍ର ମହାନ୍ତି ]

( ଏକ )

ଶିଖର ଦେଶରେ ଏକ କ୍ଷୁଦ୍ର ଛିଦ୍ର ପଥରେ ପ୍ରଭାତର ଆଲୋକରେ ଅନ୍ଧକାର କାରାଗାର ସ୍ୱଳ୍ପ ଆଲୋକିତ ହୋଇଛି । ଉପରେ ଶୁଭୁଛି ରାଜଗୃହର ରାଜପଥରେ ଜନତାର ଦୈନନ୍ଦିନ କର୍ମମୁଖର କୋଳାହଳ ।

ବନ୍ଦୀ ଥରେ କ୍ଷୁଧାର୍ତ୍ତ ଦୃଷ୍ଟିରେ ଚାହିଁଲେ ଛିଦ୍ର ପଥରେ ସେହି ଆଲୋକ ଆଡ଼େ । ପ୍ରଭାତର ଶାନ୍ତ, ସ୍ନିଗ୍ଧ ଆଲୋକ ରେଖା···ପ୍ରଭୁ ବୁଦ୍ଧଙ୍କର ଆଶୀର୍ବାଦ ପରି ।

ବାର୍ଦ୍ଧକ୍ୟ, ଅନଶନ ଓ ଅତ୍ୟାଚାରରେ ବନ୍ଦୀ ଶୀର୍ଣ୍ଣକାୟ, ବିଶୁଷ୍କ ପ୍ରେତଚ୍ଛାୟା ପରି । ତାଙ୍କର ବିପୁଳ ବକ୍ଷଦେଶ ରୁକ୍ଷ ଧୂସର ଶ୍ମଶ୍ରୁଜାଲରେ ଆଚ୍ଛନ୍ନ । ଦେହର ଚର୍ମ ଲୋଳିତ ।

ବନ୍ଦୀ ମଗଧର ରାଜା ବିମ୍ବିସାର

ପୁତ୍ର ଅଜାତଶତ୍ରୁର ଆଦେଶରେ କାରାରୁଦ୍ଧ ହୋଇ ପଡ଼ିଛନ୍ତି ଏହି ଜୀବନ୍ତ ସମାଧି ତଳେ ।

ବିମ୍ବିସାରଙ୍କୁ ହତ୍ୟା କରିବାପାଇଁ ଅଜାତଶତ୍ରୁଙ୍କର ପଣ··· ତିଳେ, ତିଳେ, ଅନାହାରରେ !

କ୍ଳାନ୍ତି ଓ ଅବସାଦରେ ବିମ୍ବିସାରଙ୍କର କୋଟରଗତ ଚକ୍ଷୁର ଦୁଇ ଆଖିପତା ପୁଣି ମୁଦ୍ରିତ ହୋଇଗଲା । ଅନାହାର ଓ କ୍ଷୁଧାରେ

ତାଙ୍କର ପ୍ରତି ଅଙ୍ଗ ପ୍ରତ୍ୟଙ୍ଗ ଅବଶ ଜଡ଼ ହୋଇଆସୁଛି । ତୃଷ୍ଣା-ସ୍ଫୀତ ଜିହ୍ୱା ଶୁଷ୍କ ଓଷ୍ଠ ଉପରେ ଥରେ ବୁଲାଇଆଣି ରୁଦ୍ଧ କଣ୍ଠ ର ବିମ୍ବିସାର ଆର୍ତ୍ତନାଦ କଲେ ।

ଏଇ ରାଜଗୃହ ଥିଲେ ନିର୍ମିତ ହୋଇଥିଲା ତାଙ୍କର ଆଦେଶରେ । ଆଜ ସେହି ରାଜଗୃହ ଅନ୍ଧକୂପ ମଧ୍ୟରେ ଲୋକଲୋଚନର ଅଗୋଚରରେ ତିଳେ ତିଳେ ସେ ଭୋଗ କରୁଛନ୍ତି ମୃତ୍ୟୁର ଯନ୍ତ୍ରଣା ! କର୍ମଫଳ ! ପୂର୍ବ ଜନ୍ମର କର୍ମଫଳ !

ପୂର୍ବତନ ରାଜଧାନୀ କୁଶାଗ୍ର ନଗରରେ ବ୍ୟାପିଲା ଥରେ ଭୀଷଣ ଅଗ୍ନିଭୟ । ସମଗ୍ର ରାଜଧାନୀ ଭସ୍ମସ୍ତୂପରେ ପରିଣତ ହେବାକୁ ବସିଲା । ବିମ୍ବିସାର ଆଦେଶ ଦେଲେ ଯାହାର ଗୃହରେ ଅଗ୍ନିସଞ୍ଚାର ହେବ, ସେ ହେବ ନିର୍ବାସିତ । କିନ୍ତୁ ଅଦୃଷ୍ଟର ବିଧାନ ବିଚିତ୍ର । ବିମ୍ବିସାରଙ୍କ ପ୍ରାସାଦରେ ହେଲା ଅଗ୍ନିସଞ୍ଚାର । ବିମ୍ବିସାର ଶୀତଳ ବନରେ ଗ୍ରହଣ କଲେ ସ୍ୱେଚ୍ଛାକୃତ ନିର୍ବାସନ ।

ସର୍ପିଣୀ-ନଦୀ-ସେବିତା ଗ୍ରୀଷ୍ମାପି ସ୍ନିଗ୍ଧ ବିପୁଳଗିରି, ବୈଭାରଗିରି ଓ ଗୃଧ୍ରକୂଟ ମେଖଳାବେଷ୍ଟିତ ଶୀତଳବନ ବିମ୍ବିସାରଙ୍କୁ ମୁଗ୍ଧ କରିଥିଲା । ସେହିଠାରେ ତେଣୁ ତାଙ୍କର ଆଦେଶରେ ନିର୍ମିତ ହେଲା ମଗଧର ନୂତନ ରାଜଧାନୀ—ରାଜଗୃହ ।

ବିମ୍ବିସାର ସେହି ରାଜଗୃହର ଶେଷ ଦର୍ଶନ ପାଇଁ ଯେପରି କି ଦୁଇ କ୍ଳାନ୍ତ ଚକ୍ଷୁ ପୁନରୁନ୍ମୀଳନ କଲେ—ପ୍ରାଣହୀନ ଦୃଷ୍ଟିହୀନ ଦୁଇ ଆଖି, ପଥରର ଆଖି ପରି !

ସେଦିନ ଅଜାତଶତ୍ରୁ ବିମ୍ବିସାରଙ୍କୁ କାରାରୁଦ୍ଧ କରିସାରିବା ପରେ ଶୋକାକୁଳା, ଆଲୁଳାୟିତକୁନ୍ତଳା ଅଶ୍ରୁମୁଖୀ କୋଶଳା ଦେବୀ ଅଜାତଶତ୍ରୁଙ୍କ ନିକଟରେ ପ୍ରାର୍ଥନା କରିଥିଲେ···

"ପୁତ୍ର, ଅଜାତଶତ୍ରୁ !"

ଅଜାତଶତ୍ରୁ ଉପହାସ କଣ୍ଠରେ କହିଲେ, "ଆଦେଶ କରନ୍ତୁ କାଶୀରାଜନନ୍ଦିନୀ !"

"ମାତା ବୋଲି ସମ୍ବୋଧନ କରିବା କଣ ଏପରି ଲଜ୍ଜାକର ପୁତ୍ର ?"

"ପୁତ୍ର ! ହାଃ—ହାଃ—ହାଃ—"ବିକଟ ଅଟ୍ଟହାସ କରିଉଠିଲେ ଅଜାତଶତ୍ରୁ । ତା'ପରେ, ରୁକ୍ଷ ନିର୍ମମ କଣ୍ଠରେ କହିଥିଲେ—"ମାତା ବୋଲି ସମ୍ବୋଧନ କରିବାକୁ ଆପତ୍ତି ନାହିଁ ମୋର, କିନ୍ତୁ କହିପାରିବ ମାତା, ଯେଉଁ ନାରୀ ଗର୍ଭସ୍ଥ ପୁତ୍ର ଭବିଷ୍ୟତ କାଳରେ କେବେ ପିତୃହନ୍ତା ହେବ ଆଶଙ୍କା କରି ବିନେ ଗୋପନରେ ସନ୍ତର୍ପଣରେ ଶିଶୁହତ୍ୟା ପାଇଁ ଭ୍ରୂକ୍ଷେପ କରି ନ ଥିଲା, ସେହି କେବେ ସେ ହତଭାଗ୍ୟ ନିକଟକୁ ଆସେ ଯଦି ପୁତ୍ର ସମ୍ବୋଧନ କରି, ତା ହେଲେ କଣ ଦେବ ସେ ତାର ପ୍ରତ୍ୟୁତ୍ତର ?"

କୋଶଳା ଦେବୀ ଅସହାୟ କଣ୍ଠରେ କହିଲେ, "ଶତବାର କହିଛି ତ ପୁତ୍ର, ଏ କେବଳ ମିଥ୍ୟା ଜନଶ୍ରୁତି ।"

ଅଜାତଶତ୍ରୁ କହିଲେ—"ସତ୍ୟତା ନ ଥିଲେ ଶ୍ରୁତି ନ ଥାଏ କାଶୀରାଜନନ୍ଦିନୀ ! କିନ୍ତୁ ସେ ଆଲୋଚନା କାହିଁକି ? କେବଳ ବିମ୍ବିସାରଙ୍କ କାରାମୁକ୍ତି ଛଡ଼ା ଅନ୍ୟ ସମସ୍ତ ଅନୁରୋଧ ବିଚାର କରିବାକୁ ପ୍ରସ୍ତୁତ ଅଛି ମୁଁ ।"

କୋଶଳା ଦେବୀ ନିନତ ଚେଳାଞ୍ଚଳରେ ଅଶ୍ରୁମୋଞ୍ଚନ କରି କହିଲେ—"ବେଶ୍, ପିତୃରକ୍ତରେ ଯଦି ମହାରାଜାଙ୍କର ଅଭିଷେକର ମଙ୍ଗଳଘଟ ପୂର୍ଣ୍ଣ କରିବାର କାମନା, ତାର ପ୍ରତିରୋଧ କରିବାର ଆସ୍ପର୍ଦ୍ଧା କାହାର ? କିନ୍ତୁ ମୋର କେବଳ ଗୋଟିଏ ଭିକ୍ଷା ଥିଲା

ମହାରାଜ ! ଏଇ ହତଭାଗିନୀର ସ୍ୱହସ୍ତପ୍ରସ୍ତୁତ ଖାଦ୍ୟ ଛଡ଼ା ବିମ୍ବିସାରଙ୍କର ଅନ୍ୟ କୌଣସିଥିରେ ରୁଚି ନ ଥିଲା । ଆଜି ତାଙ୍କୁ କାରାଗାରରେ, ସ୍ୱହସ୍ତରେ ତେଣୁ ଖାଦ୍ୟ ପରିବେଷଣ କରିବାର ସୁଯୋଗରୁ ମୋତେ ବଞ୍ଚିତ କରିବେ ନାହିଁ ମହାରାଜ !"

ଅଜାତଶତ୍ରୁ କହିଲେ—"ଏ ପ୍ରାର୍ଥନା ମୁଁ ପୂର୍ଣ୍ଣ କଲି କାଶୀ-ରାଜନନ୍ଦିନୀ !"

କିନ୍ତୁ କୋଶଳା ଦେବୀଙ୍କର ପ୍ରସ୍ଥାନ ପରେ ପରେ କାରାଗାରର ରକ୍ଷୀ ଚଣ୍ଡିକୁ ଅଜାତଶତ୍ରୁ ଆଦେଶ ଦେଲେ, "କୌଶଳା ଦେବୀଙ୍କ ପ୍ରେରିତ କୌଣସି ଖାଦ୍ୟ ଯେପରି ବନ୍ଦୀ ସ୍ପର୍ଶ କରି ନ ପାରେ !"

ଜଳପାତ୍ର ଶୂନ୍ୟ । ବିମ୍ବିସାର ଦୁଇ ଶିଥିଳ କମ୍ପିତ ହସ୍ତରେ ସେହି ଶୂନ୍ୟପାତ୍ର ମୁଖଲଗ୍ନ କରୁ କରୁ ପାତ୍ରଟି ତଳେ ପଡ଼ି ଚୂର୍ଣ୍ଣ ହୋଇଗଲା । ପ୍ରଭାତର ସୂର୍ଯ୍ୟ ଆକାଶ ପଥରେ ଅନେକ ଉପରକୁ ଉଠିଗଲାଣି । ଶିଖରର ଛିଦ୍ରପଥରେ କ୍ଷୀଣ ଆଲୋକରେଖା କେତେବେଳୁ ନିଭିଗଲାଣି । ପୂତିଗନ୍ଧମୟ କାରାଗାରରେ କେବଳ ଅନ୍ଧକାର, ନିରନ୍ଧ୍ର, ନିରାନନ୍ଦ ଓ ନିଷ୍ଠୁର...

କ୍ଷୁଧାର ଅତ୍ୟାଚାରର ଆଉ ନାହିଁ । ଅଛି କେବଳ ଅତୃପ୍ତ ଦେହ ଓ ତୃଷା । ଏହା ପରେ ସେଥିରୁ ମଧ୍ୟ ମୁକ୍ତି ମିଳିବ । ତାପରେ ସବୁ ଶୂନ୍ୟ...ବୌଦ୍ଧର ଧ୍ୟାନାଲୋକ ପରି ନିଷ୍ପଲକ, ସ୍ଥିର ଆଖିପତା ଶୂନ୍ୟବୃତ୍ତର ପରିଧି ଧୀରେ ଧୀରେ ଯେପରି ବିମ୍ବିସାରଙ୍କ ଗୃହପଟେ ନିକଟରୁ ନିକଟତର ହୋଇଆସୁଛି । ମହାଶୂନ୍ୟର ପୃଷ୍ଠଭୂମିରେ, ବିମ୍ବିସାରଙ୍କ କୁହେଳିକାବୃତ ଦୃଷ୍ଟିପଥରେ ଭାସିଉଠିଲା ଧ୍ୟାନଗମ୍ଭୀର କାୟୋତ୍ସର୍ଗମୁଦ୍ରାବଦ୍ଧ ପ୍ରଭୁ ବୁଦ୍ଧଙ୍କର ପ୍ରଶାନ୍ତ ମୂର୍ତ୍ତି । ଦୁଇ ଅର୍ଦ୍ଧନିମୀଳିତ ନୟନରେ ତାଙ୍କର ଶାନ୍ତିରେ ସ୍ୱପ୍ନସ୍ୱପ୍ନ ।

ତୃଷାରେ ବିମ୍ବିସାରଙ୍କ ଜିଭ ଓ ଓଠ ଫାଟି ସେଥିରୁ ଅଳ୍ପ ଅଳ୍ପ କଳା ରକ୍ତ ଝରୁଛି । ସେହି ରକ୍ତରେ ବିମ୍ବିସାରଙ୍କର ଶୁଷ୍କ କଣ୍ଠରେ ଆହତ ପଶୁ ପରି ବିମ୍ବିସାର ଗର୍ଜନ କରି ଉଠିଲେ···

ମହାଶୂନ୍ୟର ପୃଷ୍ଠଭୂମିରେ ବିମ୍ବିସାରଙ୍କ ଦୃଷ୍ଟି ପଥରେ ଭସି ଉଠିଲା ଧ୍ୟାନଗମ୍ଭୀର ଗୃଧ୍ରକୂଟ ଶିଖରର ସପ୍ତପର୍ଣ୍ଣୀ ଗହ୍ୱର । ଶାକ୍ୟ ବଂଶୋଦ୍ଭବ ରାଜପୁତ୍ର ଗୌତମ ସନ୍ନ୍ୟାସ ଗ୍ରହଣ କରି ସପ୍ତପର୍ଣ୍ଣୀ ଗହ୍ୱରରେ ଚତୁର୍ମାସ୍ୟ ବ୍ରତ ପାଳନ କରୁଅଛନ୍ତି, ଲୋକମୁଖରେ ଏହି ବାର୍ତ୍ତା ଶୁଣି ବିମ୍ବିସାର ବିସ୍ମିତ ହୋଇଥିଲେ ।

ସେଦିନ ମେଘହୀନ ନୀଳ ଆକାଶରେ ଉଦାସ ଗୋଧୂଳି । ବିମ୍ବିସାର ଗୃଧ୍ରକୂଟ ଶିଖରକୁ ପାରିଷଦବେଷ୍ଟିତ ହୋଇଯାଇଥିଲେ ଗୌତମଙ୍କ ଦର୍ଶନ ପାଇଁ । ସପ୍ତପର୍ଣ୍ଣୀର ଦକ୍ଷିଣ ଅଳିନ୍ଦରେ ଗୌତମ ଅନୁଦାତ୍ତ କଣ୍ଠରେ ସମବେତ କେତେ ଜଣ ଭିକ୍ଷୁଙ୍କୁ ପ୍ରବ୍ରଜ୍ୟାସୂତ୍ର ବ୍ୟାଖ୍ୟାନ କରୁଥିଲେ । ଗୃଧ୍ରକୂଟର ପାଦଦେଶର ମୋର-ନିବାପ*ରେ ଶିଖର କଳାପଚିହ୍ନିତ ନୃତ୍ୟ ଶିଖିମାର ଆଦେଶରେ ଭଗ୍ନଛନ୍ଦ ହୋଇ ଉଠୁଛି । ଆଉ କେତେବେଳେ ବା ବିହ୍ୱଳ ହୋଇ ଉଠୁଛି କଳାପସ୍ପର୍ଶୀ ନାରୀ ଚଞ୍ଚୁ ଚୁମ୍ବନରେ । ଅଦୂରବର ମୃଗୋଦ୍ୟାନର ବ୍ୟୋମଘନ ଦୂର୍ବାଶଯ୍ୟା ଉପରେ ବସି ବସି ମୃଗ ରୋମନ୍ଥନ କରୁଛନ୍ତି । ସମୀପବର୍ତ୍ତୀ ସୁମାଗଧୀ ପୁଷ୍କରିଣୀରେ କାକଚକ୍ଷୁ ଜଳରେ ମୁଗ୍ଧା ଏକ ହରିଣୀ ନିଜର ପ୍ରତିବିମ୍ବ ଚୁମ୍ବି ଦେଖୁଛି ଆତ୍ମବିସ୍ମୃତା ହୋଇ ।

ସାଧନାରେ ଗୌତମଙ୍କର ବିଭୂତିରୁ ଉଜ୍ଜ୍ୱଳ, ଅର୍ଦ୍ଧନିମୀଳିତ ନୟନଯୁଗଳରେ ଗୋଧୂଳିର ଉଦାସ ଗ୍ଳୁପ୍ଟୁ, ମୁଦ୍ରାବଦ୍ଧ କର-

* ମୟୂର ଚରିବା ସ୍ଥାନ ।

ପଲ୍ଲବରେ ଶାନ୍ତିର ଆଶୀର୍ବାଦ । ସାଦର ସମ୍ଭାଷଣାନ୍ତେ ବିମ୍ବିସାର ପ୍ରଶ୍ନ କଲେ—"କେଉଁ ଦୁଃଖରେ କୁମାର ଏ କୃଚ୍ଛ୍ର ସାଧନା ?"

ଗୌତମ ସ୍ମିତ ହସି ଉତ୍ତର ଦେଲେ—"ଦୁଃଖପାଇଁ ନୁହେଁ ମହାରାଜ, ଦୁଃଖର କାରଣ ଓ ନିଦାନର ସନ୍ଧାନପାଇଁ ଏ ସନ୍ନ୍ୟାସ, ଏ କୃଚ୍ଛ୍ର ସାଧନା !'

ବିମ୍ବିସାର ଅଟ୍ଟହାସ କରି କହିଲେ—"କାରଣ ତ ଅତି ସହଜ । କିନ୍ତୁ ସପ୍ତପର୍ଣ୍ଣୀ ଗହ୍ୱରରେ ତାର ନିଦାନ କାହୁଁ ପାଇବେ କୁମାର ! ଆସନ୍ତୁ ତା' ହେଲେ ରାଜଗୃହର ଉତ୍ସବଶାଳାକୁ । ମୈରେୟକର ଫେନିଳ ମଦ୍ୟ ଓ ମାଗଧୀର ଚଟୁଳଲାସ୍ୟରେ ପାଇବେ କୁମାର ସବୁ ଦୁଃଖର ନିଦାନ ।"

ନିର୍ଘୋଷ ଆନନ୍ଦରେ ବିମ୍ବିସାର ପୁଣି ଅଟ୍ଟହାସ କରି ଉଠିଲେ । ଗୌତମଙ୍କର ଦୁଇ ଅର୍ଦ୍ଧନିମୀଳିତ ନୟନରେ ଗୋଧୂଳିର ଉଦାସ ଛାୟା, ସନ୍ଧ୍ୟାର ମୌନ ଅନ୍ଧକାର ପରି ଗଭୀର ଓ ଗମ୍ଭୀର ହୋଇଆସିଲା ।

ଆଃ···ତୃଷାରେ ବିମ୍ବିସାରଙ୍କର କଣ୍ଠନଳୀ କିଏ ଯେପରି ଟାଣି ଛିଣ୍ଡାଇ ପକାଉଛି ।

କିଛିକ୍ଷଣର ନୀରବତା ପରେ ଗୌତମ ଉତ୍ତର ଦେଲେ, "କାମନାର ବାରିରେ ଏ ତୃଷାର ଶାନ୍ତି ନାହିଁ ମହାରାଜ !

ନିଭୃତ କାନ୍ତାରର ପ୍ରାଣହୀନ ନୀରବତା ସେହି ବାଣୀରେ ଯେପରି ପ୍ରତିଧ୍ୱନିତ ହୋଇଉଠିଲା ।

ଲାସ୍ୟରତା ସୁମାଗଧୀର ଅଲକ୍ତକ-ରଞ୍ଜିତ ଶିଞ୍ଜା ନିକ୍ୱଣିତ ଚରଣ ଆଜି ନୀରବ, କଜ୍ଜଳସୀମାୟିତ ନୟନରେ ମରଣର ଭ୍ରୂକୁଟୀ, ମୈରେୟକର ଫେନିଳ ପାନପାତ୍ରରେ ହଳାହଳର ବୁଦ୍‌ବୁଦ । କାହାର ? କାହାର ଏ ନୂପୁର-ଶିଞ୍ଜନ ? କୋଶଳା ଦେବୀ ? ମହାରାଣୀ ?

କାରାଗାରରେ ପକ୍ଷ-ପରିବର୍ତ୍ତନ ହେଉଛି, ଲୌହ ସାଞ୍ଜୁର ଶବ୍ଦ । ଅସହ୍ୟ ତୃଷାରେ ବିମ୍ବିସାର ଶରାହତ ବନ୍ୟ ପଶୁପରି ନିଜର ଗୋଟିଏ ବାହୁ କାମୁଡ଼ି ପକାଇଲେ ।

*

( ଦୁଇ )

ଅଜାତଶତ୍ରୁ ନିଷ୍ପଲକ ଦୃଷ୍ଟିରେ ପ୍ରାସାଦକକ୍ଷର ବାତାୟନ-ପଥରେ ଚାହିଁଥିଲେ ରାଜଗୃହର ଦିଗନ୍ତମେଖଳା ଗିରିମାଳା ଆଡ଼େ । ପଲଙ୍କରେ ସନ୍ତାନସମ୍ଭବା ରାଣୀ ବଜ୍ରା ଦେହ ଢାଳି ପଡ଼ିଛନ୍ତି ମରୁନଦୀ ପରି । ପାରାବତପାଳିକାରୁ ଦଳ ଦଳ ପାରାବତ ଉଡ଼ି-ଯାଉଛନ୍ତି, ପୁଣି ଫେରିଆସୁଛନ୍ତି । ଉଦ୍ୟାନର ତମାଳ ତଳେ ଭବନଶିଖୀ ଉଦ୍ଦାମ ନୃତ୍ୟର ଉଦ୍ୟମରେ ଶିଖା ବିସ୍ତାର କରୁଛି ।

ବଜ୍ରା କ୍ଲାନ୍ତ କଣ୍ଠରେ ଡାକିଲେ···ମହାରାଜ !

ଅଜାତଶତ୍ରୁ ଶଯ୍ୟା ପାର୍ଶ୍ୱରେ ବସି ଧୀରେ ଧୀରେ ବଜ୍ରାଙ୍କର ମଳିନ କପାଳ ଉପରେ କର ସଞ୍ଚାଳନ କରି କହିଲେ—କୁହ ବଜ୍ରା !

ବଜ୍ରା ଅଜାତଶତ୍ରୁଙ୍କର ଗୋଟିଏ ହାତ ଧରି କହିଲେ—କୁହନ୍ତୁ ତ ମହାରାଜ, ଏ ସନ୍ତାନ ପୁତ୍ର ହେବ ନା କନ୍ୟା ?

ଅଜାତଶତ୍ରୁ ବିଚଳିତ ହୋଇଉଠିଲେ ।

ବଜ୍ରାଙ୍କର ପୁଣି ସେହି ନିଷ୍ଠୁର ପ୍ରଶ୍ନ—କୁହନ୍ତୁ ମହାରାଜ, ଏ ସନ୍ତାନ ପୁତ୍ର ହେବ ନା କନ୍ୟା ?

ଅଜାତଶତ୍ରୁ ବଜ୍ରାଙ୍କ ଶଯ୍ୟାପାର୍ଶ୍ୱରୁ ଉଠି ପଳାଇଲେ ନିଜର ନିଭୃତ କକ୍ଷକୁ । କି ଏକ ତୀବ୍ର ଯନ୍ତ୍ରଣାରେ ବଜ୍ରା ଚିତ୍କାର କରି ଉଠିଲେ ।

ପୁତ୍ର ! ପୁତ୍ର ! ଅଜାତଶତ୍ରୁଙ୍କର ବାଷ୍ପାପ୍ଲୁତ ଦୃଷ୍ଟିପଥରେ ଭାସି ଉଠିଲା ରାଜଗୃହର ଅନ୍ଧକାର କାରାଗାର । ହସ୍ତପଦବଦ୍ଧ, ଶୃଙ୍ଖଳିତ ଅଜାତଶତ୍ରୁ ଅନାହାରରେ ଆର୍ତ୍ତନାଦ କରୁଛନ୍ତି ।

ଅତି ନିଷ୍ଠୁର ସେ ଭବିଷ୍ୟତ ବାଣୀ···ବଜ୍ରାଙ୍କ ପ୍ରଥମ ପୁତ୍ର ହେବ ପିତୃହନ୍ତା । * । ଅଜାତଶତ୍ରୁଙ୍କର ମୁଖର ଭଙ୍ଗୀ କଠୋର ହୋଇଉଠିଲା । ସନ୍ତାନସମ୍ଭବା ବଜ୍ରାଙ୍କୁ ଅନ୍ଧକାର କାରାଗାରରେ ବନ୍ଦୀ କରିବେ ? ନବଜାତ ଶିଶୁକୁ ଅନ୍ଧକୂପ ମଧ୍ୟରେ ହତ୍ୟା କରିବେ ? ଅତୀତ ଓ ଭବିଷ୍ୟତ ସବୁ ଦୁଇ ହାତରେ ନିଶ୍ଚିହ୍ନ କରିଦେବେ ? ଅଜାତଶତ୍ରୁଙ୍କ ପକ୍ଷରେ ଏପରି କଣ ବା ଦୁଃସାଧ୍ୟ ? (ଅତୀତ ତ ଆଜି କାରାଗାରରେ ଗତାୟୁ । ଆଉ ଭବିଷ୍ୟତ ? କିନ୍ତୁ ଅତୀତ ଓ ଭବିଷ୍ୟତହୀନ ବର୍ତ୍ତମାନ ଯେ ସ୍ଥିତିହୀନ ।)

ବଜ୍ରାଙ୍କର ଆର୍ତ୍ତ ଚିତ୍କାର ଶୁଭୁଛି । ପ୍ରସୂତି ବେଦନାର କରୁଣ ମର୍ମଭେଦୀ ଆର୍ତ୍ତନାଦ ! ସ୍ରଷ୍ଟାକୁ ଦଳିତ କରି, ମଥିତ କରି ଜରାୟୁ ଛିନ୍ନ ବିଦୀର୍ଣ୍ଣ କରି ସୃଷ୍ଟି ଲୋଡ଼ୁଛି ଆତ୍ମପ୍ରକାଶ ।

ସେଦିନ କୁଆଡ଼େ ବିମ୍ବିସାରଙ୍କ ଆଦେଶରେ ରାଜଗୃହର ପଥେ ପଥେ ବିପୁଳ ଉତ୍ସବର ଅଫୁରନ୍ତ ପ୍ରବାହ···ଅଜାତଶତ୍ରୁଙ୍କର ମନେ ପଡ଼ିଗଲା ଶୈଶବର ଧାଈଠାରୁ ଶୁଣା ନିଜର ଜନ୍ମ କାହାଣୀ । ···ବଜ୍ରାଙ୍କର ଆର୍ତ୍ତନାଦରେ ପ୍ରାସାଦର କୋଣ, ଅନୁକୋଣ ସ୍ପନ୍ଦିତ ହୋଇଉଠିଛି । (ସୃଷ୍ଟି ନିଷ୍ଠୁର । ନିଜର ସୃଷ୍ଟିରେ

* ଅଜାତଶତ୍ରୁଙ୍କର ପୁତ୍ର ଉଦାୟୀ ଓ ତାଙ୍କର ପରବର୍ତ୍ତୀ ତିନି ଜଣ ବଂଶଧର ପିତୃହନ୍ତା ଥିଲେ । ପ୍ରଜାମାନେ ଏଥିରେ ଉତ୍ତେଜିତ ହୋଇ କାଶୀରାଜା ଶିଶୁନାଗଙ୍କୁ ମଗଧର ସିଂହାସନରେ ଅଭିଷିକ୍ତ କରିଥିଲେ ।

ସ୍ରଷ୍ଟା ନୀତିଦାସ । ସୃଷ୍ଟିର କରୁଣା ଭିକ୍ଷା ଛଡ଼ା ସ୍ରଷ୍ଟାର ଗତ୍ୟନ୍ତର ନାହିଁ । ତଥାପି ସୃଷ୍ଟିରେ କି ବିପୁଳ ଆନନ୍ଦ, କି ଗର୍ବ ! ପିତୃତ୍ୱର ଆନନ୍ଦରେ ଅଜାତଶତ୍ରୁଙ୍କର ପ୍ରାଣ ନିଜର ଅଲକ୍ଷିତରେ ଉଦ୍‌ବେଳିତ ହୋଇଉଠିଲା ।...

ନିଭୃତ କକ୍ଷରେ କାହାର ପାଦଶବ୍ଦ ଶୁଣି ଅଜାତଶତ୍ରୁ ଫେରି ଚାହିଁଲେ । କାରାଗାରର ରକ୍ଷୀ ଚଣ୍ଡ, ଅଜାତଶତ୍ରୁଙ୍କ ଆଦେଶ ପ୍ରତୀକ୍ଷାରେ ଯେପରି ଠିଆହୋଇ ରହିଛି ।

ଅଜାତଶତ୍ରୁ ପଚାରିଲେ···କି ସମ୍ବାଦ ଚଣ୍ଡ ?

ଚଣ୍ଡ କହିଲା···ଗତ ତିନି ଦିନ ଧରି ମହାରାଜାଙ୍କ ଆଦେଶରେ ଜଳବିନ୍ଦୁ ସୁଦ୍ଧା ଦିଆଯାଇ ନାହିଁ ! ଆଜି ଚତୁର୍ଥ ଦିବସ !

ଅଜାତଶତ୍ରୁଙ୍କର ମୁଖ ଭଙ୍ଗୀ ପୁଣି କଠୋର ହୋଇଉଠିଲା । ଚଣ୍ଡକୁ ରୁକ୍ଷ କଣ୍ଠରେ ପୁଣି ପଚାରିଲେ···ତା'ପରେ ?

ଚଣ୍ଡ କହିଲା···ପ୍ରଥମେ ଶୁଭୁଥିଲା 'ହାୟ ପୁତ୍ର, ହାୟ ରାଜଗୃହ' ବୋଲି ଆର୍ତ୍ତ ଚିତ୍କାର ।

ରାଣୀହଂସପୁର ମଧ୍ୟରୁ ଶୁଭିଲା ଶଙ୍ଖ ଓ ହୁଳହୁଳି ଧ୍ୱନି ! ବନ୍ଦୀଙ୍କର ଚିତ୍କାର କେତେବେଳୁ ନୀରବ ହେଲାଣି । ଧାତ୍ରୀ ବସୁମତି ଅସ୍ତବ୍ୟସ୍ତ ପଦରେ ଧାଇଁଆସି ଜଣାଇଲେ···ସୁସମ୍ବାଦ, ମହାରାଜ ! ମହାଦେବୀଙ୍କର ପୁତ୍ରଲାଭ ହୋଇଛି । ମହାମନ୍ତ୍ରୀଙ୍କୁ ଡାକି ରାଜଗୃହରେ ଉତ୍ସବପାଇଁ ଆଦେଶ ଦିଅନ୍ତୁ ।

ଚଣ୍ଡ କହିଲା···ଆଦେଶ ଦିଅନ୍ତୁ ମହାରାଜ !

ଅଜାତଶତ୍ରୁ ଥରେ ଚାହିଁଲେ ଧାତ୍ରୀ ବସୁମତୀ ଆଡ଼େ, ଆଉ ଥରେ ଚାହିଁଲେ ଚଣ୍ଡ ଆଡ଼େ ! ତାପରେ ବାହୁଲି ପରି ଧାଇଁ ଚାଲିଗଲେ ବାହାରକୁ ।· ଅଙ୍ଗନ ପରେ ଅଙ୍ଗନ, ଅଳିନ୍ଦ ପରେ ଅଳିନ୍ଦ, ସୋପାନ ଶ୍ରେଣୀ ପରେ ସୋପାନ ଶ୍ରେଣୀ, ଅଜାତଶତ୍ରୁ

ଧାଇଁ ଗୃଲିଛନ୍ତି ଉନ୍ମତ୍ତ ପରି । କାରାଗାରର ପ୍ରବେଶ ଦ୍ୱାର ନିକଟରେ ଅଜାତଶତ୍ରୁ ରହିଗଲେ । ରକ୍ଷୀ ଅଭିବାଦନ ଜଣାଇଲା ।

ଅଜାତଶତ୍ରୁ ଆଦେଶ ଦେଲେ···ଦ୍ୱାର ଖୋଲ ରକ୍ଷୀ !

ଦୁଇ ପ୍ରକାଣ୍ଡ ଲୌହ କବାଟ ବିକଟ ଶବ୍ଦ କରି ଖୋଲିଗଲା । ଭିତର ନିରନ୍ଧ୍ର ଅନ୍ଧକାର । ଅଜାତଶତ୍ରୁ ଅନ୍ଧକାରାବୃତ ସୋପାନ-ଶ୍ରେଣୀ ଅତିକ୍ରମ କରି ଧାଇଁଗଲେ କାରାଗାର ଭିତରକୁ !

ପିତା, ଆଜି ପାଇଛୁ ପିତୃତ୍ୱର ସନ୍ଧାନ ।

ସ୍ରଷ୍ଟା ଚିରଦିନ ଉଦାର, କ୍ଷମାସ୍ନିଗ୍ଧ, କରୁଣାମୟ । ଅଜାତଶତ୍ରୁ ଅବୋଧ ଶିଶୁ ପରି ବିମ୍ବିସାରଙ୍କ କୋଳରେ ମୁହଁ ଲୁଚାଇ କ୍ଷମା ଭିକ୍ଷା କରିବେ !

କିନ୍ତୁ ବହୁ ବିଳମ୍ବରେ ଆସିଲେ ଅଜାତଶତ୍ରୁ । ବିମ୍ବିସାରଙ୍କ ପ୍ରାଣହୀନ ଶୀର୍ଣ୍ଣ ଦେହ ପଡ଼ିଛି କାରାଗାରର ପାଷାଣ ଚତ୍ୱର ଉପରେ । ଗୋଟିଏ ବାଘ ହିଂସ୍ର କ୍ଷୁଧାରେ ଝାମ୍ପୁଡ଼ି ପକାଇଛନ୍ତି, ଜୀବନର ଅନ୍ତିମ ମୁହୂର୍ତ୍ତରେ ବ୍ୟାଧର ଶରାହତ ବନ୍ୟ ପଶୁ ପରି । କ୍ଷତସ୍ଥାନରୁ କେଇ ଧାର ରକ୍ତ ଝରି ପୁଣି ଶୁଖିଯାଇଛି ।

ରାଜପ୍ରାସାଦରୁ ଶୁଭୁଛି ନବଜାତ ସନ୍ତାନର ଜନ୍ମ ଘୋଷଣା କରି ଘନ ଘନ ଶଙ୍ଖଧ୍ୱନି ।

— — —

# ବଉଳା

[ ଶ୍ରୀମତୀ ଶକୁନ୍ତଳା ଦେବୀ ]

ରାତି ପାହେ । ଭୋର ଯାଇ ଖରା ଆସେ । ସନା ମା' ଘର ପଛପଟ ପଦା ଉପରେ ବଉଳା ବେକରୁ ପଘା ଫିଟାଇଦେଇ କହେ, "ସୁନାଟି ପରା, ଯା ବୁଲି ଚରି ଆସିବୁ । କାହା ବାଡ଼ିରେ ପଶିବୁ ନାହିଁ । ବୁଝିଲୁ ନାଁ..." ଏତକ କହି ବୁଢ଼ୀ ତା'ର ବେକଟିକୁ ଆଉଁଷି ଦିଏ । ଲମ୍ବ ମୁହଁଟିକୁ ଉପରକୁ ଟେକି ସାଉଁଳେଇ ପୁଣି କହେ, "ଆ—ହା—ସୁକୁମାରି ! ତୋର ଟିକିଏ ହେଲେ ମନ ନାହିଁ ଯିବାକୁ—ନୁହେଁ ନା !" ଗାଈ ମଉନ ହୁଏ । କେତେବେଳେ ବା କରୁଣ ସ୍ୱରରେ ଗୋଟିଏ ଶବ୍ଦ କରେ । ବୁଢ଼ୀ ପୁଣି କହେ, "କଣ କରିବ କହନା ଲୋ ବଉଳା ! ତୁ ନ ଗଲେ ହବ କେମିତି ? ମୁଁ ପରା ଗରିବ ! ଘରେ ମୋର କଣ ଅଛି ଯେ ତତେ ବରାବର ରନ୍ଧି ଖାଇବାକୁ ଦେବ ?" ଏତକ କହି ସାରିବା ପରେ ଆଉଥରେ ସେ ମୁହଁଟିକୁ ଚାହିଁ ଚାଲିଆସେ । ବଉଳା ଧୀରେ ଧୀରେ ଚାଲିବାକୁ ଲାଗେ ଭଲ ଘାସର ସନ୍ଧାନରେ । ବଉଳାର ଯିବା ବାଟକୁ ସନାମା' ଚାହିଁ ରହେ । ବଉଳା ଅଦୃଶ୍ୟ ହୋଇଗଲେ ଭଡ଼ମୋଡ଼ ହେଉଁ ହେଉଁ କହେ, "ଯାଏଁ ଲୋ ମା – ତେଣେ କେତେ କାମ ପଡ଼ିଛି !"

ଦିନସାରା ସେ ଲାଗେ କାମରେ । ଦମ ମଞ୍ଜି ସାଉଁଟିବା, ଘସି ତାଡ଼ିବା, ଜାଳ କାଠ ରୁଣ୍ଡେଇବା, ଭାତଗଣ୍ଡେ ଫୁଟେଇବା, କୁଟାକଣ୍ଡା କରିବା, ଶାଗ ମରିଚ ଗଛ ଲଗାଇବା—ଏମିତି ପଛକୁ ପଛ କେତେ କାମ ଜୁଟିଯାଏ । ଅବିକଳ ପିଲାଳିଆ ପ୍ରକୃତି ତାର ।

ଯେଉଁଠି ସେ ଥାଉନା କାହିଁକି—ଯାହାହେଲେ କାମ କରୁଥାଉ ନା କାହିଁକି, ବଉଳାର ଭାବନା ତା ମନରୁ ଯାଏ ନାହିଁ । କେତେବେଳେ ଆଉ କେଉଁ ଗାଈର ପାଟି ଶୁଣିଲେ କାମଧନ୍ଦା ଛାଡ଼ଦେଇ ପଦାକୁ ଆସି ଅନେଇଥାଏ ।

ସଞ୍ଜ ଥିବ ଢେର ଡେରି । ସୂର୍ଯ୍ୟଙ୍କର କିରଣଟା ନାଲି ପଡ଼ି ଆସୁଥିବ । ଘରେ ଯେତେ କାମ ଥାଉ ପଛେ ସନାମା' ଚାଲି ଆସିବ ପଦାକୁ । ବଉଳା ଆସି ନ ଥିଲେ ଖୁବ୍ ଉଚ୍ଚ ସ୍ୱରରେ ଡାକିବ "ବଉଳା ଲୋ ବଉଳା—"ବଉଳାର ଉତ୍ତର ନ ପାଇଲେ ବିରକ୍ତ ହୋଇ କହିବ, "କୁଆଡ଼େ ଗଲୁ କି ଡାକୁଣୀଟା ଏତେବେଳଯାଏ ! ସଞ୍ଜ ହେଲାଣି ଆସି, ତେବେ ବି ତାର ଚରା ସରୁ ନାହିଁ ।" ପୁଣି ଡାକିବ । ଡାକେ ଡାକେ ଡାକି ଡାକି ତଣ୍ଟି ପଡ଼ିଯାଏ, ତଥାପି ଡାକେ । ଠିକ୍ ସଞ୍ଜହୋଇ ଆସିଲାବେଳକୁ ଶୁଭିବ ବଉଳାର ପାଟି । ସନାମା' କହିବ "ଚାଲି ଆ—।" ଚାହିଁ ରହିବ ତାହାର ଆଡ଼କୁ ଏକ ଦୃଷ୍ଟିରେ । ବଉଳା ଲସର ପସର ହୋଇ ଧାଇଁଆସିବ । ଆସି ପହଞ୍ଚିଲା କ୍ଷଣି ସନାମା' ଦେହରେ ଏପଟ ସେପଟ ଘଷି ହେବ । ବୁଢ଼ୀ ତାର ମୁହଁଟିକୁ ଟିକେ ଟେକିଧରି ସାଉଁଳିଦେବ । ତା' ପରେ ତା ପେଟରେ ହାତ ମାରି କହିବ—"ପେଟ ପୂରିନି ନା ?" ନିଜେ ନିଜେ ଉତ୍ତର ଦେଇ କହିବ, "ନା, ପୂରିନି ତ ! ହଉ ଚାଲ୍ ଚାଲ୍, ଘରେ ପେଜ ଟୋପାଏ ଅଛି, ପିଇବୁ ।"ବଉଳା ଚାଲିବ ଆଗେ ଆଗେ, ସନାମା' ଚାଲିବ ପଛରେ । ବରାବର ସେ ଅନେଇଥିବ ବଉଳା ଦେହକୁ । କେଉଁଠି ଧୂଳିଟିକେ ପଡ଼ିଥିଲେ ଝାଡ଼ିଝୁଡ଼ି ଦେବ । ଗୋବର ଲାଗି ଶୁଖିଯାଇଛି ତ ନଖରେ ଉଖାରି ବାହାର କରିଦେବ । ବଉଳା ଘରକୁ ଆସିବା ପରଠୁ ସନାମା' ମନରେ ଭାରି ଆନନ୍ଦ, ଭାରି ତୃପ୍ତି ।

ବଉଳ-ଅମାବାସିଆରେ ଜନମ ବୋଲି ତାର ନାମ ବଉଳା । ଛୁଆଟି ଦିନରୁ ଅତି ହେଲବସରରେ ବଢ଼ିଆସିଛି । ସନାମା'ର ଘରକୁ ସେ ନିଜେ, ଉକ୍ରୋଇଣୀ ବର୍ଷର ଗୋଟିଏ ପୁଅ, ଆଉ ଏଇ ବଉଳା । ଆଗରୁ ତା' ଘରେ ଥିଲେ ପାଞ୍ଚୋଟି ଗାଈ । ସେମାନଙ୍କର ଦେଖାଚାହାଁ କରିବା ତା ପକ୍ଷରେ ଅସମ୍ଭବ ହୋଇ-ପଡ଼ିଲା । ଗରିବ ଘର । ଆଖପାଖରେ ଚରା ନାହିଁ । ଖାଇବେ କଣ ? ସମସ୍ତଙ୍କୁ ଗୋଟି ଗୋଟି କରି ବିଦା କରିଦେଇ ରଖିଲା କେବଳ ଏଇ ଗୋଟିକୁ । ବଉଳାକୁ ଯିଏ ଗାଈ ବୋଲି ନ ଜାଣିଛି ସେ ସନାମା'ର କଥାବାର୍ତ୍ତାରୁ ବୁଝେ ବଉଳା ତାର ଝିଅ । ତା' କହିବାର ଭଙ୍ଗୀରୁ କେହି କେବେ ଠଉରାଇପାରିବ ନାହିଁ ଯେ, ବଉଳା ଗୋଟିଏ ଗାଈ । ସେ କହୁଥିଲେ, କେମିତି ତା ଦୁଃଖରେ ବଉଳା କାନ୍ଦେ । ଯାହା ପଚାରିଲେ ସେ କେମିତି ଉତ୍ତର ଦିଏ, ସେ କେଡ଼ େ ସୁକୁମାରୀ, ଏମିତି ଏମିତି କେତେ କଣ । ଏହିସବୁ କଥା କହୁଁ କହୁଁ ତା' ଆଖିରୁ ଲୁହ ଗଡ଼ିବାର ବି ଲୋକେ ଦେଖିଛନ୍ତି । ଏହି କାନ୍ଦିବା ଭିତରେ ସେ ଗାଇଯାଉଥିଲେ ବଉଳା ଜୀବନର ଦୁଃଖ । ତାର ଗୋଟିଏ ଛୁଆକୁ ବାଘ ଖାଇଗଲା, ଆଉ ଗୋଟିଏ ବି ଅଜଣା ରୋଗରେ ମରିଗଲା । ଗାଈଟିର ଦୁଃଖକଥା କହୁଥାନ୍ତି ସେ ନିଜର ଦୁଃଖକଥା ବଖାଣି ବସେ । ଏମିତି ଉଦାହରଣ ଯୋଡ଼ି କହେ ଯେ ଗାଈ ଜୀବନର କଥା ସମ୍ଭବତ ସନାମା' ଜୀବନର ଅଭାବ ଅନୁଭୂତି ଅନେକ ପରିମାଣରେ ଖାପ୍ ଖାଇଯାଏ । (ଏହି ସାମଞ୍ଜସ୍ୟଟା ବୁଢ଼ୀର ଏ ଗାଈକୁ ଭଲ ପାଇବାରୁ ସୃଷ୍ଟି ହୋଇଛି, କି ଏ ସାମଞ୍ଜସ୍ୟରୁ ଭଲ ପାଇବାଟା ଜନ୍ମିଛି, ଠିକ୍ କରିବା ବଡ଼ କଠିନ ।)

ବେଳେ ବେଳେ ବଉଳା ପାଖରେ ଖାଲି ଖାଲଟାରେ ବସି ସନାମା' ନିଜ ଜୀବନର କାହାଣୀସବୁ ବଖାଣି ଯାଉଥିଲେ । ସେ କହନ୍ତି,

ବଉଳା ଶୁଣେ । ମଝିରେ ବଉଳା ଅନୁଚ୍ଚ ସ୍ୱରରେ ଶବ୍ଦ କରେ । ସନାମା' ସମର୍ଥନ ପାଇ ମନେ ମନେ ବେଶ୍ ଖୁସି ହୁଏ ।

ବେଳେ ବେଳେ ହୁଏତ ସେଇ ବଉଳାର ଜୀବନ କଥା ତାହାର ପାଖରେ କହିଗଲେ । କହୁ କହୁ ବଉଳା ଯେତେବେଳେ ତା' ମୁହଁଟାକୁ ଆଣି ସନାମା'ର କାନ୍ଧ ଉପରେ ଥୋଇଦିଏ, ସନାମା' ବୁଝେ ବଉଳା ପ୍ରାଣର ବେଦନା । ସବୁ ବୁଝିଲା ପରି କହେ, "ତୋ କପାଳକୁ ମୋ କପାଳ ଲୋ ବଉଳା ! ଦିହେଁଯାକ ହୀନମାନ ।"

ଆଉ ଲୋକଙ୍କ ପରି ସନାମା'ର ଗାଁଗଣ୍ଡା ସହିତ ସମ୍ପର୍କ ନ ଥାଏ । ନିଜ ଧନ୍ଦାରେ ସେ ଲାଗିଥାଏ ସବୁବେଳେ । ପୁଅଟି ଜଣକର ଅଧା ମୂଲିଆ । ଆଉ ଅଧିକ ନିଜ ବୃଷରେ ଲାଗେ ବା କେଉଁଠିକେ ଉପୁରି ଯାଏ । କଷ୍ଟେ ମଷ୍ଟେ ଚଳିଯାନ୍ତି ଦିହେଁ । ପୁରେ ବୋଲି ଘର । କୋଠରୀ ବୋଲି ତହିଁରେ ମୋଟେ ଗୋଟିଏ । ସେଇ କୋଠରୀ ଭିତରେ ଶୁଏ ପୁଅଟି । ପିଣ୍ଡାରେ ଗୋଟିଏ କୋଣକୁ ଗାଈ ବନ୍ଧାହୁଏ । ସେଇ ଗାଈ ପାଖକୁ ଶୁଏ ସନାମା' ପିଣ୍ଡାର ଅନ୍ୟ ଗୋଟିଏ କୋଣରେ । ବାଛୁରୀ ରଖିବାପାଇଁ ସାନ ହୋଇ କୋଠରୀ ଖଣ୍ଡିଏ । ସେଇ ପିଣ୍ଡାତଳୁ ପୁଣି ହାଣ୍ଡିଶାଳ । ପଖାଳ ଶାଗ ଖାଇ ମାଆପୁଅ ଦୁହେଁ ଦୁଃଖେ ସୁଖେ କାଳ କଟାଇଦିଅନ୍ତି । ଗାଁଗଣ୍ଡାକୁ ନ ଯିବାର କାରଣ ବିଷୟରେ କେହି ପଚାରିଲେ ସନାମା' କହେ—"ହଁ--ଆଉ ବଳ ବଅସ ଆସୁଛି ଯେ ଯିବ ସାହି ବୁଲିବାପାଇଁ ।" ତାର ସମସ୍ତ ସମ୍ପର୍କ ବଉଳା ସହିତ । ବଉଳା ଓ ସନାମା', ସନାମା' ଓ ବଉଳା ଦୁହେଁ ଯେପରି ଦୁହିଁଙ୍କଠାରୁ ଏକବାରେ ଅଭିନ୍ନ !

ଦିନପରେ ଦିନ ଯାଏ । ହେଲେ ସବୁଦିନ ସମାନ ଯାଏନି —

ବଉଳାର ଲପିଲ୍ ପୋଛିଲା ପରି ଦେହ । ଝୁଲିଲା ଝୁଲିଲା ଗୁଳି କେବେ କାହାର ଆଖିରେ ଗଲା ନାହିଁ । ଈର୍ଷାରେ ଜର୍ଜର ହୋଇ ଦିନରାତି ସେମାନେ ଭାବିବାକୁ ଲଗିଲେ, କପରି ଏ ଗାଈ ଯିବ ସନାମା'ଠୁ । ସେଥିପାଇଁ କେତେ ଉପାୟ, କେତେ ବଗୁର ପଡ଼ିଲା, କେତେ ମନ୍ତ୍ରଣା-ସଭା ବସିଲା, କଳନା ନାହିଁ ତାର । (କାହିଁକି ଏ ଈର୍ଷା, କାହିଁକି ଏ ଅପକାର ଚିନ୍ତା, କ'ଣ ପାଇଁ ବା ଏସବୁ ମନ୍ତ୍ରଣା ? ମଣିଷର ପ୍ରକୃତି ଏପରି ବିଚିତ୍ର ଯେ ଖୋଜି ଖୋଜି ଏ ପ୍ରଶ୍ନର ଉତ୍ତର ମିଳେ ନାହିଁ । କେବଳ ବୈଚିତ୍ର୍ୟର ରହସ୍ୟରେ ବୁଡ଼ିରହିବା ହିଁ ସାରହୁଏ ।)

ଯୋଗକୁ ପୁଣି ବଦଳିଲା ବଉଳାର ପ୍ରକୃତି । (ଖାଇବାକୁ ନ ପାଇଲେ ସାଧୁ ବି ଅନେକ ସମୟରେ ଅସାଧୁ ହୋଇଯାଏ ବା ସାଧୁତାର ନୂଆ ସଂଜ୍ଞା ବାଛି ଯାହା ଅସାଧୁତା, ଯାହା ଅକରଣୀୟ ତାହାକୁ ହିଁ କରିବସେ) ଅନାବାଦୀ ଜମି ସବୁ ଚାଷଜମି ହୋଇ-ଯିବା ଯୋଗୁଁ ଗାଁରେ ଗୋଚରର ଅଭାବ । ପୁଣି ଯେ ପଡ଼ିଆ ଟିକକ ବା ଅଛି ସେଥିରେ ଘାସର ଅଭାବ । ଏଥିରେ ବଉଳାର ପେଟ ବା ପୂରିବ କପରି ! ଦେହରେ ଶକ୍ତି ଅଛି । ଦ୍ୱିଧା ନ କରି ସେ ବାଡ଼ ଭାଙ୍ଗିଲା—ଘେରା ବାଡ଼ରେ ପଶି ଖାଇଲା ଫସଲ । ଥରେ ଅଧେ କରୁଁ କରୁଁ ଏ କାମ ତା'ର ନିତିଦିନର ଏକ ଅଭ୍ୟାସରେ ପରିଣତ ହେଲା ।

ବେଳ ପଡ଼ିଲେ ଦାଉ ସାଧିବେ ବୋଲି ଗୁହିଁ ବସିଥିଲେ ଯେଉଁମାନେ, ସେହିମାନଙ୍କୁ ସୁଯୋଗ ଜୁଟିଗଲା । ସବୁବେଳେ ଗାଳି, ସବୁବେଳେ ବୋଲଣ; ଏପରିକି ଲୋକେ ସାମନାସାମନି ସନାମା'କୁ ସାବଧାନ କରିଦେଲେ, କେତେ ଧମକ ଚମକ ଦେଲେ ।

ସନାମା' କଲ ଡକଗଲ କଲ—ବଉଳା ଏପର କାମ କରବ ?—ସନାମା' ବଶ୍ୱାସ କରେନା । ପଡ଼ୋଶୀ ଗାଳଦେଲେ ସେ ଗାଳଦଏ । ଅଣ୍ଟାରେ ଲୁଗା ଗୁଡ଼େଇ କଳି କରେ । ଲୋକେ ଧମକ ଦେଲେ କହେ, "ହଁ—ଯା—ଯା – କଣ କରବ କର—" ଦନକର କଥା—

ସଞ୍ଜ ହୋଇଆସିଲ । ବଉଳାର ଫେରବା ସମୟ ନକଟେଇ ବସିଲ । ପଦାରେ ଆସି ଠିଆହୋଇ 'ବଉଳା' 'ବଉଳା' ଡାକ ପକାଇଲ ସନାମା' । ବଉଳା କାହିଁ ! ଅନାଇଁ ଅନାଇଁ ବୁଢ଼ୀ ଥକ-ପଡ଼ଲ । ତେବେ ବ ବଉଳା ଆସିଲ ନାହିଁ । ସମସ୍ତଙ୍କ ଗୋରୁ ଫେରଲେ ରାସ୍ତାରେ ଧୂଳ ଉଡ଼ାଇ, ସେମାନଙ୍କ ମେଳରେ କାଳେ ବା ରହଯାଇଥିବ । ଏଥିପାଇଁ ବୁଢ଼ୀ ଆହୁର ଜୋରରେ ଡାକବାକୁ ଲଗିଲ; ହେଲେ ବଉଳା କ ଆଉ ଆସେ ! ସଞ୍ଜ ହେଲ । ଅନ୍ଧାର ମାଡ଼ ଆସିଲ । ସନାମା' ଡାକ ଡାକ ଥକ ପଡ଼ଲ । ବଉଳା ଫେରଲ ନାହିଁ । କେତେ ଲୋକଙ୍କୁ ପଚାରଲ । ଯେଉଁମାନେ ନ ଜାଣନ୍ତ ସେମାନେ ତ ନାହିଁ କଲେ, ଆଉ ଯେଉଁମାନେ ଜାଣିଥିଲେ ସେମାନେ ବ କହଲେ, "ଆମେ ତ ଦେଖି ନାହୁଁ ।" କାନ୍ଦ କାନ୍ଦ ସନାମା' ସେହ ପଦାଣ୍ଟା ଉପରେ ସେମିତ ବସି ପଡ଼ଲ ।

'ବୋଉ ଏତେବେଳେ ଯାଏଁ ଗଲ କୁଆଡେ' କହ କହ ପୁଅ ଘର ଭତରୁ ବାହାରଆସିଲ ଖୋଜ ଖୋଜ । ଶେଷରେ ମା'କୁ ପଦାରେ ଦେଖିଲ । ଦଣ୍ଡକ ଭତରେ ସବୁ ହାଲଚାଲ ବୁଝି ନେଇ କହଲ, "ବୋଉ, ତୁ ଘରକୁ ଚାଲ, ମୁଁ ଯାଇଁ ଖୋଜଆଣିବ । ସେ କେଉଁଠି ଶୋଇଥିବ କ କାଞ୍ଜିଆହାଉଦାକୁ ଯାଇଥିବ । ତୁ ଏମିତ

ବ୍ୟସ୍ତ ହଉଚୁ କାହିଁକି !" ସନାମା' କହିଲା; "ସେ କାହିଁକି କେଉଁଠି ଶୋଇବ ! କିଏ କାହିଁକି ତା'କୁ ଖୁଆଡ଼ ଘରକୁ ନେବ !"—ଏମିତି ବାହୁନି ବାହୁନି ସେ କାନ୍ଦିବାକୁ ଲାଗିଲାବେଳେ ସନା ଏଣେତେଣେ ଖୋଜି ଶେଷରେ ସନ୍ଧାନ ପାଇଲା ଯେ କାଞ୍ଜିଆହାଉଦାରେ ଅଛି ବଉଳା । ସେହିକଥା ଆସି କହିଲାକ୍ଷଣି ବୁଢ଼ୀର ଛାତି ଆନନ୍ଦରେ କୁଣ୍ଢେମୋଟ ହୋଇଗଲା । ସନା ଗୋଟିରୁ ପଇସା ନେଇ ବଉଳାକୁ ମୁକୁଳାଇ ଆଣିଲା । ବଉଳା ପହଞ୍ଚିଲାକ୍ଷଣି ବୁଢ଼ୀ ଆନନ୍ଦରେ ଫାଟିଗଲା । ବଉଳାର ବେକକୁ କୁଣ୍ଢାଇଧରି ମୁହଁଟାକୁ ନିଜ କାନ୍ଧ ଉପରେ ରଖିଦେଇ କାନ୍ଦି କାନ୍ଦି କହିବାକୁ ଲାଗିଲା, "ଆହା, କିଏ ସେ ଏଡ଼େ ପରପଞ୍ଚ ରେ ! ତୋପରି ଜୀବନକୁ ନେଇ ସେ ଦେଲା ଖୁଆଡ଼ରେ ! ଧରମ କ'ଣ ଏହା ସହିବ !" ଏହାପରେ ବହିଚାଲିଲା ପାଟିରୁ ଅଜସ୍ର ଗାଳି ।

ଦିନକୁ ଦିନ କଥା ବଢ଼ିଲା ।

ଗୋଟାଏ ଲୋକ ବିରୋଧରେ ସହସ୍ର ଲୋକ । ସନାମା' ଆଉ ସହିପାରିଲା ନାହିଁ । ଶେଷରେ ଠିକ୍ କଲା, ଗାଈକୁ ବିକିଦେବ; ଗଞ୍ଜଣାରୁ ତ୍ରାହି ପାଇବ । ସନା ମନାକଲା, ମାତ୍ର ବୁଢ଼ୀର ଏକାଜିଦ୍ "ଗାଈର ମୁହଁ ଚାହିଁବି ନାହିଁ—ତାକୁ ବିକିବି—ବିକିବି ।"

ବୁଢ଼ୀ ନିଜେ ଗଲା ହାଟକୁ । ନିଜ ହାତରେ ଠନ୍ ଠନ୍ କରି ପଚାଶଟା ଟଙ୍କା ଗଣିନେଇ ନିଜ ହାତରେ ଦେଲା ଛୁଟି ।

"ଦକ୍କ ଯାଉଚ୍ଛି" କହିଲା ସନାମା' ।

ଗାଁବାଲା ଖୁସି ହେଲେ, ବଗୁଲିଆ ଠୋକାଏ ତାଳି ମାରିଲେ ।

କାହାରିକି କିଛି ନ କହି ସନାମା’ ଫେରିଲା ଘରକୁ । ଭାଙ୍ଗି ପଡ଼ିଲା ମନ, ଭାଙ୍ଗି ପଡ଼ିଲା ଦେହ, ଭାଙ୍ଗି ପଡ଼ିଲା ସବୁ କିଛି । ତଥାପି ଜୀଇ ରହିଲା ସେ ।

ଗାଁବାଲା ଆଉ ସନାମା’କୁ ଦେଖିଲେ ନାହିଁ କି ଦେଖିଲେ ନାହିଁ ବଉଲାକୁ ।

ମା’ ବୁଢ଼ୀକୁ ସାନ୍ତ୍ୱନା ଦେବା ସନା ପକ୍ଷରେ ଏକାନ୍ତ ଅସମ୍ଭବ ହୋଇପଡ଼ିଲା । କଣ କରିବ ସେ କିଛି ଠିକ୍ କରିପାରିଲା ନାହିଁ । ଏହା ଉପରକୁ ପୁଣି ନିଜର ଭବିଷ୍ୟତ ଚିନ୍ତା—“ପେଟକୁ ଗଣ୍ଡାଏ ଖାଇବ—ଜୀବନକୁ ସରସ ସୁନ୍ଦର କରିବ—ବଞ୍ଚିବ ସେ । ଭାବି ଭାବି ଥଳକୂଳ ପାଇଲା ନାହିଁ—

ଏଇମିତି ବିତିଗଲା ଆଠ ଦିନ ।

ନଅ ଦିନ ରାତି ।

ପାହାନ୍ତାକୁ ଢ । ଚମକି ଉଠିଲା ଯେତେବେଳେ ସନାମା’ ଧଡ଼ପଡ଼ ଉଠିପଡ଼ି ଡାକିଲା, “ବଉଲା ଲୋ ବଉଲା···” ସନା ଉଠିପଡ଼ିବା ବେଳକୁ ମା’ ଡାକି ଡାକି ଦୁଆର ମୁହଁରେ ହାଜର ।

ସନା କହିଲା, “ବୋଉ ଲୋ, ବଉଳା ବଉଳା କାହିଁକି ହଉଚୁ ! ବଉଳାକୁ ପରା ସେଦିନ ନିଜେ ଯାଇ ବିକିଦେଇ ଆସିଲୁ ହାଟରେ ?”

ପୁଅର କଥା କାନକୁ ନ ନେଇ ସନାମା’ ପୁଣି ଡାକିବାକୁ ଲାଗିଲା···“ବଉଳା ଲୋ ବଉ···”

ଜହ୍ନ ପଡ଼ୁଥାଏ ବେଶ୍ ସୁନ୍ଦର । ପଶ୍ଚିମ ଦିଗକୁ ଦୂରରେ—ଖୁବ୍ ଦୂରରେ ଭାସୁଥାଏ ଖଣ୍ଡେ କଳା ବାଦଲ୍—

ସନାମା' ଚାଲିଥାଏ ଡାକ ଡାକ "ବଉଲା, ଲୋ ବଉଲା, ବଉଲା –" ମଣିଷର ଡାକ ଜହ୍ନର ଜୋଛନା ଭିତରେ ଯେପରି ଆଶ୍ରୟ ନ ପାଇ ମିଶିମିଶିକା ସେଇ କଳା ବଉଦ ସାଙ୍ଗରେ ଚାଲିଯାଉଥାଏ –

ଚାଲିଥାଏ ସନାମା'—ଏକମୁହାଁ ହୋଇ – ଏକା ନିଶ୍ୱାସରେ— ଆଉ ପଛେ ପଛେ ତାର ଚାଲିଥାଏ ସନା ।

ଯେଉଁଠି ନଇତ ଛୁଡ଼ା ହୋଇ ଡାକେ ସେଇଠି ସେ ଡ଼ାକ ଛାଡ଼ିଲା, "ବଉଲା ଲୋ ବଉଲା···ବଉଲା ଲୋ···"

ପଡ଼ିଆ ସେପାଖରୁ ଭାସିଆସିଲା ବଉଲାର ଶବ୍ଦ ।

ସନା ଆଶ୍ଚର୍ଯ୍ୟ ହେଲା ।

"ଆ ଆ – ଆ – ବଉଲା ଲୋ ବଉଲା –" ସନାମା' ଡ଼ାକି ଛାଡ଼ିଲା···

ସନାତନ ଦେଖିଲା, ବଉଲା ଧାଇଁ ଧାଇଁ ଆସୁଛି ।

ବଉଲା ପାଖ ହୋଇ ଆସିଲା ।

ସନାମା' ଡ଼ାକିଲା, "ବଉଲା ଲୋ ବଉଲା ।" ଆଗକୁ ଧାଇଁ ଯାଉଁ ଯାଉଁ ଗଛ କାଟିଲା ପରି ଭୁସ୍‌କରି ଲେଉଟି ପଡ଼ିଲା ତଳେ । ମଉଳା କଣ୍ଠରେ ଶୁଭିଲା–'ବଉଲା—ଲୋ"

ବଉଳା ଆସି ବୁଢ଼ୀର ଦେହ ମୁଣ୍ଡରେ ସେଇ ଲମ୍ବା ମୁହଁଟାକୁ ଘଷିବାକୁ ଲାଗିଲା । ହେଲେ ବଉଳାର ବେକକୁ ନିଜ ଛାତି ଉପରେ ଆଉଜେଇ ନେବା ଲାଗି ସନାମା'ର ହାତ ଉଠି ପାରିଲା ନାହିଁ ।

---

# ଆକାଶଦୀପ

[ ଶ୍ରୀ ରବୀନ୍ଦ୍ରନାରାୟଣ ମିଶ୍ର ]

ଧୀରେ ଧୀରେ ଚକୋଲେଟ ରଙ୍ଗର ମଟରଟି ବଙ୍ଗଳା ଫାଟକ ପାର ହୋଇଗଲା । ସୁରଭି ଦୁଆର ମୁହଁରୁ ଫେରି ଆସିଲା । ସୋଫା ଉପରେ ଅନ୍ୟମନସ୍କ ଭାବରେ ବସି ପଡ଼ିଲା ସୁରଭି । ଆଗରେ ଟଙ୍ଗା ହୋଇଛି ସ୍ୱାମୀଙ୍କର ଫଟୋ । ତା ବାହାଘର-ବେଳେ ଏ ଫଟୋଟି ଉଠିଥିଲା । ସେଇ କେତେ ବର୍ଷ ତଳର ସୁରଭି ଆଜି ହୋଇଯାଇଛି ବୋଧହୁଏ । ତାର ଜୀବନଧାରା ଆଜି ଆଉ ଗୋଟିଏ ଜୀବନଧାରା ସହିତ ସମାନ୍ତରାଳ ଭାବରେ ଗତିକରି ଚାଲିଛି ।

କାଲି ପରି ଲାଗୁଛି । ଏଇ ସତେ ଯେମିତି କାଲି ତାଙ୍କ ବାପାଙ୍କ କୋଠାରେ ବାହାଘରର ମହୋତ୍ସବ ବଢ଼ିଥିଲା । ସେ ଏଇ ବଙ୍ଗଳାକୁ ଆସିଥିଲା ଜିଲା ମାଜିଷ୍ଟ୍ରେଟ ଚନ୍ଦ୍ରକାନ୍ତଙ୍କ ସହଧର୍ମିଣୀ ହୋଇ ।

ଚାକରାଣୀ ପଶିଆସିଲା ଘର ଭିତରକୁ, ସୁରଭିର ଚିନ୍ତା-ଧାରାରେ ବାଧା ପଡ଼ିଲା । ଧୀରେ ଧୀରେ ସେ କହିଲା,"ମା, ବାବୁ ଯେଉଁ ଲଞ୍ଚରେ ଚଢ଼ି ବନ୍ୟା ଦେଖିବାକୁ ଯାଇଥିଲେ, ସେ ଲଞ୍ଚର ଡ୍ରାଇଭର ତୁମକୁ କାହିଁକି ଦେଖିବାକୁ ଚାହୁଁଛି ମା, ସେ ବାହାରେ ଅପେକ୍ଷା କରୁଛି ।"

ବିରକ୍ତ ହୋଇ ଉଠିଲି ସୁରଭି । ପ୍ରତିଦିନ ଚପରାଶୀଠାରୁ ଆରମ୍ଭକରି କଚେରୀର ବଡ଼ ବଡ଼ ହାକିମପର୍ଯ୍ୟନ୍ତ ସବୁଦିନେ ତାର ସରଳତାର ସୁଯୋଗ ନେଇ ବଙ୍ଗଳାକୁ ଦଉଡ଼ ଆସନ୍ତି । ଆଉ ପାଇଥିବା ଦଣ୍ଡରୁ ଟିକିଏ ରିଆତି ପାଇବାକୁ ତା' ପାଖରେ କେତେ ଅନୁନୟ ବିନୟ କରନ୍ତି । ସୁରଭିର ସରଳ ହୃଦୟଟି ଦୟାରେ ତରଳିଯାଏ । ସେ ଚନ୍ଦ୍ରକାନ୍ତଙ୍କୁ ଅନୁରୋଧ କରି ଏମାନଙ୍କୁ ରକ୍ଷାକରେ । ଗୋଟିଏ ଅଧେ ହେଲେ ଅଲଗା କଥା । ପ୍ରତିଦିନ ଏଇଥିରୁ ଗୁଡ଼ିଏ ରଫା କରି ସୁରଭି ବିରକ୍ତ ହୋଇପଡ଼ିଲାଣି । ଗସ୍ତରେ ଯାଇଥିଲାବେଳେ ବୋଧହୁଏ କର୍ତ୍ତବ୍ୟରେ ଅବହେଳା କରିଥିବ । ଆଉ ତାର ପ୍ରତିକାର ପାଇଁ ସ୍ୱାମୀ ଦଣ୍ଡବିଧାନ କରିଥିବେ । ସେଇଥିରୁ ଟିକିଏ ରିଆତି ପାଇବା ପାଇଁ ସେ ଦଉଡ଼ି ଆସିଥିବ । ରଡ଼ିଉଠି ସୁରଭି କହିଦେଲି· "ଯା କହିଦେବୁ, ମୋର ଏହିକ୍ଷଣି ଶୁଣିବାକୁ ବେଳ ନାହିଁ ।"

ଫେରିଗଲି ଚାକରାଣୀ, ସୁରଭି ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିଲି । ଅଳସ ଆଖି ତାର ମୁଦିହୋଇ ଆସୁଥିଲି । ଚନ୍ଦ୍ରକାନ୍ତଙ୍କ ଅନୁପସ୍ଥିତି ତାକୁ ଖିଷଣ ଆଘାତ ଦିଏ—ଏଇ ଅଫିସ ବେଳଟା ଭିତରେ ।

—"ମା" ।

"କିଏ ?"

ଚମକିପଡ଼ି ଚାହିଁଲି ସୁରଭି । ସେଇ ଚାକରାଣୀ ଆସିଛି । କ'ଣ ଗୋଟାଏ କହିବାପାଇଁ ଆସିଥିଲେ ହେଁ ଭୟରେ ତା' ପାଟି ଫିଟିନାହିଁ । ସୁରଭି ଟିକିଏ ନରମିଗଲି । ପଚାରିଲି, "କ'ଣ କହୁଛୁ !"—"ସେଇ ଲଞ୍ଚ ଡ୍ରାଇଭର ମା, ମୁଁ ତାକୁ ମନାକଲିରୁ

ସେ କହୁଛି ଯେ ତାର କିଛି ଦରକାର ନାହିଁ; କ'ଣ ଗୋଟାଏ ଚିଠି ଆଣିଛି ମା'ଙ୍କୁ ଦେଇ ସେ ଚାଲିଯିବ ।"

ଆଶ୍ଚର୍ଯ୍ୟରେ ଚାହିଁ ରହିଲା ସୁରଭି । ଲଞ୍ଚ ଡ୍ରାଇଭର ତା'ପାଖକୁ କି ଚିଠି ଆଣିଛି ! ଚାକରାଣୀକୁ 'ଚାଲ୍' କହି ସୁରଭି ତା ପଛେ ପଛେ ଗଲା । ବଙ୍ଗଳା-ପାହାଚ ଉପରେ ବୁଢ଼ା ଡ୍ରାଇଭର ବସିଥିଲା । ଦେଖୁ ଦେଖୁ ଉଠିପଡ଼ି ମୁଣ୍ଡିଆଟିଏ ପକାଇ ଛିଣ୍ଡା ଜାମାର ପକେଟ ଭିତରୁ ସେ ଚିଠିଟି ବାହାରକଲା ।

"—ମା, ବାବୁଙ୍କ ସାଙ୍ଗରେ ଧୋଇଆ ଜାଗାକୁ ବଡ଼ି ଭୋରରେ ଯାଇଥିଲି । ହରିପୁର ଗାଁରେ ବାବୁ କ୍ୟାମ୍ପ ପକାଇଥିବା-ବେଳେ ମତେ ଜଣେ ଗାଁବାଲା ଡାକିନେଲା ଗୋଟାଏ ଘରକୁ । ଘରର ତିନି କାନ୍ଥ ଖସିପଡ଼ିଥାଏ । ବଢ଼ି ପାଣିରେ ଘର ତଳ ସନ୍ତେଇ ଯାଇଥାଏ । ସେଇ ଘରୁ ଜଣେ ବୋହୂ ମତେ ଏ ଚିଠି ଦେଲା ଆପଣଙ୍କୁ ଦେବାପାଇଁ ।

—"ମତେ ଦେବାପାଇଁ ଦେଲା ?"

—"ହଁ ମା, ମତେ ପଚାରିଲା, 'ତୁ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଘର ଦେଖିଛୁ ?' ମୁଁ ହଁ କହିବାରୁ ସେ ମତେ ଏ ଚିଠିଟି ବଢ଼େଇଦେଇ କହିଲା, 'ତାଙ୍କ ସ୍ତ୍ରୀ ସୁରୁକୁ ଏ ଚିଠିଟି ଦେଇଦେବୁ ।"

—"ସେ ମତେ ରାଣ ନିୟମ ଦେଇ କହିଥିଲା—ଏ ଚିଠି ଆପଣଙ୍କ ହାତକୁ ଦେବାପାଇଁ, ତେଣୁ ଯେମିତି ଆସିଥିଲି । ରାଗିବେନି ମା, ମୋତେ ମାଫ୍ କରିବେ ।"

ଓଲଟିହୋଇ ବୁଢ଼ା ଡ୍ରାଇଭର ଚାଲିଗଲା । ସନ୍ଦେହ ଜାଲରେ ଘୂରି ବୁଲିଲା ସୁରଭିର ମନ । ତରତର ହୋଇ ଶୋଇବା

ଘରକୁ ଫେରିଆସିଲା ସୁରଭି । ଚିଠିଟାର ଶେଷକୁ ଚାହିଁଲା, "ରେଣୁ" ଲେଖାଅଛି । ସନ୍ଦେହର ଗ୍ରନ୍ଥି ଉନ୍ମୋଚିତ ହୋଇଗଲା । ସ୍କୁଲ ସଙ୍ଗିନୀ ରେଣୁ ତାହାହେଲେ ଏ ଚିଠି ଦେଇଛି । ରେଣୁ ସେଠାକୁ କେମିତି ଗଲା ! ଚିଠିଟିକୁ ପଢ଼ିଗଲା ସୁରଭି ।

'ସୁରୁ ଲୋ,

ମୋର ସ୍ନେହ ନେବୁ । ମୋ କଥା ତୋର ଆଉ ମନେ ଥିବ କି ନାହିଁ ଜାଣିପାରୁ ନାହିଁ । ହେଲେ ଏ ଚିଠିଟି ଠିକଏ ମୂଳରୁ ଶେଷଯାଏ ପଢ଼ିବୁ । ତେବେ ଯାଇ ସବୁ ଜାଣିପାରିବୁ ।

ସ୍କୁଲ କଥା ତୋର ପୂରା ମନେ ନ ଥିଲେ ବି ଝାପ୍‌ସା ହୋଇ ମନେଥିବ । ମନ ଗହନରୁ ପୂରା ପୋଛି ହୋଇଯାଇ ନ ଥିବ । ମନେ ଥିବ, କ୍ଲାସରେ ଯେଉଁ ରେଣୁକୁ ତୁ ଦିନେ ନ ଦେଖିଲେ ପାଗଳୀ ହୋଇଯାଉଥିଲୁ, ମୁଁ ସେଇ ରେଣୁ । ଯାହାକୁ ତୋର ପାଖରେ ବସିବାକୁ ଦେଇ କେତେ ବଡ଼ଲୋକ ଝିଅଙ୍କ ମରମଜ୍ୱାଳା ଟାହ୍ୟାଟାପରାରୁ ରକ୍ଷା କରୁଥିଲୁ, ମୁଁ ସେହି ତୋର ରେଣୁ । ମନେଥିବ ତୋର—ସେଦିନ ଯେତେବେଳେ ଶୁଭ୍ରା ହାତରୁ ମୁଦିଟିକୁ ମୋ ହାତର କେଉଁ ଆଙ୍ଗୁଠିକୁ ହେଉଛି ଦେଖିବା ବୋଲି କହି ମୁଁ ନେଇ ଆସିଥିଲି, ଆଉ ଶୁଭ୍ରା ସେତେବେଳେ କହିଲା, "ପର ମୁଦି ପରଖିଲେ ମନର ସାଧ ମେଣ୍ଟିଯାଏନା, ପର ଲୁଗା ପିନ୍ଧି ହାଟକୁ ଗଲେ ଶୋଭା ପାଏନି । ତୋର ତ ନିଜର ମୁଦିଟିଏ ପିନ୍ଧିବାର ଶକ୍ତି ନାହିଁ ରେଣୁ, ପରମୁଦି ପରଖି ଦେଖିବୁ କିଆଁ ?" ତୁ ସେତେବେଳେ ଚୁପ୍ ହେଲୁନାହିଁ । ତାର ମୁହଁରେ ତୁ ଜବାବ ଦେଲୁ, "ଶୁଭ୍ରା, ରେଣୁ ଗରିବ ବୋଲି ତୁ ଜାଣି ସୁଦ୍ଧା କଟାକ୍ଷ'ରେ ଚୁନ ଦେଉଛୁ ? ମୁଦିଟିଏ ପିନ୍ଧିଲେ ହୃଦୟର ପରିବର୍ତ୍ତନ ହୋଇଯାଏ ନାହିଁ । ରେଣୁର ହୃଦୟ ଅଛି । ତୋ'ଭଳି ପଥର

ବସା ମୁଦି ନ ଥାଇପାରେ । ମାତ୍ର ତୁ ହୃଦୟହୀନା ।" ସେହିଦିନୁଁ ସ୍କୁଲରେ ତା ସାଙ୍ଗରେ ତୋର ମନର ମେଳ ରହିଲା ନାହିଁ । ଶୁଭ୍ରା ଆଉ ତା ଭଳି କେତେ ଝିଅଙ୍କୁ ଅପମାନ ଦେଇ ମୋ ମୁହଁରେ ହସ ଖେଳାଇବାକୁ ତା' ଆବେଦନ ତୁ ମୋ ହାତରେ ଠିକ୍ ସେମିତିଆ ଗୋଟାଏ ନାଲି ପଥରବସା ମୁଦି ପିନ୍ଧାଇଦେଇଥିଲୁ । ସାରା ଜୀବନପାଇଁ ତା ସହିତ ସମ୍ପର୍କ ତୁଟାଇଦେଲୁ । କେବଳ ମୋରପାଇଁ ସିନା ତୁ ଶୁଭ୍ରା ଭଳି କେତେ ଝିଅଙ୍କ ସାଙ୍ଗ ହୋଇ-ପାରିଲୁ ନାହିଁ ।

ସୁରୁ, ତୋର ମନେଥିବ । ତୋପାଇଁ ଯାହା ତୁମ ବାପା ଆଣନ୍ତି, ତୁ ମୋ'ପାଇଁ ବି ଅଲଗକରି ଗୋଟିଏ ଗୋଟିଏ ଘେନିଆସୁ । ଖେଳକୁଟି ବେଳେ ତୋପାଇଁ ଆସିଥିବା ଜଳଖିଆ ବି ସମାନ ଦି'ଭାଗ ହୁଏ । ମୁଁ ଯେତେ ମନାକଲେ ବି ତୁ ତୋର ଦରଦୀ କଣ୍ଠରେ କହୁ, 'ରେଣୁ, ତୁ ମତେ କ'ଣ ନିଜର ବୋଲି ଭାବୁନୁ ? ମୁଁ କଣ ତୋର କେହି ନୁହେଁ ?' ତୋ ଆଖିରେ ଲୁହ ମୁଁ ସହିପାରେ ନାହିଁ । ତୋ ଇଚ୍ଛାରେ ବାଧା ଦିଏନି । ତୋରପାଇଁ ମୁଣ୍ଡକଣ୍ଟାଠୁ ଆରମ୍ଭ କରି ଶାଢ଼ୀପର୍ଯ୍ୟନ୍ତ ମୋର କେଉଁଥିରେ ବି ଅଭାବ ନ ଥାଏ । ମୋଟରେ କହିଲେ ତୁ ଯେମିତି, ମତେ ଠିକ୍ ସେମିତି କରି ସବୁରି ଆଗରେ ଦେଖାଇବାକୁ ଚେଷ୍ଟା କରୁଥିଲୁ ତୁ—

ସ୍କୁଲଦିନଗୁଡ଼ିକ କୌଣସିମତେ ଗଡ଼ିଗଲା । ତା'ପରେ କଲେଜ ଗଲୁ ତୁ । ଆଉ ତୋର ପ୍ରାଣର ନିରମାଖୀ ରେଣୁ ବାହାହେଲା ଏଇ ହରିପୁର ସ୍କୁଲର ପ୍ରଧାନ ଶିକ୍ଷକ ସୂର୍ଯ୍ୟକାନ୍ତଙ୍କୁ । କଲେଜ ଜୀବନରେ ଧନୀପୁତ୍ର ଚନ୍ଦ୍ରକାନ୍ତଙ୍କ ଗୃହପତ୍ନୀ ହୋଇଗଲୁ ତୁ । ସେଦିନ ତୁମ ଦୁହିଁଙ୍କ ଫଟୋ ଖବରକାଗଜରେ ଦେଖିବାକୁ ପାଇଥିଲି ସୁରୁ ! ସେଦିନ ତୋ ଫଟୋ ଦେଖି ମନେମନେ କେତେ

ଯେ ଆନନ୍ଦ ଅନୁଭବ କରିଥିଲି, ତାର ଠିକଣା ନାହିଁ—ଫଟୋରେ ତୋ ମୁହଁରେ ହସ ଉକୁଟି ଉଠୁଥିଲେ ବି ତୁ ତାକୁ କୌଣସିମତେ ଲୁଚେଇ ଦେଇଥିଲୁ। ନୁହେଁ ଲୋ ?

ବିବାହର ଦୁଇ ବର୍ଷ ପରେ କୋଳରେ ମୋର ଗୋଟିଏ ସନ୍ତାନ ଲାଭ କଲି; ମାତ୍ର ଭାଗ୍ୟଚକ୍ର ଆଉ ସମତଳ ପଥ ଉପରେ ଗଡ଼ିଗଲା ନାହିଁ। ଦୁଃଖର ପଥର ଭାଗ୍ୟଚକ୍ରକୁ ମୋର ଦୋହଲାଇ ଦେଲା। ତିନି ବରଷ ନ ପୂରୁଣୁ ସେ ଅନ୍ଧ ହୋଇଗଲେ । ମଣିଷ ଜୀବନର ଦୁଇଟି ଅମୂଲ୍ୟ ସମ୍ପଦ ତାଙ୍କର ନଷ୍ଟ ହୋଇଗଲା। ଘରେଇ ସ୍କୁଲରୁ ତାଙ୍କୁ ବିଦାୟ ନେବାକୁ ହେଲା। ଗୋଟିଏ ମାସରେ ଦୁଃଖ-କଷ୍ଟର ସଂସାର ଠେଲିପଡ଼ିଲା। ମୋ ଜୀବନର ଆଉ ଏକ ଆଶ୍ରୟ ବାପା ଆଉ ଦୁଇ ଭାଇ ନିଷ୍ଠୁରର ଚକ ତଳେ ଚାପିହୋଇଗଲେ। ସେ ମୋ ଅଜ୍ଞାତରେ କଟକ ଚାଲିଗଲେ ଆଖି ଭଲକରିବା ପାଇଁ। ଦିନେ ସକାଳେ ତାଙ୍କ ଚିଠିରୁ ଜାଣିଲି ସେ ଘରଛାଡ଼ି ଚାଲିଯାଇଛନ୍ତି। ସେଥିରେ ଲେଖାଅଛି, 'ରେଣୁ ଲୋ, ଆଖି ଦୁଇଟି ନ ଥିବାରୁ ମୁଁ ତୁମ୍ଭମାନଙ୍କର କୌଣସି କାମରେ ଲାଗିପାରିବି ନାହିଁ। ଆଖି ଭଲ କରିବାକୁ ମୁଁ ଯାଉଛି। ଭଲ ହେଲେ ପୁଣି ଫେରିଆସିବି।'

ସୁରୁ, ମୋ କପାଳର ସିନ୍ଦୂରଗାର ମଉଳିପଡ଼ିଲା, କେଉଁ ଏକ ଧନୀ ଯୁବକଙ୍କ ମଟର ଚକ ତଳେ ଚାପିହୋଇ ତାଙ୍କ ଜୀବନ-ଦୀପ ଲିଭିଗଲା, ଆଉ ତୋର ଆଦରର ରେଣୁ ହାତରୁ ପତିବ୍ରତାର ସନ୍ତକ ସ୍ୱରୂପ କାଚଗୁଡ଼ିକ କାଢି ଦିଆଗଲା। ଆଉ ତା'ର ସାଥିରେ ତୋ ଦେଇଥିବା କଙ୍କଣ ବି କଢ଼ା ହୋଇଗଲା।

ଏତିକିରେ ବି ଭାଗ୍ୟର ଖେଳ ସରିଲା ନାହିଁ—ମା ଆଉ ପୁଅ କୌଣସିମତେ ଗୁଜରାଣ ମେଣ୍ଟାଉଥିଲୁ, ତାଙ୍କ ବାପାଙ୍କର

ଦୁଇ ମାଣ ନଈକୂଳ ଜମିରୁ । ଆଜକୁ ଛଅ ବର୍ଷ ହେବ ପର ଘରେ କାମ କରି ତୋରି ସ୍ନେହର ରେଣୁ ତାର ପାଞ୍ଚ ବରଷର ପର ଲାଗି ନ ଥିବା ଚଢ଼େଇ ଛୁଆକୁ ନେଇ ସଂସାର ଚଳାଉଥିଲା ।

ଏବର୍ଷର ପ୍ରଥମ ବଢ଼ିରେ ଆମ ଜମିସବୁ ଧୋଇହୋଇଗଲା । ଦ୍ୱିତୀୟ ବଢ଼ିରେ ଆମର ସମ୍ବଳ ଦୁଇ ମାଣ ଜମି ଉପରେ ବାଲିଚର ମାଡ଼ିଗଲା ସୁରୁ ! ଯାହା ଘରର କାମ କରି ପେଟ ପୋଷୁଥିଲି, ସେ ବି ଛଅ କୁଆଡ଼େ ଭାସିଗଲେ । ଗାଁରେ ଆଉ ଗୋଟିଏ ବୋଲି ଘର ନାହିଁ । ମୋ କୁଡ଼ିଆର ତିନୋଟି କାନ୍ଥ ବି ପଡ଼ିଯାଇଛି ।

କାଲି ମୋ ଧନ ଦଉଡ଼ି ଆସି କହିଲା, 'ବୋଉ ଚିହ୍ନିଲୁ !' ଛିଣ୍ଡାକନା ବଦଳରେ ତା ଦେହରେ ଦାମିକା କନାର ପୋଷାକ ଥିଲା । ମୋ ପ୍ରଶ୍ନର ଉତ୍ତରରେ ଦୁଃଖୀଧନ କହିଲା, ଜିଲ୍ଲା ମାଜିଷ୍ଟ୍ରର ହେଇଛନ୍ତି—ବୋଉ, ଭାରି ଭଲଲୋକ । ମାଷ୍ଟ୍ରେ ଯେମିତି କହିଲେ ମୋର ବାପା ନାହିଁ, ଜମି ବାଲିଚର ମାଡ଼ିଯାଇଛି ବୋଲି, ସେମିତି ମୋତେ ଧରି କୁଣ୍ଢେଇ ପକାଇଲେ, ଆଉ ଏ ଜାମା ପିନ୍ଧେଇ ଦେଲେ । ମାଷ୍ଟ୍ରଙ୍କଠାରୁ ମୁଁ ଭଲ ପଢ଼ୁଛି ଶୁଣି ମତେ ଏ ବହି ଦେଲେ ।' ବହି ଉପରେ ଗୁଡ଼ାହୋଇଥିବା ଫିତା ଉପରେ ଥିବା କାଗଜରୁ ଜାଣିଲି, ଚନ୍ଦ୍ରକାନ୍ତ ଆଜି ଜିଲ୍ଲା ମାଜିଷ୍ଟ୍ରେଟ । ମୋ ମନ କୁଣ୍ଢେମୋଟ ହୋଇଗଲା ।

ଦେଖିବାକୁ ମନ ମୋର ଉଚ୍ଛନ୍ନ ହେଲେ ବି ଏ ଛିଣ୍ଡା ପିନ୍ଧି ଅଲଜୁକି ଭାବରେ ଯାଇପାରିଲିନି । ତାଙ୍କର ବି ବେଳ ନ ଥିବ ଏ ଦୁଃଖିନୀର ଦୁଃଖ ଶୁଣିବାକୁ । ହେଲେ ସୁରୁ,ତାଙ୍କୁ ଦେଖି ମୋର ତତେ ଦେଖିବାକୁ ଭାରି ମନହେଉଛି । ତୁ କ'ଣ ସତେ ମତେ ଚିହ୍ନିପାରିବୁ ? ନା, ତୁ ଭୁଲିଯିବୁଣି; ମାତ୍ର ତୋର ପ୍ରାଣର ରେଣୁ

ଆଜି ସ୍ୱାନମାସି, କୁଖୁରା ବାଳ, ଛିଣ୍ଡା କନା, ଆଉ ଅମଙ୍ଗଳ ହାତ ନେଇ ତୋ ପାଖକୁ ଯାଇପାରୁନି । ହେଲେ ତତେ ଆଜି ହାତ ପାତୁଛି ସୁରୁ, ଦୁଇ ବରଷ ହେଲା ପାଳି ଆସୁଥିବା କାର୍ତ୍ତିକ ଦିବସ ଯେମିତି ଏ ବର୍ଷ ବନ୍ଦ ହୋଇ ନ ଯାଏ । ମୋ ଆକାଶଦୀପ ଯେମିତି ବଉଁଶ ଉପରେ ଏ ବର୍ଷ ଜଳେ । ସୁରୁ ଲୋ, ତୋ ପାଖରେ ତୋର ପ୍ରାଣର ରେଣୁର ଏତିକି ପ୍ରାର୍ଥନା—ମୋ ପାଳନା ଯେମିତି ଏ ବରଷ ବନ୍ଦ ହୋଇ ନ ଯାଏ । ତାଙ୍କ ଆତ୍ମା ଯେମିତି ଶାନ୍ତି ପାଏ । ଇତି ।

—ତୋର
'ରେଣୁ'

ଲୁହ ପଡ଼ି ଅସ୍ପଷ୍ଟ ହୋଇଥିବା ଚିଠିଟି ସୁରଭିର ଲୁହରେ ଆହୁରି ଅସ୍ପଷ୍ଟ ହୋଇଉଠିଲା । ଲୁହଧାର ଗଡ଼ି ଆସୁଥିଲା ତାର ଚିବୁକ ଦେଇ । ନିଜକୁ ସାନ୍ତ୍ୱନା ଦେଇପାରୁ ନ ଥିଲା ।

—"ସୁରୁ, ସୁରୁ, ଆଜି ମୋର ଗୋଟାଏ ବଡ଼ ଦିନ ସୁରୁ", ପଶି ଆସିଲେ ଚନ୍ଦ୍ରକାନ୍ତ ।

ସୁରୁ ଲୁହବୋଳା ମୁହଁଟି ପୋଛିଦେଇ ତାଙ୍କୁ ଚାହିଁରହିଲା । ହାତରୁ ଚିଠିଟି କେତେବେଳେ ଖସିପଡ଼ିଲା ତାହାର ଖିଆଲ ନାହିଁ । ସୁରୁର ଏ ଅବସ୍ଥା ଚନ୍ଦ୍ରକାନ୍ତଙ୍କୁ ବ୍ୟତିବ୍ୟସ୍ତ କରିଦେଲା । ଚନ୍ଦ୍ରକାନ୍ତ ପଚାରିଲେ, 'ତୁମେ ଏତେ ଶୁଖିଲା ଦିଶୁଛ କାହିଁକି ? କ'ଣ ହେଲା ?"

—"ନା କିଛି ହୋଇ ନାହିଁ । କ'ଣ କହୁଥିଲ, କହୁନା ?" ପଚାରିଲା ସୁରୁ ।

"ଆଜି ମୋର ଡିଗ୍ରୀ ହେଲା ମକଦ୍ଦମାରେ ।"

—"କୋଉ ମକଦ୍ଦମା ?"

"ଯେଉଁ ମକଦ୍ଦମା ଉପରେ ମୋର ଜିଲ୍ଲା ମାଜିଷ୍ଟ୍ରେଟ ପଦର ମର୍ଯ୍ୟାଦା ନିର୍ଭର କରୁଥିଲା, ମୋର ସେଇ ମକଦ୍ଦମାରେ ଡିଗ୍ରୀ ହୋଇଛି ସୁରୁ, ଆଜି ବଡ ସୁଦିନ ସୁରୁ ! ଆଜି ମୋର ସୁଦିନ ।"

"କେଉଁ ମକଦ୍ଦମା, ତୁମ ନାଁରେ ମକଦ୍ଦମା ?"

—ହଁ ସୁରୁ ! ମୋ ନାଁରେ ମକଦ୍ଦମା । ଆଜିକୁ ପ୍ରାୟ ସାତ ବର୍ଷ ତଳର କଥା । କଲେଜକୁ ବାପାଙ୍କ ଗାଡ଼ି ନେଇ ଖୁବ୍ ଜୋର୍‌ରେ ଯାଉଥିଲି । ଅଗ୍ନିକ ଭବରେ ମଙ୍ଗଳାବାଗ ଛକରେ ଗୋଟିଏ ଦୁର୍ଘଟଣା ଘଟିଲା । ଜଣେ ଲୋକ ମୋ ମଟରଚକ ତଳେ ଚପିହୋଇଗଲା । ଖବର ନେବାରୁ ଜାଣିଲି, ସେ ଲୋକଟା ଅନ୍ଧ, ହରିପୁର ସ୍କୁଲର ପ୍ରଧାନ ଶିକ୍ଷକ । ପୋଲିସ ତା'ପକ୍ଷରୁ ମୋ ନାଁରେ ମକଦ୍ଦମା କରିଥିଲା । ଯାହାହେଉ ଆଜି ଡ଼ିଗ୍ରୀ ହୋଇଗଲା ସେ ମକଦ୍ଦମାରେ ।"

ସୁରଭିର ବନ୍ଦ ହୋଇଯାଇଥିବା ଲୁହଧାର ପୁଣି ବହିବାରେ ଲାଗିଲା । ଚନ୍ଦ୍ରକାନ୍ତ କିଛି ବୁଝିପାରିଲେ ନାହିଁ । ବାରମ୍ବାର ପ୍ରଶ୍ନ କରିବାରୁ ସୁରଭି ତାଙ୍କ ଆଡ଼କୁ ଖଟ ଉପରେ ପଡ଼ିଥିବା ଚିଠିଟିକୁ ଠାରି ଦେଖାଇଦେଲା ।

ଚିଠିଟିକୁ ଉଠାଇନେଇ ପଢ଼ିଗଲେ ଚନ୍ଦ୍ରକାନ୍ତ । ପଢ଼ିସାରି ଲୁହ ଛଳଛଳ ଆଖିରେ ଡ଼ାକ ପକାଇଲେ ଅଫିସ ଷ୍ଟେନୋ ପ୍ରଫୁଲ୍ଲ ବାବୁଙ୍କୁ ।

ଉପସ୍ଥିତ ହୋଇ ଶୋଇବା ଘରକୁ ପଶିଆସିଲେ ପ୍ରଫୁଲ୍ଲ-ବାବୁ । ଚନ୍ଦ୍ରକାନ୍ତ ତାଙ୍କୁ କହିଲେ, "ତୁମେ ଚଞ୍ଚଳ ଯାଅ ପ୍ରଫୁଲ୍ଲ-ବାବୁ, ଏଇ ଠିକଣାରେ ପାଞ୍ଚ ଶହ ଟଙ୍କା ମନିଅର୍ଡ଼ର କରିଦେବ ।"

ଚନ୍ଦ୍ରକାନ୍ତଙ୍କ ହାତରୁ ଧୀର ଭାବରେ ଟଙ୍କା ନେଇ ଠିକଣାଟି ଦେଖୁ ଦେଖୁ ପ୍ରଫୁଲ୍ଲବାବୁ କହିଲେ, "ସରକାର ତାଙ୍କ ପକ୍ଷରୁ ଆମକୁ ପାଞ୍ଚ ଶହ ଟଙ୍କା ମକଦ୍ଦମା ଖର୍ଚ୍ଚ ଦେବାପାଇଁ ପରା ରାଜି ହୋଇଛୁ ?"

—"ତୁମର ସେସବୁରେ ମୁଣ୍ଡ ଖେଳାଇବା ଦରକାର ନାହିଁ ।" ଗମ୍ଭୀର ଭାବରେ ଉତ୍ତର ଦେଲେ ଚନ୍ଦ୍ରକାନ୍ତ ।

ଭୟଭୀତ ହୋଇ ପ୍ରଫୁଲ୍ଲବାବୁ ଫେରିପଡ଼ିଲେ । ଚନ୍ଦ୍ରକାନ୍ତ ପଛରୁ ଡାକିଲେ, "ହଁ ଶୁଣ, ମନିଅର୍ଡ଼ର ମୋ ନାଆଁରେ ନ ପଠାଇ ସୁରଭି ଦେବୀଙ୍କ ନାଆଁରେ ପଠାଇବ । ଆଉ କୁପନରେ ଲେଖିଦେବ 'କାର୍ତ୍ତିକ ହବିଷ ଓ ଆକାଶଦୀପ ଖରଚ ।' ହଁ ଚଞ୍ଚଳ ଯାଅ । ଡେରିକଲେ ଡାକଘର ବନ୍ଦ ହୋଇଯିବ ।"

———

# ନୂତନର ସନ୍ଧାନରେ

[ ଶ୍ରୀ ସତ୍ୟସୁନ୍ଦର ମିଶ୍ର ]

ନୂତନ ଦେଶର ସନ୍ଧାନ ନେବାକୁ ଯୁଗେ ଯୁଗେ କୌତୂହଳୀ ମାନବ କେତେ ଶ୍ରମ, କେତେ ସାଧନା କରିଛି, ତା'ର ହିସାବ ନାହିଁ । ଏହିପରି ଜଣେ ଜେନୋଆ ବନ୍ଦର ନିକଟରେ କ୍ରିଷ୍ଟୋଫର କଲମ୍ବସ ଦିଗନ୍ତ ବିସ୍ତାରୀ ସାଗର ନିରୀକ୍ଷଣ କରି ନୂତନ ଦେଶ ଆବିଷ୍କାର କରିବାଲାଗି ଉତ୍କଣ୍ଠିତ ହୋଇଉଠିଥିଲେ । ଇଟାଲିର ଜେନୋଆ ସହରରେ ତାଙ୍କର ବାଲ୍ୟ ଜୀବନ କଟିଥିଲା । ସେହି ସମୟରୁ ନାବିକମାନଙ୍କଠାରୁ ଦୂର ଦେଶର ଭ୍ରମଣ କାହାଣୀ ଶୁଣିବାରେ ସେ ଆଗ୍ରହ ପ୍ରକାଶ କରୁଥିଲେ । ପାରାବାରର ସୈକତ ବେଳାଭୂମିରେ ଶିଶୁ କଲମ୍ବସ ବିଶାଳ ସମୁଦ୍ରର ନୀଳ ଜଳରାଶିକୁ ଘଣ୍ଟା ଘଣ୍ଟା ଧରି ଚାହିଁ ରହୁଥିଲେ । କେତେ ସ୍ୱପ୍ନ, କେତେ କଳ୍ପନା, ମନ ଭିତରେ କେତେ ଅସୁମାରି ପ୍ରଶ୍ନ—"କେଉଁ ସୁଦୂର ରାଜ୍ୟକୁ ଏହି ସମୁଦ୍ର ଜୁଆରସବୁ ପଠାଇଦିଏ !" କଲମ୍ବସ ଆନନ୍ଦ ଓ ଆବେଗରେ ତନ୍ମୟ ହୋଇଉଠିଥିଲେ ।

ତାଙ୍କର ପିତା ଜଣେ ବୁଣାଳୀ । କଠିନ ଶ୍ରମ ଓ ଅଧ୍ୟବସାୟ ଫଳରେ ସେ ପ୍ରଚୁର ସମ୍ପତ୍ତିର ଅଧିକାରୀ ହୋଇପାରିଥିଲେ । ଜ୍ୟେଷ୍ଠ ପୁତ୍ରର ବୁଦ୍ଧି ଓ ଉଚ୍ଚ ଶିକ୍ଷା ଲାଭ କରିବାର ଇଚ୍ଛା ଦେଖି ତାଙ୍କ ପାଇଁ ଉତ୍ତମ ଶିକ୍ଷାଦାନର ବ୍ୟବସ୍ଥା କରିଦେଲେ । ଅଧ୍ୟୟନ ପାଇଁ କଲମ୍ବସ ପାଭିଆ ଯାତ୍ରା କଲେ । ସେଠାରେ ସେ ଜ୍ୟାମିତି, ଜ୍ୟୋତିର୍ବିଦ୍ୟା, ଭୂଗୋଳ ଓ ସାମୁଦ୍ରିକ ବିଜ୍ଞାନ ପାଠକଲେ ।

ଭବିଷ୍ୟତ ଜୀବନରେ ସେ କିପରି ପ୍ରତିଷ୍ଠିତ ନାବିକ ହୋଇ ଦୂର ଦେଶମାନଙ୍କୁ ଯାତ୍ରା କରିପାରିବେ, ଏହି ଭାବନାରେ କଲମ୍ବସ ସ୍ୱପ୍ନବିଭୋର ହୋଇପଡ଼ୁଥିଲେ ।

ଚତୁର୍ଦ୍ଦଶ ବର୍ଷ ବୟସରେ ସେ ଘରକୁ ଫେରିଆସିଲେ । ଜେନୋଆକୁ ଫେରିଆସିବାର ଅବ୍ୟବହିତ ପରେ ତାଙ୍କୁ ଜଣେକ ବ୍ୟବସାୟୀଙ୍କ ଜାହାଜରେ ଗୃହକର୍ମ ମିଳିଗଲା । ସେ ଅବକାଶରେ ସେ ଭୂମଧ୍ୟସାଗରରେ ଯାତ୍ରା କରି ବହୁ ବନ୍ଦର ଦେଖିଲେ । ତାଙ୍କର ସ୍ୱପ୍ନ ଆଂଶିକ ସାର୍ଥକ ହେଲା । ଜାହାଜ ଚଳାଚଳ ସମ୍ପର୍କରେ ସେ ବାସ୍ତବ ଜ୍ଞାନ ଲାଭ କରିବାର ସୁଯୋଗ ପାଇଲେ । ଅବସର ସମୟରେ ପୃଥିବୀ ଓ ଆକାଶ ବିଷୟରେ ଶାସ୍ତ୍ରମାନ ବିଶେଷ ଭାବରେ ଅଧ୍ୟୟନ କରି ସେହି ସମ୍ପର୍କୀୟ ନକ୍ସା ଓ ମାନଚିତ୍ର ପ୍ରସ୍ତୁତରେ ମନୋନିବେଶ କଲେ । ତାଙ୍କର ମନ ସର୍ବଦା ସାଗର ଓ ତାରକା ଶ୍ରେଣୀ ସମ୍ପର୍କରେ ଜ୍ଞାନ ଆହରଣ କରିବା ନିମନ୍ତେ ଆନ୍ଦୋଳିତ ଥିଲା । ମନେ ମନେ ସେ ଦିବାନିଶି ଦିଗ୍‌ବଳୟର ପରପାରକୁ ଜାହାଜରେ ଯାତ୍ରା କରିବାର ସ୍ୱପ୍ନ ଦେଖୁଥିଲେ ।

ପର୍ତ୍ତୁଗାଲ ଉପକୂଳକୁ ଥରେ ସେ ଯାତ୍ରା କରୁଥିଲେ, ଲିସ୍‌ବନ୍ ନିକଟରେ ଜାହାଜରେ ନିଆଁ ଲାଗିଗଲା । ଚତୁର୍ଦ୍ଦିଗରେ ଅନନ୍ତ ଜଳରାଶି—ନାନାପ୍ରକାର ବିଷାକ୍ତ ଭୟଙ୍କର, କ୍ଷୁଦ୍ର ଓ ବୃହତ ସାମୁଦ୍ରିକ ଜୀବଜନ୍ତୁରେ ପରିପୂର୍ଣ୍ଣ । କୌଣସିଠାରେ ସାହାଯ୍ୟ ପାଇବାର ଉପାୟ ସେତେବେଳେ ନ ଥିଲା । ନାବିକମାନେ ଜୀବନର ଆଶା ତ୍ୟାଗ କଲେ । ମାତ୍ର କଲମ୍ବସ ବିନ୍ଦୁମାତ୍ର ବିଚଳିତ ନ ହୋଇ ସେହି ବିପଦ୍‌ସଙ୍କୁଳ ସମୁଦ୍ର ଗର୍ଭକୁ ଲମ୍ଫ ପ୍ରଦାନ କଲେ । ବହୁଦୂର ସନ୍ତରଣପୂର୍ବକ ଅବଶେଷରେ ସେ ଉପକୂଳରେ ପହଞ୍ଚିଗଲେ ।

ଏଥିରୁ ତାଙ୍କର ସାହସିକ ଜୀବନର ପ୍ରକୃଷ୍ଟ ପରିଚୟ ମିଳେ ଏବଂ ଏହି ଦୁର୍ଘଟଣା ତାଙ୍କ ଜୀବନରେ ଏକ ଶୁଭ ସୂଚନା ।

ତଦାନୀନ୍ତନ ପୃଥିବୀରେ ପର୍ତ୍ତୁଗୀଜମାନେ ନୌ-ବିଦ୍ୟାରେ ସୁପଣ୍ଡିତ ଥିଲେ । ଯୁବରାଜ ହେନେରୀଙ୍କ ଉତ୍ସାହରେ ଦୁଃସାହସୀ ନୂତନ-ଦେଶ ପର୍ଯ୍ୟଟନ-ଅଭିଳାଷୀ ନାବିକମାନଙ୍କୁ ପୃଷ୍ଠପୋଷକତା କରାଯାଉଥିଲା । ଗୃହଆଡ଼େ ଉତ୍ତେଜନା ଖେଳଯାଇଥିଲା । ତୁର୍କୀମାନେ ସଙ୍କୀର୍ଣ୍ଣ ବସ୍‌ଫୋରସ ଅତିକ୍ରମ କରି କନ୍‌ଷ୍ଟାଣ୍ଟିନୋପଲର ସୁନ୍ଦର ନଗରୀ ଅଧିକାର କରି ନେଇଥିଲେ । ଏହି ନଗରୀ ଶିକ୍ଷା, ସଂସ୍କୃତି ଓ ବାଣିଜ୍ୟର ଏକ କେନ୍ଦ୍ରସ୍ଥଳ ଥିଲା । ତୁର୍କୀମାନଙ୍କ ଭୟରେ ମୂଲ୍ୟବାନ ଶାସ୍ତ୍ରଗୁଡ଼ିକର ପାଣ୍ଡୁଲିପି ଧରି ୟୁରୋପୀୟ ପଣ୍ଡିତମାନେ ସେଠାରୁ ଏତେତେଣେ ପଳାୟନ କଲେ ଓ ବଣିକମାନେ ପେଣ୍ଠ ହରାଇବସିଲେ । ତାଛଡ଼ା ପ୍ରାଚ୍ୟ-ଭୂଖଣ୍ଡରେ ବାଣିଜ୍ୟ କରିବାପାଇଁ ସ୍ଥଳଭାଗରେ ସମସ୍ତ ପଥ ରୁଦ୍ଧ ହେଲା । ତେବେ ଐଶ୍ୱର୍ଯ୍ୟର ଗନ୍ତାଘର ପ୍ରାଚ୍ୟର ଭାରତକୁ ପଥ ଦେଖାଇବ କିଏ ? ଏ ପ୍ରଶ୍ନର ସମାଧାନ ନିମନ୍ତେ ଏବଂ ପ୍ରାଚ୍ୟ ଦେଶର ବହୁମୂଲ୍ୟ ଅଳଙ୍କାର ଓ ସୁଗନ୍ଧ ମସଲା ଲାଗି ୟୁରୋପୀୟମାନେ ସମୁଦ୍ର ପଥ ଆବିଷ୍କାର କରିବାକୁ ଦୃଢ଼ପ୍ରତିଜ୍ଞ ହେଲେ ।

ବର୍ଷ ବର୍ଷ ଧରି ଦୀର୍ଘ ଚାଳିଶ ବର୍ଷ କାଳ ଯୁବରାଜ ହେନେରୀ ପୋତ ନିର୍ମାଣ ଓ ସମୁଦ୍ର ଯାତ୍ରାର ଯୋଜନା ପ୍ରସ୍ତୁତ କରିବାରେ ବ୍ୟସ୍ତ ରହିଥାନ୍ତି । ବହୁଦିନର ଶ୍ରମ ଓ ସାଧନା ଫଳରେ ତାଙ୍କର ନାବିକମାନେ ଆଫ୍ରିକା ଉପକୂଳ ଆବିଷ୍କାର କରିସାରିଥାନ୍ତି । ହେଲେ ସୁଦୂର ପ୍ରାଚ୍ୟ ଦେଶକୁ ଅଜ୍ଞାତ ପଥର ସନ୍ଧାନ ନେବାଲାଗି କେହି ଆଗଭର ହୋଇ ବାହାରି ନ ଥାନ୍ତି । ସେହି ସମୟକୁ କଲମ୍ବସ ଲିସ୍‌ବନରେ ବସବାସ କରି ଜଣେ ନିର୍ଭୁଲ ମାନଚିତ୍ର ପ୍ରସ୍ତୁତକାରୀ

ହିସାବରେ ସୁନାମ ଅର୍ଜନ କରି ସାରିଛନ୍ତି । ସେଠାରେ ତାଙ୍କର ବିବାହ ହୋଇଯାଇଥାଏ । ଶିଶୁପୁତ୍ର ଡ଼ିଗୋ ସହିତ କେତୋଟି ମଧୁର ବର୍ଷ ମଧ୍ୟ ସେ ଅତିବାହିତ କରିସାରିଥାନ୍ତି ।

ବର୍ତ୍ତମାନ ଅଜଣା ଆଫ୍ରିକା ମହାସାଗରରେ ଯାତ୍ରାକରି ସେହି ସୁଦୂର ପ୍ରାଚ୍ୟ ଭୂଖଣ୍ଡ ପଥ ଆବିଷ୍କାର କରିବାକୁ କଲମ୍ବସ ଉତ୍ସୁକ ହୋଇ ପଡ଼ିଲେ । ବହୁ ବର୍ଷର ସମୁଦ୍ର ଯାତ୍ରାର ସ୍ୱପ୍ନ ସାର୍ଥକ ହେବ—କଲମ୍ବସ ଆନନ୍ଦରେ ବିଭୋର ହୋଇଉଠିଲେ । ମାତ୍ର ମନ ଭିତରେ ତାଙ୍କର ଗୋଟିଏ ପ୍ରଶ୍ନ ଉଠିଲା, ଲିସ୍‌ବନ୍‌ରେ ସେ ତ ବିଦେଶୀ ! ସମସ୍ତଙ୍କ ନିକଟରେ ଅପରିଚିତ, ଅଜଣା ଅଶୁଣା; କିଏ ବା ତାଙ୍କୁ ତାଙ୍କର ଏହି ପରିକଳ୍ପିତ ଯାତ୍ରା ପାଇଁ ପୋତଟିଏ ଦେବ ? ମନ ତାଙ୍କର ସ୍ଥିର ହୋଇ ନ ଥାଏ ।

ଅଜଣା ଦରିଆ ଯାତ୍ରାର ସ୍ୱପ୍ନ ତଥାପି ତାଙ୍କୁ ବିଚଳିତ କଲା । ସେ ମାନଚିତ୍ରଟିଏ ଧରି କଳ୍ପନାରେ ଅକାତ ଜଳରାଶି ସମ୍ପର୍କରେ ଚିନ୍ତା କଲେ । ସେ ସ୍ଥିର କଲେ, ପୃଥିବୀ ଗୋଲାକାର ହୋଇଥିବାରୁ ଆଟଲାଣ୍ଟିକରେ ପଶ୍ଚିମ ଦିଗରେ ଜଳଯାତ୍ରା କଲେ ନିଶ୍ଚୟ ଭାରତ ଓ ଅନ୍ୟାନ୍ୟ ପ୍ରାଚ୍ୟଦେଶରେ ପହଞ୍ଚିପାରିବେ । ଏହି ଯୋଜନା ପ୍ରତି ସେ ସେହି ଦେଶର ରାଜାଙ୍କ ଦୃଷ୍ଟି ଆକର୍ଷଣ କଲେ, କିନ୍ତୁ ମନ୍ତ୍ରିମଣ୍ଡଳ ଏ ପ୍ରସ୍ତାବରେ ସମ୍ମତି ପ୍ରକାଶ କଲେ ନାହିଁ । ପୃଥିବୀ ଗୋଲାକାର ହୋଇଥିବାରୁ ତାହାର ନିମ୍ନ ଦେଶରେ ଜଳରାଶିର ଗତି ଭୀଷଣ ହୋଇଥିବ ଏବଂ ସେଠାରେ ଜାହାଜ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ—ଏହି ଆଶଙ୍କାରେ କଲମ୍ବସଙ୍କ ପ୍ରସ୍ତାବକୁ ସେତେବେଳେ ପର୍ତ୍ତୁଗାଲର କେହି ସମର୍ଥନ କଲେ ନାହିଁ ।

ନିରୁପାୟ କଲମ୍ବସ ଦେଖିଲେ ଯେ ପର୍ତ୍ତୁଗାଲରୁ ସାହାଯ୍ୟପ୍ରାପ୍ତିର ଆଉ ଆଶା ନାହିଁ । ସେତେବେଳକୁ ତାଙ୍କର ସ୍ତ୍ରୀ ଇହଲୋକ

ତ୍ୟାଗ କରିଥାନ୍ତି । ସ୍ପେନର ରାଜା ଫର୍ଡିନାଣ୍ଡ ଓ ରାଣୀ ଇସାବେଲା-ଙ୍କର ପୃଷ୍ଠପୋଷକତା ପାଇବା ଆଶାରେ ଶିଶୁପୁତ୍ର ଡ଼ିଗୋ ସହିତ ସେ ସ୍ପେନ ଯାତ୍ରା କଲେ ।

ସୁବିଶାଳ ବପୁ ଚିନ୍ତାମଗ୍ନ କଲମ୍ବସ ତାଙ୍କର ନ' ଦଶ ବର୍ଷର ପୁତ୍ର ସହିତ ଅଣ୍ଡାଲୁସିଆର ରାଜପଥରେ ଗତି କରୁଥାନ୍ତି । ମନରେ ରାଜାଙ୍କ ସହିତ ଦେଖା କରିବାର ପ୍ରବଳ ଆଗ୍ରହ । ଚାଲି ଚାଲି ସେମାନେ ଗୋଟିଏ ମଠରେ ଉପସ୍ଥିତ ହେଲେ । ସେଠାରେ ସାଧୁ-ମାନେ ତାଙ୍କୁ ଖାଦ୍ୟ ଓ ଆଶ୍ରୟ ଦେଇ ସମ୍ମାନିତ କଲେ । ସନ୍ଥ ଜୁଆନ୍ ପେରଜ୍ ଡ଼ିଗୋର ଲାଳନପାଳନର ଦାୟିତ୍ୱ ବହନ କଲେ । ସେ ସ୍ପେନ୍‌ର ରାଜଦରବାରକୁ କଲମ୍ବସଙ୍କ ସମ୍ପର୍କରେ ପରିଚୟପତ୍ର ଦେଇ, ପାଥେୟ ସ୍ୱରୂପ କିଛି ଅର୍ଥ ଓ ଜଣେ ପଥ ପ୍ରଦର୍ଶକ ସାହାଯ୍ୟ କଲେ ।

ସେତେବେଳେ ସ୍ପେନ୍‌ରୁ ମୁର୍‌ମାନଙ୍କୁ ବିତାଡ଼ିତ କରିବାକୁ ରାଜାରାଣୀ ବ୍ୟସ୍ତ ଥାନ୍ତି । ଅତଳ ସମୁଦ୍ରଗର୍ଭରେ ନୂତନ ଦେଶ ଆବିଷ୍କାର କରିବା ନିମନ୍ତେ ଜଳପଥର ସନ୍ଧାନ ନେବାଭଳି ଅସମ୍ଭବ ପ୍ରସ୍ତାବ ସମ୍ପର୍କରେ ଚିନ୍ତା କରିବାକୁ ସେମାନଙ୍କର ସମୟ ବା କାହିଁ! ସମସ୍ତ ଦୁର୍ଯୋଗ ଓ ଦୁର୍ବଳତାକୁ ଏଡ଼ିଦେଇ ସେ ଜୀବିକା ଅର୍ଜନ ପାଇଁ ପୂର୍ବବତ୍ ସେଠାରେ ମାନଚିତ୍ର ପ୍ରସ୍ତୁତ କଲେ । ଏଦ୍ୱାରା ସ୍ପେନର ପ୍ରତିଷ୍ଠିତ ଲୋକମାନଙ୍କ ସହିତ ତାଙ୍କର ସମ୍ପର୍କ ସ୍ଥାପିତ ହେଲା । ସେମାନେ ମାନଚିତ୍ର ପ୍ରସ୍ତୁତକାରୀଙ୍କର ଅଗାଧ ଜ୍ଞାନ ଓ ସାଧୁତାରେ ମୁଗ୍ଧ ହୋଇ ତାଙ୍କର ପରମ ବନ୍ଧୁ ହେଲେ ।

କେତେ ବର୍ଷ ବିତିଗଲା । ସ୍ପେନର ରାଜଦମ୍ପତି କଲମ୍ବସଙ୍କର ଖ୍ୟାତି ଶୁଣି ତାଙ୍କୁ ରାଜଦରବାରକୁ ଡକାଇଲେ । ଏଥର କଲମ୍ବସ

ରାଜା ଓ ରାଣୀଙ୍କୁ ସାକ୍ଷାତ କରି ଦାବୀ କଲେ ଯେ, ତାଙ୍କୁ ସେନାପତି ଉପାଧି ଦିଆଯାଉ ଏବଂ ଯେଉଁ ନୂତନ ଦେଶ ସେ ଆବିଷ୍କାର କରିବେ, ସେଠାରେ ପ୍ରଥମେ ଅ୍ପ୍ରସ୍ତୁତ ରାଜ୍ୟପାଳ ରୂପେ ତାଙ୍କୁ ନିଯୁକ୍ତ କରାହେଉ । ରାଜାଙ୍କ ମନ୍ତ୍ରି ପରିଷଦ ଏହି ପ୍ରସ୍ତାବର ଘୋର ପ୍ରତିବାଦ କଲେ । ଆଉ ଅପେକ୍ଷା ନ କରି ଫରାସୀ ଦରବାରର ସାହାଯ୍ୟ ଲାଭକରିବା ନିମନ୍ତେ କଲମ୍ବସ ଫ୍ରାନ୍ସ ଯିବାପାଇଁ ପ୍ରସ୍ତୁତ ହେଲେ ।

ରାଣୀ ଇସାବେଲା ତାଙ୍କର ଶ୍ରଦ୍ଧେୟ ଦୁଃସାହସୀ ବ୍ୟକ୍ତିର ପଳାୟନ ଖବରରେ ମର୍ମାହତ ହେଲେ । ସେ ରାଜାଙ୍କୁ ସାହାଯ୍ୟ ପ୍ରଦାନ ପାଇଁ ପ୍ରାର୍ଥନା କଲେ । ରାଜା ଏ ପ୍ରାର୍ଥନାରେ ଅସମ୍ମତ ହେବାରୁ ରାଣୀ ନିଜର ଅଳଙ୍କାର ବିକ୍ରୟ କରି ଏ ବ୍ୟୟ ବହନ କରିବାପାଇଁ ସ୍ଥିର କଲେ । ପଳାତକ କଲମ୍ବସଙ୍କ ଅନ୍ୱେଷଣରେ ଦୂତ ପଠାଗଲା । କଲମ୍ବସ ଇସାବେଲାଙ୍କ ଦାନ ଗ୍ରହଣ କରିବାପାଇଁ ଆନନ୍ଦରେ ଫେରିଆସିଲେ । ରାଜାଦେଶ ସତ୍ତ୍ୱେ, ପୋତ ମାଲିକମାନେ ଏହି ସର୍ବନାଶୀ ଯାତ୍ରା ପାଇଁ ସେମାନଙ୍କ ଜାହାଜ ଦେବାକୁ ଏବଂ ନାବିକମାନେ ଏପରି ପ୍ରାଣହାନିକର ଯାତ୍ରାରେ କୌଣସି ସହଯୋଗ କରିବାକୁ ଏକାବେଳକେ ଅନିଚ୍ଛୁକ ହେଲେ ।

ଏହି ଘଡ଼ିସନ୍ଧି ସମୟରେ, ଆଶା ନିରାଶାର ମଧ୍ୟସ୍ଥଳରେ କଲମ୍ବସ ନିଜର ଗତି ନିରୂପଣ କରିପାରୁ ନ ଥାନ୍ତି । ଠିକ୍ ଏତିକି ବେଳେ ପୁଣି ତାଙ୍କର ପଶ୍ଚାତ୍‌ରେ ଛିଡ଼ାହେଲେ ଜୁଆନ୍ ପେରିଜ୍ । ପେରିଜ୍‌ଙ୍କ ପ୍ରଭାବରେ ତାଙ୍କର ବିତ୍ତବଶାଳୀ ତିନି ଜଣ ନାବିକବନ୍ଧୁ ଜାହାଜ ଦେବାକୁ ସ୍ୱୀକାର କଲେ । କେବଳ ସେତିକି ନୁହେଁ, ସେମାନେ ଏତେ ଦୂର ଆଗ୍ରହ ପ୍ରକାଶ କଲେ ଯେ ସେମାନଙ୍କ ମଧ୍ୟରୁ ଦୁଇ ଜଣ ଏହି ଭୟଙ୍କର ଯାତ୍ରାରେ ଯୋଗ ଦେବାକୁ ସ୍ଥିର କଲେ ।

ଦୁଃସାହସୀ ନାବିକ କଲମ୍ବସଙ୍କର ବହୁଦିନର ଆଶା ସାର୍ଥକ ହେବ ! ଅନନ୍ତ ସମୁଦ୍ର ବକ୍ଷର ଅଗଣିତ ଲହରୀ ଦେଖି ସେ ଆନନ୍ଦରେ ତନ୍ମୟ ହୋଇଉଠିବେ ! ୧୪୯୨ ଖ୍ରୀଷ୍ଟାବ୍ଦ ଅଗଷ୍ଟମାସର ଏକ ସ୍ମରଣୀୟ ମୁହୂର୍ତ୍ତରେ ସ୍ଥଳଭାଗ ଛାଡ଼ି ବିଶାଳ ସାଗର ବକ୍ଷକୁ ଆଗପଛ ହୋଇ ଚାଲିଲେ 'ସାନ୍ତାମେରିଆ','ପିନ୍ତା' ଆଉ 'ନିନା' । ତିନୋଟି ଜରାଜୀର୍ଣ୍ଣ ବାଣିଜ୍ୟପୋତ; ତଥାପି ସାଗର ବକ୍ଷ ଚିରି ଚାଲିଯିବାର ସ୍ୱପ୍ନରେ ଯାତ୍ରୀମାନେ ବିଜଯାଇଥିଲେ ।

କାନାରି ଉପକୂଳରେ ପହଞ୍ଚିବା ପୂର୍ବରୁ 'ପିନ୍ତା' ଜାହାଜର ସାଉର୍ଟି ଭାଙ୍ଗିଗଲା ଓ ପାଣି ପଶିବାକୁ ଲାଗିଲା । ତିନୋଟି ସପ୍ତାହ ଏହାର ମରାମତି ଓ ଅନ୍ୟାନ୍ୟ ଆନୁସଙ୍ଗିକ ବ୍ୟବସ୍ଥାରେ କଟିଗଲା । ପୁନର୍ବାର ଯାତ୍ରା ଆରମ୍ଭ ହେଲା । ଯାତ୍ରୀମାନେ ପୁରାତନ ଭୂଖଣ୍ଡକୁ ବିଦାୟ ଦେଇ ଚାଲିଲେ । କି ଦୁଃଖ, କି ହତାଶାର ଅନୁଭୂତି ଏଇ ପୁରାତନ ଭୂଖଣ୍ଡର ଶେଷ ଦର୍ଶନରେ ! ଯାତ୍ରୀଦଳର ସେନାପତି ନିଜ ଉତ୍ସାହିତ ପ୍ରାଣର କର୍ମପ୍ରବଣତା ଓ ବିଶ୍ୱାସର ଉଦ୍‌ବୋଧନ ବାଣୀ ସହଯାତ୍ରୀମାନଙ୍କୁ ଶୁଣାଇଥିଲେ । ଅନୁକୂଳ ପବନରେ ଜାହାଜ ଦ୍ରୁତ ଗତିରେ ପଶ୍ଚିମ ଦିଗରେ ଗତି କଲା ।

କିଛିଦିନ ପରେ କଲମ୍ବସଙ୍କ ଯାତ୍ରା-ପଥରେ ଏକମାତ୍ର ନିର୍ଦ୍ଦେଶକ କମ୍ପାସ ଅତଳ ଦରିଆ ଭିତରେ ଆଉ ନିର୍ଭୁଲ ଭାବରେ ଦିଗ ନିର୍ଣ୍ଣୟ କରିପାରିଲା ନାହିଁ । ଅଧିନାୟକ କଲମ୍ବସଙ୍କ ସହିତ ସମସ୍ତ ଯାତ୍ରୀ ସମ୍ପୂର୍ଣ୍ଣ ହତାଶ ହୋଇ ପଡ଼ିଲେ । ଅତଳ ବାରିଧି— ଦିଗ୍‌ବଳୟ ଦୃଷ୍ଟିଗୋଚର ହେଉ ନାହିଁ – ଦୃଷ୍ଟିପଥରେ ସ୍ଥଳଭାଗର ସୂଚନା ନାହିଁ —ଗଭୀର ନୈରାଶ୍ୟ ଓ ଦୁଃଖରେ ଦ୍ରବୀଭୂତ ହୋଇ-ପଡ଼ିଲେ ଯାତ୍ରୀମାନେ । କିନ୍ତୁ ଭାଙ୍ଗିପଡ଼ିବା ପୂର୍ବରୁ ସେମାନେ ପରିଶ୍ରମର ଫଳ ପାଇଲେ ।

ଜାହାଜ ଉପରେ ବିହଗର ଦର୍ଶନ ମିଳିଲା । ଦଳଜାଙ୍ଗୟୁ ତଣ ପରିଲକ୍ଷିତ ହେଲା । ଯାତ୍ରୀମାନେ ଧୈର୍ଯ୍ୟ ସଞ୍ଚୟ କରି ଗର୍ଜ କଲେ । ହେଲେ ଦୁର୍ଦ୍ଦଶାର ଶେଷ କାହିଁ ! ଏ ଯେ ଗମ୍ଭୀର ସମୁଦ୍ର, କେବଳ ଶୈବାଳର ଘନ ଆସ୍ତରଣ ! ଜାହାଜ ହୁଏତ ଏଇଠି ଅଟକିଯିବ ! ବାୟୁ ଚଳାଚଳ ସ୍ଥିର, କେବଳ ସମୁଦ୍ର ସ୍ରୋତର ସାହାଯ୍ୟରେ ଜାହାଜ ଭାସି ଗ୍ଲଲଛି । ବିରାଟ ବିରାଟ ତିମି, ମଗର ପ୍ରଭୃତି ଭୀଷଣାକାର ଜଳଜନ୍ତୁ ଅପେକ୍ଷା କରିଛନ୍ତି, ସୁଯୋଗ ମିଳିଲେ ନରମାଂସ ଗ୍ରାସ କରି ପକାଇବେ । ଜାହାଜରୁ ଖାଦ୍ୟ ଓ ପାନୀୟ ଶେଷପ୍ରାୟ । ମନ ଭିତରେ ବିରକ୍ତିର ବହ୍ନି ଜଳିଉଠିଲା । କଲମ୍ବସଙ୍କୁ ଯାତ୍ରା ବନ୍ଦ କରି ଫେରିଯିବା ଲାଗି ସଙ୍ଗୀମାନେ ଆଦେଶ ଦେଲେ । ମନ ଭିତରେ ଉଠିଲା ସେମାନଙ୍କର ବିଦ୍ରୋହ—କାହିଁକି ଗୋଟାଏ ଲୋକର ଖିଆଲରେ ସେମାନେ ଧ୍ୱଂସ ପାଇଯିବେ ? ମୃତ୍ୟୁ ପଥର ଯାତ୍ରାରେ ବାଧ କରି ଟାଣି ନେଉଥିବା ଏଇ ପାଗଳକୁ କାହିଁକି ସେମାନେ ସଳିଳ ସମାଧି ନ ଦେବେ ? କାହିଁକି ଫିଙ୍ଗି ନ ଦେବେ ଏଇ ନିର୍ବୋଧକୁ ସାଗର ବକ୍ଷରେ ? ଶାନ୍ତ ଚିତ୍ତରେ ଧୀର ମଧୁର କଣ୍ଠରେ କଲମ୍ବସ ସେମାନଙ୍କର ସେହି ବିଦ୍ରୋହାଗ୍ନି ପ୍ରଶମିତ କଲେ ।

ସ୍ଥଳଭାଗର ସୀମାରେଖା ଉଜ୍ଜ୍ୱଳତର ହେଲା । କି ଉତ୍ସାହ ! କି ଚିତ୍କାର ! ନୂତନ ଦେଶର ପ୍ରଥମ ଦୃଶ୍ୟର ଦର୍ଶନ ପାଇଁ ଯାତ୍ରୀ-ମାନଙ୍କ ହୃଦୟରେ କି ଉତ୍କଣ୍ଠା ! ସାରାରାତି ଉଜାଗର ହୋଇ ନୂତନ ଦିନର ସୂର୍ଯ୍ୟୋଦୟକୁ ସେମାନେ ସ୍ୱାଗତ କଲେ । ସମ୍ମୁଖରେ ସୁନୀଳ ପର୍ବତ ଓ ବାଲୁକା ପ୍ରାନ୍ତରରେ ସୁଶୋଭିତ ବୃହତ୍ ଭୂଖଣ୍ଡ । କ୍ରମେ ଦୃଷ୍ଟି ପଥରେ ପଡ଼ିଲେ ଗଛପତ୍ର, ବୃକ୍ଷଲତା, ଧାଡ଼ିଧାଡ଼ି କୁଡ଼ିଆ ଘର ଆଉ ରକ୍ତମାଂସର ମଣିଷ—ଲୋହିତକାୟ ଆଦି-ବାସୀ– ଜାହାଜ ଦର୍ଶନରେ ଉଦ୍‌ଗ୍ରୀବ ହୋଇ ସେହି ମଣିଷମାନେ ଛିଡ଼ା ହୋଇଛନ୍ତି ।

ରାଜକୀୟ ପୋଷାକରେ ସୁସଜ୍ଜିତ ହୋଇ କଲମ୍ବସ ପ୍ରଥମେ ସ୍ଥଳଭାଗରେ ଅବତରଣ କଲେ । ଆଣ୍ଠୁ ମାଡ଼ି ବିଶ୍ୱକର୍ତ୍ତାଙ୍କ ପ୍ରତି ତାଙ୍କ ହୃଦୟର ଆନନ୍ଦ ନିବେଦନ କଲେ । ସ୍ପେନ ଦେଶର ରାଜା ଓ ରାଣୀଙ୍କ ନାମରେ ଏହି ନୂତନ ଭୂଖଣ୍ଡ ଅଧିକାର କଲେ ଓ ତାହାର ନାମ ଦେଲେ ସାନ୍‌ସାଲ୍‌ଭାଡ଼ର । ସେ ସେଠାରେ ଆଦିବାସୀମାନଙ୍କୁ ସାଧୁ ଓ ବନ୍ଧୁ ଭାବରେ ଭାରତୀୟ ବୋଲି ସମ୍ଭାଷଣ କଲେ । ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା ଯେ, ସେ ଭାରତବର୍ଷର ନିକଟବର୍ତ୍ତୀ ସ୍ଥଳ ଭାଗରେ ପହଞ୍ଚି ପାରିଛନ୍ତି—

ମାତ୍ର ସୁବର୍ଣ୍ଣ ଓ ମୂଲ୍ୟବାନ ପ୍ରସ୍ତରମଣ୍ଡିତ ସ୍ଥଳଭାଗରେ ପହଞ୍ଚିବାକୁ ଅଧୀର ହୋଇ ସାହସୀ ପରିବ୍ରାଜକମାନେ ସେହି ଉପଦ୍ୱୀପ ଅଞ୍ଚଳ ପରିତ୍ୟାଗ କଲେ ଓ ଦକ୍ଷିଣାଭିମୁଖରେ ଯାତ୍ରା କରି କ୍ୟୁବାରେ ପହଞ୍ଚିଲେ । ସୁନ୍ଦର ଦେଶ ଏଇ କ୍ୟୁବା – କିନ୍ତୁ ସୁବର୍ଣ୍ଣ କାହିଁ ! ପରେ ସେମାନେ ଆଉ ଏକ ବିଶାଳ ଉପଦ୍ୱୀପ ଆବିଷ୍କାର କଲେ । କଲମ୍ବସ ତାହାର ନାମକରଣ କଲେ 'ହିସ୍‌ପାନିଓଲା' (ବର୍ତ୍ତମାନ ସାନ୍ ଡୋମିନ୍‌ଗୋ) । ଏହିଠାରେ ଅକୂଳ ଦରିଆରେ ଦୁଃସାହସିକ ଯାତ୍ରା କରିଥିବା ଜାହାଜ 'ସାନ୍ତାମେରିଆ' ସମ୍ପୂର୍ଣ୍ଣ ଅଚଳ ହୋଇଗଲା । ମାତ୍ର ସେଠାର ସରଳ ଆଦିବାସୀମାନଙ୍କର ଉତ୍ତମ ଓ ମଧୁର ବ୍ୟବହାରରେ ଏହି ଦୁଃଖ କିଞ୍ଚିତ ଉପଶମ ହେଲା । ନୂତନ ବନ୍ଧୁ ଗ୍ରହଣ କରି ସେମାନଙ୍କୁ ସାହାଯ୍ୟ ଦେବାକୁ ଏହି ସରଳ ଓ ନିରାଡମ୍ବର ଆଦିମ ଅଧିବାସୀଗଣ ଆଗ୍ରହୀ ଥିଲେ । ସେମାନଙ୍କ ସାହାଯ୍ୟରେ ମୂଲ୍ୟବାନ ଦ୍ରବ୍ୟସମୂହ ଜାହାଜରୁ ଆସି ଉପକୂଳରେ ସୁରକ୍ଷିତ ହେଲା । କଲମ୍ବସ ସେଠାରେ ଏକ କ୍ଷୁଦ୍ର ଦୁର୍ଗ ନିର୍ମାଣ କଲେ ।

ଆଦିବାସୀମାନେ ସ୍ପେନୀୟମାନଙ୍କୁ ମୂଲ୍ୟବାନ ଉପହାର ଦେଲେ । ମାତ୍ର ସ୍ପେନୀୟମାନେ ଅଧିକ ସୁବର୍ଣ୍ଣପ୍ରାପ୍ତି ନିମନ୍ତେ ଲୋଭୀ ଓ ହିଂସ୍ର ହୋଇପଡ଼ିଲେ । ଏହି ପରିବର୍ତ୍ତନରେ ଆଦିବାସୀମାନେ ବିଚଳିତ ହେଲେ । କଲମ୍ବସଙ୍କର ସହଯାତ୍ରୀଗଣ ଐଶ୍ୱର୍ଯ୍ୟର ସନ୍ଧାନ କରିବେ, ସେ ନୂତନ ଦେଶର ଆବିଷ୍କାରରେ ଉଲ୍ଲସିତ । ତାଙ୍କର ସ୍ୱପ୍ନ ସଫଳ ହୋଇଛି । ସେ ନିଶ୍ଚୟ ପ୍ରାଚ୍ୟର ସୁବର୍ଣ୍ଣ ଭୂଖଣ୍ଡ ଭାରତର ନିକଟବର୍ତ୍ତୀ । ଦେଶକୁ ଫେରିଯାଇ ଏହି ସମ୍ବାଦ ଦେବାକୁ ହେବ । ବନ୍ଧୁଭାବାପନ୍ନ ଅଧିବାସୀଙ୍କ ସହଯୋଗରେ ତିଆରି କରିଥିବା ସେଇ କ୍ଷୁଦ୍ର ଦୁର୍ଗରେ ସହଯାତ୍ରୀମାନଙ୍କ ମଧ୍ୟରୁ କେତେକଙ୍କୁ ଛାଡ଼ି ଉପହାରଗୁଡ଼ିକରୁ କେତେକ ଧରି କଲମ୍ବସ ପୁଣି ତାଙ୍କ ଯାତ୍ରା ଆରମ୍ଭ କଲେ । ବିଦାୟ କାଳରେ ସେ ସଙ୍ଗୀମାନଙ୍କୁ ନିକଟବର୍ତ୍ତୀ ଅଞ୍ଚଳ ଅବିଷ୍କାର କରିବାକୁ ନିର୍ଦ୍ଦେଶ ଦେଇଗଲେ ।

ବାହୁଡ଼ା ଯାତ୍ରାର ଅନୁଭୂତି ଅତି ଭୟଙ୍କର ହେଲା । ପ୍ରତିକୂଳ ବାୟୁରେ ଯାତ୍ରା ମନ୍ଥର ହେଲା । ସମୁଦ୍ରର ଉତ୍ତାଳ ଲହରୀମାଳାରେ ଯାତ୍ରୀଗଣ ଭୀତତ୍ରସ୍ତ ହୋଇପଡ଼ିଲେ । ଭୀଷଣ ଘଡ଼ଘଡ଼ି ଓ ବତାସ ଯାତ୍ରୀମାନଙ୍କୁ ଦୁର୍ବଳ କରିପକାଇଲା । ଜାହାଜ ଦୁଇଟି ପରସ୍ପର-ଠାରୁ ବିଚ୍ଛିନ୍ନ ହୋଇଗଲେ । ଗୋଟିକର ଯାତ୍ରୀ ଅନ୍ୟଟିର ସଳିଳ-ସମାଧି ହୋଇଛି ବୋଲି ଶଙ୍କା କଲେ ।

କଲମ୍ବସ ମଧ୍ୟ ହତାଶ ହୋଇପଡ଼ିଲେ । ପ୍ରତ୍ୟେକ ମୁହୂର୍ତ୍ତରେ ଆଶଙ୍କା । ଧ୍ୱଂସର ଓ ମୃତ୍ୟୁର ସଙ୍ଗୀତ ସତେ ଯେପରି ଅସ୍ପଷ୍ଟରୁ ସ୍ପଷ୍ଟ– ଆହୁରି ସ୍ପଷ୍ଟ ହୋଇଉଠୁଛି—ନିଜର ଜୀବନ ପ୍ରତି ମାୟା ନାହିଁ, ମମତା ନାହିଁ । ନୂଆ କରି ଲାଭ କରିଥିବା ଅଭିଜ୍ଞତା ସତେ ବା ତାଙ୍କର ନିମିଷକେ ଧ୍ୱଂସ ହୋଇଯିବ । ଚତୁର୍ଦ୍ଦିଗରେ ଝଡ଼ର ତାଣ୍ଡବଲୀଳା । ଯାତ୍ରୀମାନେ ଭୟଭୀତ, କିନ୍ତୁ କଲମ୍ବସ୍

ସ୍ୱ ପ୍ରକୋଷ୍ଠରେ ଯାତ୍ରାର ବିବରଣୀ ଲିପିବଦ୍ଧ କରିବାରେ ବ୍ୟସ୍ତ । ମହମ ଓ ସୋଡ଼ାର ବାକ୍‌ସରେ ସେହି ବିବରଣୀକୁ ବନ୍ଦକରି, ସମୁଦ୍ରରେ ଭସାଇଦେଲେ । ଆଶା, ହୁଏତ ସେହି ବାକ୍‌ସ ଭସି ଭସି ଦିନେ ଉପକୂଳରେ ପହଞ୍ଚିପାରେ ଏବଂ ତାଙ୍କ ଯାତ୍ରା ଓ ଆବିଷ୍କାରର ବିଜୟ କାହାଣୀ ପୃଥିବୀସାରା ପ୍ରଚାରିତ ହୋଇପାରେ ।

'ନିନା' ଜାହାଜଟି ଆଉ ସମ୍ଭାଳିପାରିବ ନାହିଁ । ଦିନକ ଭିତରେ ବୋଧହୁଏ ଶେଷ ପାଇଯିବ । ଏହି ଆଶଙ୍କାରେ ଯାତ୍ରୀମାନେ ଶୀଘ୍ର ଉଠୁଥିବାବେଳେ ପର୍ତ୍ତୁଗାଲ ଉପକୂଳରେ ଜାହାଜଟି ଲାଗିଲା । ସେଇଠି କଲମ୍ବସ ଜାହାଜଟିକୁ ମରାମତି କରାଇନେଇ, ଦେଶ ପ୍ରତ୍ୟାବର୍ତ୍ତନ ଯାତ୍ରାର ଶେଷ ପର୍ଯ୍ୟାୟ ଆରମ୍ଭ କଲେ । 'ପାଲୋସ' ବନ୍ଦର ସନ୍ନିକଟ । ବହୁଦିନ ତଳର ବିଦାୟକାଳୀନ ଛବି ମନ-ରାଜ୍ୟରେ ନାଚିଉଠିଲା— କି ଆଶଙ୍କିତ କାହାଣୀ, କି ଉପହାସ, କି ବ୍ୟଙ୍ଗ ଯେଦ୍ଦନ ! କିନ୍ତୁ ଆଜି ଆନନ୍ଦୋନ୍ମତ୍ତ ଜନତାର ଜୟ ଧ୍ୱନି ! ପାଣି ଭିତରୁ କଲମ୍ବସଙ୍କୁ ବିଜୟୀର ସମ୍ମାନ ଦେଇ ନେଇଯିବାର କି ଗର୍ବ ! ତଥାପି ନଗ୍ନ ପଦରେ କଲମ୍ବସ ପୁରାତନ ବନ୍ଧୁ ଜୁଆନ ପେରିଜ୍‌ଙ୍କୁ ପ୍ରଥମେ ଅଭିନନ୍ଦନ ଜଣାଇ, ଈଶ୍ୱରଙ୍କୁ ଉପାସନା କଲେ ।

ଆରାଧନା ପରେ ଆବିଷ୍କାରକ ରାଜପ୍ରାସାଦକୁ ଗମନ କରି ରାଜା ଓ ରାଣୀଙ୍କ ଚରଣରେ ଆବିଷ୍କାରର ସୁଫଳ ନିବେଦନ କଲେ । କି ଅପୂର୍ବ ପରିବର୍ତ୍ତନ ! ଉପହାସିତ, ଦରିଦ୍ର, ମାନସିକ ଅଙ୍କନକାରୀ କଲମ୍ବସଙ୍କ ପ୍ରତି ରାଜକୀୟ ସମ୍ମାନର କି ବିପୁଳ ଆୟୋଜନ ! ରାଜ-ପୁରୁଷମାନଙ୍କ ପରି ତାଙ୍କୁ ନଗରୀରେ ସ୍ୱାଗତ ସମ୍ଭାଷଣ ଓ ସମ୍ମାନ ଜ୍ଞାପନ କରାଗଲା । ରାଜା ଫର୍ଡ଼ିନାଣ୍ଡ ଏବଂ ରାଣୀ ଇସାବେଲା ଆସନ ପରିତ୍ୟାଗ କରି, ତାଙ୍କୁ-ସମ୍ମାନ ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ

ସ୍ୱାନୁରୂପ ଆସନ ପ୍ରଦାନ କଲେ । ଇଉରୋପ ଦେଶର ଦରବାର-ମାନଙ୍କରେ ତାଙ୍କର ଗୌରବ ପ୍ରଚାର କରିବାକୁ ସ୍ପେନ ରାଜାଙ୍କ ତରଫରୁ ଦୂତ ନିଯୁକ୍ତ ହେଲେ ।

ସ୍ପେନରେ ଅଳ୍ପ କେତେ କାଳ ଅତିବାହିତ କରିବା ପରେ କଲମ୍ବସ ପୁନରାୟ ନୂତନ ଦେଶର ଅନ୍ୱେଷଣରେ କାଳବିଳମ୍ବ ନ କରି ଯାତ୍ରା ଆରମ୍ଭ କଲେ । ସାଙ୍ଗରେ ଏଥର ସତରଟି ଜାହାଜ । ସହଯାତ୍ରୀ ସଂଗ୍ରହ କରିବାପାଇଁ ଆଉ କିଛି ଅସୁବିଧା ନାହିଁ । ଯାଜକ, ରାଜପୁରୁଷ, ଶ୍ରମିକ, ସମାଜର ପ୍ରତ୍ୟେକ ସ୍ତରର ନାଗରିକମାନେ ସହଯାତ୍ରୀ ହେବାକୁ ଆଗ୍ରହ ପ୍ରକାଶ କରିଥିଲେ । କିଏ ବିଦେଶରେ ଧର୍ମପ୍ରଚାର କରିବ ତ କିଏ ସୁନାମ ବା ବିତ୍ତ ଅର୍ଜନ କରିବ ।

ଏଥର ଯାତ୍ରା ଶୁଭବୋଲି ମନେ ହେଲେ ମଧ୍ୟ ପୂର୍ବ ଆବିଷ୍କୃତ ଦ୍ୱୀପ 'ହିସ୍ପାନିଓଲା' ନିକଟରେ ପହଞ୍ଚି ଆବିଷ୍କାରକ ବିଚଳିତ ହୋଇପଡ଼ିଲେ । ସେଠାରେ ସମ୍ମାନସୂଚକ ବନ୍ଧୁକ ଫୁଟାଗଲା, କିନ୍ତୁ ଦୁର୍ଗର ଅଧିବାସୀ ସ୍ପେନୀୟମାନଙ୍କଠାରୁ ପ୍ରତ୍ୟୁତ୍ତର କାହିଁ ? ଉପକୂଳରେ ଦୁର୍ଗ ଧ୍ୱସ୍ତ । ଗୋଲାବାରୁଦ ଅକାମୀ । ସ୍ପେନୀୟମାନଙ୍କର ଚିହ୍ନ ବି ନାହିଁ । ଆଦିବାସୀମାନଙ୍କର ମୁଖ୍ୟ କଲମ୍ବସଙ୍କ ନିକଟରେ ବିବରଣୀ ପ୍ରଦାନ କଲେ—ସ୍ପେନୀୟମାନେ ଦୟାଶୀଳ ଆଦିବାସୀମାନଙ୍କୁ ନିର୍ଯ୍ୟାତିତ କରି, ସେମାନଙ୍କ ବାସଭବନରେ ଅଗ୍ନି ପ୍ରୟୋଗ କଲେ ଓ ସେମାନଙ୍କୁ କ୍ରୀତଦାସ ପରି ବ୍ୟବହାର କଲେ । ଏଥିରେ ଆଦିବାସୀମାନଙ୍କ ସରଳ ପ୍ରାଣରେ ଅସନ୍ତୋଷ ସୃଷ୍ଟିହେଲା । ସେମାନେ ଉନ୍ମତ୍ତପ୍ରାୟ ହୋଇ ବିଦେଶୀମାନଙ୍କ ସହିତ ସଂଘର୍ଷ କଲେ । ଫଳରେ ଇଉରୋପୀୟମାନେ ମୃତ ହେଲେ ।

ଏ ସମ୍ଭାବରେ ମ୍ରିୟମାଣ ହୋଇ ମଧ୍ୟ କଲମ୍ବସ ଯାତ୍ରା ସ୍ଥଗିତ ରଖିଲେ ନାହିଁ । ସେ ଇସାବେଲା ସହର ପ୍ରତିଷ୍ଠା କଲେ । ସବଂସ ସହଯାତ୍ରୀମାନଙ୍କର ସୁବର୍ଣ୍ଣ ପାଇଁ ଅତିଶୟ ଲୋଭ । ସେମାନେ ତ ଶାନ୍ତିରେ ବସତି ସ୍ଥାପନ କରିବାକୁ ବା ଶାନ୍ତିପ୍ରିୟ ଆଦିବାସୀମାନଙ୍କ ସହିତ ସୁସମ୍ପର୍କ ପ୍ରତିଷ୍ଠାକରିବାକୁ ଆସି ନ ଥିଲେ, ତେଣୁ ସେମାନେ ସେଠାର ଅଧିବାସୀଙ୍କ ପ୍ରତି ନୃଶଂସ ଆଚରଣ ଦେଖାଇଲେ । କଲମ୍ବସ ଟିକିଏ ମାତ୍ର ଅନୁପସ୍ଥିତ ହେଲେ ପୁଣି ସଙ୍ଘର୍ଷର ପୁନରାବୃତ୍ତି ହେଲା । ସ୍ପେନୀୟମାନଙ୍କୁ ଭଲ ବାଟକୁ ଆଣିବାକୁ କଲମ୍ବସ ଚେଷ୍ଟା କଲେ । ପରିଣାମରେ ସହଯାତ୍ରୀମାନେ ବିଦ୍ରୋହ ଘୋଷଣା କରି ସ୍ପେନକୁ ତାଙ୍କ ବିରୋଧରେ ଚିଠିମାନ ଲେଖି ପଠାଇଲେ । ଏପରି ଆଚରଣର କୈଫିୟତ୍ ଦେବାପାଇଁ ଆବିଷ୍କାରକ କଲମ୍ବସଙ୍କୁ ବନ୍ଦୀବେଶରେ ଇଉରୋପ ଫେରିବାକୁ ପଡ଼ିଥିଲା ।

ଇଉରୋପରେ କଲମ୍ବସ ବହୁ ଅପମାନ, ବହୁ ଅପବାଦ ସହିଲେ ମଧ୍ୟ ରାଣୀ ଇସାବେଲାଙ୍କ ସହିତ ଘନିଷ୍ଠ ବନ୍ଧୁତା ଥିବାଯୋଗୁଁ ଅବିଳମ୍ବେ ତାଙ୍କୁ ମୁକ୍ତି ଆଦେଶ ମିଳିଲା । ଆହୁରି ଥରେ ସମୁଦ୍ର ଯାତ୍ରା ପାଇଁ ତାଙ୍କୁ ଜାହାଜ ଯୋଗାଇ ଦିଆଗଲା । ସେ ଏଥର ମଧ୍ୟ ପୂର୍ବପରି ପଶ୍ଚିମକୁ ଗତିକରି ଓରିନୋକୋ ମୁହାଣ ନିକଟରେ ତ୍ରିନିଦାଦ ଆବିଷ୍କାର କଲେ । ଏହା ପରେ ସେ ପୁନରାୟ ହିସ୍ପାନିଓଲା ଯାତ୍ରା କଲେ । ତାଙ୍କ ଅନୁପସ୍ଥିତିରେ ସ୍ପେନୀୟ ଓ ଲୋହିତ ଭାରତୀୟମାନଙ୍କ ସମସ୍ୟା ଜଟିଳ ଆକାର ଧାରଣ କରିଥିଲା । ସେ ଏହି ସ୍ପେନୀୟମାନଙ୍କୁ ବିରକ୍ତ ହେବାରୁ ପୁନର୍ବାର ସେମାନେ ତାଙ୍କ ବିରୋଧରେ ଅଭିଯୋଗ କଲେ ଓ ସେ ବନ୍ଦୀପୂର୍ବକ ସ୍ପେନକୁ ପୁନରାୟ ଆନୀତ ହେଲେ । 'କାଡ଼ିଜ୍' ବନ୍ଦରରେ ପହଞ୍ଚିବା ମାତ୍ରେ ପ୍ରତ୍ୟେକ ନାଗରିକ ସ୍ପେନଦେଶକୁ ନୂତନ ସାମ୍ରାଜ୍ୟ ଉପହାର

ଦେଇଥିବା ଏହି ସାଧୁବୃଦ୍ଧଙ୍କ ପ୍ରତି ଏପରି ବ୍ୟବହାର ହେବାର ଦେଖି ବ୍ୟଥିତ ହେଲେ । ରାଣୀ ଇସାବେଲା ମଧ୍ୟ ଏପରି ଅନ୍ୟାୟର ପ୍ରତିବାଦ କରି କଲମ୍ବସଙ୍କର ମୁକ୍ତି ଆଦେଶ କରାଇଲେ ।

ପ୍ରାୟ ସତୁରୀ ବର୍ଷ ବୟସ୍କ ଏହି ବୃଦ୍ଧ ତଥାପି ସ୍ଥିର ହୋଇ ରହିପାରିଲେ ନାହିଁ । ୧୫୦୨ ମେ ମାସରେ ସେ ଚତୁର୍ଥ ଓ ଶେଷଥର ପାଇଁ ତାଙ୍କ କଳ୍ପିତ ଭାରତର ଅନ୍ୟାନ୍ୟ ଅଞ୍ଚଳ ଆବିଷ୍କାର ଉଦ୍ଦେଶ୍ୟରେ ପୁନର୍ବାର ହିସ୍ପାନିଓଲା ଯାତ୍ରା କଲେ । କିନ୍ତୁ ସେଠାର ରାଜ୍ୟପାଳ ତାଙ୍କର ପ୍ରବେଶପାଇଁ ଅନୁମତି ଦେଲେ ନାହିଁ । ଭାଗ୍ୟର କି ପରିହାସ ! ସ୍ୱ ଆବିଷ୍କୃତ ବନ୍ଦରରେ ବୃଦ୍ଧ ଆବିଷ୍କାରକ ପ୍ରବେଶ କରିବାଲାଗି ଅନୁମତି ପାଇଲେ ନାହିଁ ! ସମୁଦ୍ରର ଅଶାନ୍ତ ଝଡ଼ । ସେ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଥିଲେ ମଧ୍ୟ ତାଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା ନାହିଁ ।

ଯାତ୍ରାପାଗଳ କଲମ୍ବସ ଆଉ ପରି ଯାତ୍ରା ଆରମ୍ଭ କଲେ ଓ ହନ୍ଡୁରାସଠାରେ ପହଞ୍ଚିଲେ । ସେଠାରେ ରେଡ଼ଇଣ୍ଡିଆନ୍‌ମାନଙ୍କ ସହିତ ସଂଘର୍ଷ ଉପସ୍ଥିତ ହେବାରୁ ସେ 'ବନଜର' ଯିବାକୁ ବାଧ୍ୟ ହେଲେ । ସେଠାରେ ତାଙ୍କର ଜାହାଜ ଅଚଳ ହୋଇପଡ଼ିଲା । ଦୀର୍ଘ ଷୋଳ ମାସ କାଳ ସେ ଅର୍ଦ୍ଧାଶନ ଓ ପୀଡ଼ିତ ଅବସ୍ଥାରେ ଦିନଯାପନ କଲେ । ଏ ଖବର ପାଇ ହିସ୍ପାନିଓଲାର ରାଜ୍ୟପାଳ ତାଙ୍କ ନିକଟକୁ ସାହାଯ୍ୟ ପଠାଇଲେ । ଅଳ୍ପ ଦିନ ପରେ ସେ ଇଉରୋପ ଅଭିମୁଖେ ପ୍ରତ୍ୟାବର୍ତ୍ତନ କଲେ । ପୀଡ଼ିତ ଭ୍ରାତା ଓ ପୁତ୍ର ସହିତ ସେ ଶେଷରେ ସ୍ପେନ୍‌ରେ ପହଞ୍ଚିଲେ ।

ସେତେବେଳକୁ ସେ ଏକାନ୍ତ ନିଃସ୍ୱ ହୋଇଯାଇଥିଲେ । ଏପରି କି ଗୋଟିଏ ସାମାନ୍ୟ ବାସଗୃହ ମଧ୍ୟ ନିର୍ମାଣ କରିବା ତାଙ୍କ ପକ୍ଷେ ସମ୍ଭବହେଲା ନାହିଁ । ପୁନଶ୍ଚ ସେ ସମୟକୁ ତାଙ୍କର ପୁରାତନ

ବନ୍ଧୁ ରାଣୀ ଇସାବେଲା ମୃତ୍ୟୁ ଶଯ୍ୟାରେ । ରାଜା ନିଜର ପ୍ରତିଜ୍ଞା ରକ୍ଷା କଲେ ନାହିଁ । ଚିରସ୍ମରଣୀୟ ବୃଦ୍ଧ ଏକାକୀ ଅବସ୍ଥାରେ ଓ ସମସ୍ତ ଅଭାବ ଏବଂ ଦାରିଦ୍ର୍ୟର ପରିବେଶ ମଧ୍ୟରେ ମୃତ୍ୟୁବରଣ କଲେ । ଭାରତ ବଦଳରେ ଏକ ନୂତନ ମହାଦେଶ ଆବିଷ୍କାର କରିଛନ୍ତି ବୋଲି ସେ ଆଦୌ ଜାଣିପାରି ନ ଥିଲେ ।

କଲମ୍ବସ ଥିଲେ ଏକାଧାରରେ ପରିଶ୍ରମୀ, ଉଦ୍ୟମୀ ଓ ସାହସୀ । ଅଜ୍ଞାନ ଦେଶର ଘନୀଭୂତ ଅନ୍ଧକାର ତାଙ୍କୁ ହାତ ଠାରି ଆହ୍ୱାନ କରୁଥିଲା । ଦେଶ ଆବିଷ୍କାରର ଉତ୍ସାହରେ ସେ ଜୀବନକୁ ପାଣି ଛଡ଼ାଇଦେଇଥିଲେ । ଧନ୍ୟ ସମୁଦ୍ରଯାତ୍ରାର ଅଦମ୍ୟ ଲାଳସା ! ଦିଗ୍‌ବଳୟର ପରପାରର ସନ୍ଧାନ ନେବା ଲାଗି ଧନ୍ୟ ସେଇ ମନୁଷ୍ୟର ଅବିଶ୍ରାନ୍ତ ଶ୍ରମ ଆଉ ସାଧନା ! ବାସ୍ତବିକ୍ ଏହି ବୀର ପୁରୁଷ କ୍ରିଷ୍ଟୋଫର କଲମ୍ବସ ସଭ୍ୟତାର ଅଗ୍ରଦୂତ ରୂପେ ଯେଉଁ ମହନୀୟ ଜୀବନ ଯାପନ କରିଯାଇଛନ୍ତି—ଆବିଷ୍କାର-ଇତିହାସରେ ତାହା ଏକ ରୋମାଞ୍ଚକର କାହାଣୀ ।

———

ମୁଦ୍ରାକର—ଶ୍ରୀ ଦଣ୍ଡିନରୋଧ ମିଶ୍ର, ଏମ୍. ଏ.
ସ୍ୱଭାଷା ପ୍ରେସ୍, ଖଟବିନସାହି, କଟକ-୧